# ଯୁଗେ ଯୁଗେ
# ମହେନ୍ଦ୍ରଗିରି

ଲେଖକ :
ଡକ୍ଟର ଭରତ ପଣ୍ଡା



ପ୍ରକାଶକ :
ଫଲ୍‌ଗୁ ସାହିତ୍ୟ ସଂସଦ
ବ୍ରହ୍ମପୁର

# ଯୁଗେ ଯୁଗେ ମହେନ୍ଦ୍ରଗିରି

ଲେଖକ : ଡକ୍ଟର ଭରତ ପଣ୍ଡା
ପି.ଏଚ୍. ଡ଼ି.
ଦୋଲବନ୍ଧ ରୋଡ଼, ପାରଳାଖେମୁଣ୍ଡି, ଗଜପତି

ପ୍ରକାଶକ ଫଲଗୁ ସାହିତ୍ୟ ସଂସଦ
ବ୍ରହ୍ମପୁର, ଗଞ୍ଜାମ



ପ୍ରଥମ ମୁଦ୍ରଣ : ମହା ଶିବରାତ୍ରି

ଯୁଗାବ୍ଦ : ୫୦୯୬
ତା: ୧୭-୨-୧୯୯୬

ମୁଦ୍ରଣ : ଶ୍ରୀ ଅଭିମନ୍ୟୁ ପାଢ଼ୀ
ସନ୍ତୋଷ ପ୍ରିଣ୍ଟର୍ସ, ବ୍ରହ୍ମପୁର-୯, ଗଞ୍ଜାମ

ଶିଳ୍ପୀ : ଶ୍ରୀ ଲକ୍ଷ୍ମଣ ପଣ୍ଡା
ଡିପ୍ଲୋମା-ଇନ୍ ଫାଇନ୍ ଆର୍ଟ
ପାରଳାଖେମୁଣ୍ଡି, ଗଜପତି
(ପ୍ରଚ୍ଛଦ ଓ ଅନ୍ୟାନ୍ୟ କଳା)

ବ୍ଲକ୍ : ଶ୍ରୀ ସୁକାନ୍ତ ପାଣିଗ୍ରାହୀ
ସିଦ୍ଧବୀର ପ୍ରେସ୍
ବ୍ରହ୍ମପୁର, ଗଞ୍ଜାମ

ପ୍ରଚ୍ଛଦ ମୁଦ୍ରଣ : ଜଗନ୍ନାଥ ପ୍ରୋସେସ୍
କଟକ

ମୂଲ୍ୟ ବନ୍ଧେଇ : ଟ ୧୨୫-୦୦
ଏକଶତ ପଚିଶି ଟଙ୍କା

# YUGA YUGA MAHENDRAGIRI

Author : **Dr. Bharata Panda**
Ph. D.
Dolotank Road,
Parlakhemundi, Gajapati

Publisher :
**Phalgu Sahitya Sansad**
Berhampur, Ganjam



First Publication :
**Maha Sivaratri**

Yugabda : 5095
Date : 17-2-1996

Printed by :
**Sri Abhimanyu Padhi**
Santosh Printers
Berhampur-9, Ganjam

Art : **Sri Lakshmna Panda**
Diploma-in-Fine Arts
Parlakhemundi, Gajapati

Block :
**Sri Sukanta Panigrahi**
Sidhaveera Press
Berhampur, Ganjam

Cover design and Printing :
**Jagannath Process**, Cuttack

Price : Bound **Rs. 125-00**
**Rs. One hundred twentyfive**

## ସଂସଦ ତରଫରୁ ପଦେ.........

ଭାରତର ସଂସ୍କୃତି ଯୁଗେ ଯୁଗେ ମାନବ ଜାତିର ପଥ୍‌ପ୍ରଦର୍ଶକ ହୋଇ ଆସିଅଛି । ତା'ର ପ୍ରାଚୀନ ସଂସ୍କୃତିର ପଦଚିହ୍ନ, ତାର ପୁରାଣଶାସ୍ତ୍ର, ପ୍ରାଚୀନ ଶାସ୍ତ୍ର, ଶିଳାଲେଖ, ଦାନପତ୍ରାଦି ଓ ସ୍ଥାପତ୍ୟ-ଶିଳ୍ପ କଳାଦିରେ ପରିଦୃଷ୍ଟ । ଯେଉଁ କେତେକ ସଂକେତମାନ ସୁରକ୍ଷିତ ହୋଇ ରହିଛି; ତାହା ମଧ୍ୟର ଶିଳ୍ପକଳା, ଲୋକକଥା, କିମ୍ବଦନ୍ତୀ ଆଦିଦ୍ୱାରା ପରିପୁଷ୍ଟ । ଓଡ଼ିଶାର ପବିତ୍ର ସାଂସ୍କୃତିକ ପୀଠ ମହେନ୍ଦ୍ରଗିରିର ପ୍ରସିଦ୍ଧି, ଏ ଦୃଷ୍ଟିରୁ ଅନସ୍ୱୀକାର୍ଯ୍ୟ । ଏହି ଅବହେଳିତ ତୀର୍ଥକ୍ଷେତ୍ର, ପର୍ଯ୍ୟଟନସ୍ଥଳୀ ତଥା ଜୀବଜନ୍ତୁ ସମାଗମ ବନୌଷଧି ଭଣ୍ଡାରର ସୁରକ୍ଷା ଦିଗରେ ପଥପ୍ରଦର୍ଶକରୂପେ ଏହି ଗବେଷଣାମୂଳକ ନିବନ୍ଧ ଆତ୍ମପ୍ରକାଶ କରିଛି । ଏଥିପାଇଁ ସଂସଦର ସଭ୍ୟ ତଥା ଗବେଷକ ଡ଼କ୍ଟର ଭରତ ପଣ୍ଡା, ତାଙ୍କର ଅକ୍ଳାନ୍ତ ପରିଶ୍ରମ ପାଇଁ ଧନ୍ୟବାଦାର୍ହ । ସଂସଦର ମୁଖପତ୍ରର ମୁଖ୍ୟ ସଂପାଦକ, ଡ଼କ୍ଟର ସୂର୍ଯ୍ୟନାରାୟଣ ଦାସ ପାଣ୍ଡୁଲିପିଟିର ସଂଶୋଧନ କରିଥିବାରୁ ତାଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛୁ ।

ଏହା ଆମ ସସଦର ଦ୍ୱାଦଶ ପ୍ରକାଶନ । ଏଥିପୂର୍ବେ ଆମ ସଂସଦ : ଶ୍ରୀ ରଘୁନନ୍ଦନ ପାଣିଗ୍ରାହିଙ୍କ 'ସିନ୍ଧୁ ଭୈରବୀ', ଶ୍ରୀ ହରିଶଙ୍କର ବଡ଼ପଣ୍ଡାଙ୍କ 'ରକ୍ତଜାତକ ଓ କେତୋଟି ଶ୍ରଦ୍ଧାଞ୍ଜଳି' (କବିତା), ଗଳ୍ପସଂକଳନ 'ନିର୍ଝର' ଶ୍ରୀ ଏମ୍. ଆର୍. କେସ୍ବାରଙ୍କ 'କଣାମାମୁଁ' (ଛିଦ୍ରାନ୍ୱେଷଣ), ଡ଼କ୍ଟର ଭରତ ପଣ୍ଡାଙ୍କ 'ଉତ୍କଳର ପ୍ରାଚୀନ କୀର୍ତ୍ତି ମହେନ୍ଦ୍ରଗିରି', ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ 'ଲଘୁପଞ୍ଚକ', ଶ୍ରୀ ଉଦୟ ନାରାୟଣ ପାଠୀଙ୍କ 'ଋତୁବିଳାସ', ସଂସଦର ପ୍ରବନ୍ଧ ସଂକଳନ ଶିକ୍ଷା ନିରୀକ୍ଷା, କବିତା ସଂକଳନ 'ମୂର୍ଚ୍ଛନା', ଗଳ୍ପ ସଂକଳନ 'ପ୍ରତିବିମ୍ବ' ଏବଂ ପ୍ରବନ୍ଧ ସଂକଳନ ପ୍ରବନ୍ଧ 'ଆଜ ଓ କାଲିର' ବେଶ୍ ଆଦୃତ ହୋଇପାରିଛି । ଏହି ପ୍ରଚେଷ୍ଟା ସଫଳ ହେଲେ ପରବର୍ତ୍ତୀ ପ୍ରୟାସ ପାଇଁ ଆମେ ଆମର ଉଦ୍ୟମ ଅବ୍ୟାହତ ରଖିଛୁ ।

ପାଠକ ମହଲର ହାର୍ଦ୍ଦିକ ସଦିଚ୍ଛା ଓ ସହଯୋଗ ଆମର ଏକାନ୍ତ କାମ୍ୟ ।

ଫଲ୍‌ଗୁ ସାହିତ୍ୟ ସଂସଦ
ବ୍ରହ୍ମପୁର

## ସଂସଦର କର୍ମକର୍ତ୍ତା

**ଉପଦେଷ୍ଟାମଣ୍ଡଳୀ :**

ଶ୍ରୀ ବିପିନବିହାରୀ ଖମାରୀ
ଶ୍ରୀ ଉଦୟନାରାୟଣ ପାଢୀ
ଶ୍ରୀ ବିପିନବିହାରୀ ମିଶ୍ର
ଶ୍ରୀ ସତ୍ୟନାରାୟଣ ପଣ୍ଡା
ଡଃ ସୁଦର୍ଶନ ଆଚାର୍ଯ୍ୟ

**ସଭାପତି :**

ଡଃ ନିଖିଳାନନ୍ଦ ପାଣିଗ୍ରାହୀ

**ଉପ-ସଭାପତି :**

ଡଃ ବାଉରୀବନ୍ଧୁ ସାହୁ

**ସାଧାରଣ ସଂପାଦକ :**

ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀ

**ଯୁଗ୍ମ-ସଂପାଦକ :**

ଶ୍ରୀ ଅଭିରାମ ପଣ୍ଡା

**ନିର୍ବାହୀ ସଭ୍ୟ :**

ଶ୍ରୀ ପଦ୍ମଚରଣ ସାହୁ
ଡଃ ଭରତ ପଣ୍ଡା
ଶ୍ରୀ ବ୍ରଜସୁନ୍ଦର ପଟ୍ଟନାୟକ

**ମୁଖପତ୍ର ସଂପାଦନା :**

ଡଃ ସୂର୍ଯ୍ୟନାରାୟଣ ଦାସ
ଡଃ ହରିହର ଦାସ
ଡଃ କିଶୋରଚନ୍ଦ୍ର ମିଶ୍ର



# ମୁଖଶାଳା

ଭାରତର ଉତ୍ତର ସୀମାନ୍ତରେ ଦଣ୍ଡାୟମାନ ନଗାଧିରାଜ ହିମାଚଳ ଯେପରି ପ୍ରାକୃତିକ ପ୍ରାଚୁର୍ଯ୍ୟ, ଆଧ୍ୟାତ୍ମିକ ପବିତ୍ରତା ଓ ସାମୂହିକ ଗଣ-ଚରିତ୍ରର ଉତ୍ସରୂପେ ସର୍ବଜନ ସ୍ୱୀକୃତ, ସେହିପରି ଉତ୍କଳ ଭୂଖଣ୍ଡାନ୍ତର୍ଗତ ମହେନ୍ଦ୍ରାଚଳ ବିଗତ ଶତାଧ୍ଦୀ ଶତାବ୍ଦୀ ଧରି ତାର ସଂସ୍କୃତି ଓ ପ୍ରାକୃତିକ ବିଭବଦ୍ୱାରା ଜନପଦ ଉପରେ ଯେ ଗଭୀର ପ୍ରଭାବ ବିସ୍ତାର କରିଛି, କହିବା ବାହୁଲ୍ୟ ମାତ୍ର । ଉତ୍କଳର ପୂର୍ଣ୍ଣାଙ୍ଗ ଇତିହାସ ଅଦ୍ୟାବଧି ସଂକଳିତ ହୋଇପାରି ନାହିଁ । ସଂସ୍କୃତ ପୁରାଣ, ଜୈନ ସାହିତ୍ୟ, ବୌଦ୍ଧ ସାହିତ୍ୟ, ଶିଳାଲେଖ, ତାମ୍ରଲେଖ ଓ ବିଭିନ୍ନ ପ୍ରାଚୀନ ପ୍ରାଦେଶିକ ସାହିତ୍ୟ ସାହଚର୍ଯ୍ୟରେ ହିଁ ଆମର ସାଂସ୍କୃତିକ ଓ ଧାର୍ମିକ ବିକାଶ ଧାରାର ପ୍ରକୃତ ଏବଂ ପରିଣତି ନିରୂପଣ କରାଯାଇପାରେ । ଉତ୍କଳ ଭୂମି ଭାରତବର୍ଷରୁ ବିଚ୍ଛିନ୍ନ ନୁହେଁ । ଯେକୌଣସି ଦେଶ ବା ଜାତିର ସଂସ୍କୃତିରେ ଯେଉଁ ସବୁ ଜୀବନୀ ଶକ୍ତି ଅନ୍ତର୍ନିହିତ ଥାଏ, ତାକୁ ଭିତ୍ତି କରି ହିଁ ଜାତୀୟ ଗୌରବର ଉନ୍ମେଷ ଓ ଉଦ୍ଧରଣ ସମ୍ଭବ ହୋଇଥାଏ ।

ପଣ୍ଡିତ ନୀଳକଣ୍ଠ ଦାସଙ୍କ ଭାଷାରେ "ଓଡ଼ିଶା ଗୋଟାକଯାକ ପୁଣ୍ୟଭୂମି-ଦେବଭୂମି ।" ଅତି ପୁରାକାଳରୁ ଏହାର ନାମ ଥିଲା 'କଳିଙ୍ଗ' । ଯଥାର୍ଥରେ ଓଡ଼ିଶାରେ ବହୁତୀର୍ଥକ୍ଷେତ୍ର ରହିଛି ଏବଂ ତନ୍ମଧ୍ୟରେ ପର୍ଶୁରାମ କ୍ଷେତ୍ର ମହେନ୍ଦ୍ରଗିରି ସର୍ବଜନ ବିଦିତ । ସପ୍ତକୁଳାଚଳ ମଧ୍ୟରେ ଶ୍ରେଷ୍ଠ ମେଘମାଳାର ନିବାସସ୍ଥଳ ଏହି ମହେନ୍ଦ୍ରାଞ୍ଚଳ ବର୍ତ୍ତମାନ ଓଡ଼ିଶାର ଯେ ଶିରୋଭୂଷଣ ତାହା କେହି କେବେ ଅସ୍ୱୀକାର କରିବେ ନାହିଁ । ଏହି ମହେନ୍ଦ୍ରଗିରି ଓଡ଼ିଶାର ସାମାଜିକ ଓ ଧାର୍ମିକ ପରମ୍ପରାରେ ଯୁଗେ ଯୁଗେ କି ପ୍ରକାର ଭୂମିକା ଗ୍ରହଣ କରିଛି ତା ଉପରେ କିଞ୍ଚିତ୍ ଆଲୋକପାତ କରିବାହିଁ ଏହି ରଚନାର ମୁଖ୍ୟ ଉଦ୍ଦେଶ୍ୟ । ପ୍ରକାଶଯୋଗ୍ୟ ଯେ ଅଦ୍ୟାବଧି ମହେନ୍ଦ୍ରଗିରି ସମ୍ପର୍କରେ ସେଭଳି ବିସ୍ତୃତ ବିବରଣୀ ପ୍ରକାଶ ପାଇନାହିଁ । କବିଶେଖର ଚିନ୍ତାମଣି ମହାନ୍ତିଙ୍କ 'ମହେନ୍ଦ୍ର କାବ୍ୟ' (୧୯୧୮), ରଙ୍ଗାଚାର୍ଯ୍ୟଙ୍କ South Indian Inscription, Vol V (Rangacharya's Vol I) AR No. 397 of 1896 ଓ ଅନ୍ୟାନ୍ୟ ଶିଳାଲେଖ, ତାମ୍ରଫଳକ, ଦାନପତ୍ରାଦିର ବିବରଣୀ, ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ମହେନ୍ଦ୍ରଗିରି ଐତିହାସିକ ପ୍ରବନ୍ଧ ଓ Inscription of Orissaରେ ପ୍ରକାଶିତ ଶିଳାଲେଖ ଓ ଦାନପତ୍ରାଦିର ପାଠୋଦ୍ଧାର, ଡକ୍ଟର ନବୀନକୁମାର ସାହୁଙ୍କ ପାରଳାଖେମୁଣ୍ଡି ଅଞ୍ଚଳର ଶିଳାନୁଶାସନ ଓ ତାମ୍ରଫଳକମାନଙ୍କ ବିବରଣୀ ପ୍ରଦାନ, ଡ଼କ୍ଟର ବିଜୟ-କୁମାର ରଥଙ୍କ History of Mount Mahendra, କ୍ଷୁଦ୍ର ପ୍ରବନ୍ଧ ଏବଂ

ଅନ୍ୟାନ୍ୟ ଲେଖକଙ୍କ ପତ୍ରପତ୍ରିକାରେ ପ୍ରକାଶିତ କ୍ଷୁଦ୍ର ପ୍ରବନ୍ଧ ତଥା ପ୍ରତ୍ୟକ୍ଷାନୁଭୂତି-ମୂଳକ ଏହି ଲେଖକଙ୍କ "ଉତ୍କଳର ପ୍ରାଚୀନ କୀର୍ତ୍ତି ମହେନ୍ଦ୍ରଗିରି" ଶିରୋନାମାରେ ଫଲ୍‌ଗୁ ସାହିତ୍ୟ ସଂସଦ, ବ୍ରହ୍ମପୁର ଦ୍ୱାରା ପ୍ରକାଶିତ ପୁସ୍ତକ (୧୯୮୫)କୁ ବାଦଦେଲେ ଏ ସଂପର୍କରେ ସେଭଳି ଉଲ୍ଲେଖଯୋଗ୍ୟ ରଚନା ଦୃଷ୍ଟିଗୋଚର ହୁଏ ନାହିଁ । ୧୯୭୪ ମସିହାରେ ଗୋବର୍ଦ୍ଧନ ପୀଠ ଶଙ୍କରାଚାର୍ଯ୍ୟଙ୍କ ଆହ୍ୱାନରେ ମହେନ୍ଦ୍ରଗିରିର ଐତିହ୍ୟ ସୁରକ୍ଷା ନିମିତ୍ତ ପର୍ଶୁରାମଙ୍କ ସ୍ମାରକୀ ପ୍ରତିଷ୍ଠା (ଚିତ୍ର ନଂ ୧) ପରେ ବରଂ ମହେନ୍ଦ୍ର-ଗିରିର ରହସ୍ୟ ଉଦ୍‌ଘାଟନ ଦିଗରେ କିଛିଟା ପ୍ରେରଣା ମିଳିଛି ବୋଲି କୁହାଯାଇ ପାରେ ।

ଭୌଗୋଳିକ ପରିସ୍ଥିତି ବିଶ୍ଳେଷଣ ବିନା ଇତିହାସର ଆଲୋଚନା ଅସମ୍ଭବ । କାରଣ ନିର୍ଦ୍ଦିଷ୍ଟ ସଂସ୍କୃତି ଓ ସଭ୍ୟତା, ଜଳବାୟୁ ଉପରେ ହିଁ ମୁଖ୍ୟତଃ ନିର୍ଭର କରେ । ଏଥିପାଇଁ ପ୍ରଥମ ପରିଚ୍ଛେଦରେ ମହେନ୍ଦ୍ରଗିରିର ଭୌଗୋଳିକ ଅବସ୍ଥିତି ସମ୍ପର୍କରେ ସୂଚିତ ଦିଆଯାଇଛି ।

ପୁରାଣ ପରମ୍ପରା ହିଁ ଭାରତୀୟ ସଭ୍ୟତାର ମୂଳପିଣ୍ଡ । ପୁରାଣ ଯୁଗରେ ମହେନ୍ଦ୍ରଗିରିର ଭୂମିକା ନିର୍ଣ୍ଣୟ କରିବା ପାଇଁ ସଂସ୍କୃତ ପୁରାଣ, ଓଡ଼ିଆ ପୁରାଣ ଓ ଭାରତୀୟ ସାହିତ୍ୟରେ ଏହାର ସ୍ଥାନ ନିରୂପଣ ଦ୍ୱିତୀୟ ପରିଚ୍ଛେଦର ବିଷୟବସ୍ତୁ ଅଟେ ।

ତୃତୀୟ ପରିଚ୍ଛେଦରେ "ଇତିହାସରେ ମହେନ୍ଦ୍ରଗିରିର ସ୍ଥାନ" ନିରୂପଣ ନିମିତ୍ତ ଶିଳାଲେଖ, ଶାସନ ସମ୍ପର୍କୀୟ ଦାନପତ୍ରାଦି, ତାମ୍ରଲେଖ ପ୍ରଭୃତିର ସାହାଯ୍ୟ ନିଆଯାଇଛି ।

ଆଧ୍ୟାତ୍ମିକ ବିଚାରରେ ମହେନ୍ଦ୍ରଗିରି କିଭଳି ପୁରୁଷୋତ୍ତମ ତତ୍ତ୍ୱକୁ ସମସ୍ତ ତତ୍ତ୍ୱ ମଧ୍ୟରେ ଆବଦ୍ଧ କରି ଭିତ୍ତିଭୂମି ସଦୃଶ ଗଢ଼ିତୋଳିଛି ଓ ଏଠାକାର ଗୋକର୍ଣ୍ଣେଶ୍ୱର ଓ ଦାରୁବ୍ରହ୍ମ ସଙ୍କେତମାନ ସମଗ୍ର ଓଡ଼ିଶାରେ ପ୍ରଭାବ ପକାଇବାରେ କି ଭୂମିକା ଗ୍ରହଣ କରିଛି ତଥା ଏଠାକାର ଲିଙ୍ଗ ଉପାସନା, ଶକ୍ତି ଉପାସନାଦି ସମ୍ବନ୍ଧରେ ଚତୁର୍ଥ ପରିଚ୍ଛେଦରେ ସୂଚନା ଦିଆହୋଇଛି । ମହେନ୍ଦ୍ରଗିରିର ସାଂସ୍କୃତିକ ବିସ୍ତାର ଓ ତାର ପ୍ରଭାବ; ଏ ସନ୍ଦର୍ଭରେ ଏହି ପରିଚ୍ଛେଦରେ ଆଲୋଚିତ ହୋଇଛି ।

ପଞ୍ଚମ ପରିଚ୍ଛେଦରେ ମହେନ୍ଦ୍ରଗିରିରେ ମନ୍ଦିରମାଳାର ନିର୍ମାଣ କାଳ ଓ ତତ୍କାଳୀନ ରାଜବଂଶମାନଙ୍କ ଏ ସନ୍ଦର୍ଭୀୟ ଅବଦାନ ସମ୍ପର୍କରେ ଆଭାସ ଦିଆଯାଇଛି ।

ଷଷ୍ଠ ପରିଚ୍ଛେଦରେ ଲୋକକଥା ଓ କମ୍ବଦନ୍ତୀ ବିଷୟ ବିଚାର କରାଯାଇଛି । ସପ୍ତମ ପରିଚ୍ଛେଦଟି ଉପସଂହାର । ବିଭିନ୍ନ ମନ୍ଦିର, ପୀଠସ୍ଥିତ ଦେବଦେବୀ, ବିଭିନ୍ନ ଯାତ୍ରାପର୍ବ ତଥା ମନ୍ଦିରର ପ୍ରକାର ଭେଦ ଆଦି ଚିତ୍ର ଓ ରେଖାଚିତ୍ର ମାଧ୍ୟମରେ ଯଥାସ୍ଥାନରେ ପ୍ରଦାନ କରାଯାଇଛି ।

ଗୋକର୍ଣ୍ଣେଶ୍ୱରଙ୍କ କୃପାବିନା ଏହି କୃତି ସମ୍ଭବପର ନୁହେଁ । ଏହି ପ୍ରୟାସରେ ପ୍ରମୁଖ ପ୍ରେରଣାଦାତା ହେଲେ—ଓଡ଼ିଶା ମ୍ୟୁଜିୟମ୍, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ରାମତୀର୍ଥ ପାଠାଗାର, ଶିବାନନ୍ଦ ନଗର, ଋଷିକେଶ, ହିମାଳୟ, ମାଡ୍ରାସ ମ୍ୟୁଜିୟମ, ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ, ପାରଳାଖେମୁଣ୍ଡି, ଗଜପତି, ସାମୟିକ ସାହାଯ୍ୟକାରୀ ପାଠାଗାରମାନ ହେଲେ—ମଲ୍ଲିକେଶ୍ୱର ପାଠାଗାର, ମହାଦେଇପୁର, ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଉଚ୍ଚବିଦ୍ୟାଳୟ ପାଠାଗାର, ଗୁରଣ୍ଡୀ, ସରକାରୀ ମାଧ୍ୟମିକ ପ୍ରଶିକ୍ଷଣ ବିଦ୍ୟାଳୟ ପାଠାଗାର, ପାରଳାଖେମୁଣ୍ଡି, ସଂସ୍କୃତ ମହାବିଦ୍ୟାଳୟ ପାଠାଗାର, ପାରଳାଖେମୁଣ୍ଡି, ଦେବୀମଠ ପାଠାଗାର, ପାରଳା-ଖେମୁଣ୍ଡି—ଏ ସମସ୍ତ ଅନୁଷ୍ଠାନର କର୍ମକର୍ତ୍ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ଯେଉଁ-ମାନଙ୍କ ସାହାଯ୍ୟବିନା ଏ କ୍ଷେତ୍ରରେ ଆଗେଇବା କଷ୍ଟସାଧ୍ୟ ହୁଅନ୍ତା, ସେମାନେ ହେଲେ, ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ପଟ୍ଟନାୟକ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ, ପାରଳାଖେମୁଣ୍ଡି, ଲାଇବ୍ରେରିଆନ୍ ଶ୍ରୀ ବ୍ରଜସୁନ୍ଦର ପଟ୍ଟନାୟକ ଓ ତାଙ୍କ ଷ୍ଟାଫ୍, ପ୍ରିନ୍ସିପାଲ ସଂସ୍କୃତ ମହାବିଦ୍ୟାଳୟ, ପାରଳାଖେମୁଣ୍ଡି, ପୁରାଣାଚାର୍ଯ୍ୟ ପଣ୍ଡିତ ଶ୍ରୀ କୁଳମଣି ମିଶ୍ର ଶର୍ମା, ପୂର୍ବତନ ପ୍ରଫେସର, ସଦାଶିବ ସଂସ୍କୃତ ମହାବିଦ୍ୟାଳୟ ପୁରୀ, ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପାରଳାଖେମୁଣ୍ଡି, ପୁରାଣାଚାର୍ଯ୍ୟ ଶ୍ରୀ ରାମମୂର୍ତ୍ତି ଶର୍ମା, ପାରଳାଖେମୁଣ୍ଡି ।

ଏହା ବ୍ୟତୀତ ଅବେଳ ଅକାଳରେ ମଧ୍ୟ ପର୍ବତାରୋହଣରେ ସାହାଯ୍ୟ କରିଥିବା ସରପଞ୍ଚ, ଗଙ୍ଗାବାଡ଼ ଗ୍ରାମ ପଞ୍ଚାୟତ ମହେନ୍ଦ୍ରଗିରି ଶ୍ରୀଯୁକ୍ତ ରାଜେନ୍ଦ୍ରପ୍ରସାଦ ଭୂୟାଁ, ବାରଘର, ଶ୍ରୀ ପୂର୍ଣ୍ଣଚନ୍ଦ୍ର ପୂଜାରୀ, ଶିକ୍ଷକ ବାରଘର, ଶ୍ରୀଯୁକ୍ତ ଶ୍ରୀନିବାସ ଦଲାଇ, ଶିକ୍ଷକ ମାଢ଼ା, ସିଂହରାଜ, ଶ୍ରୀଯୁକ୍ତ ବାସୁଧର ପାଇକ, ଶିକ୍ଷକ ଗଙ୍ଗାବାଡ଼ ପ୍ରମୁଖ ଶିକ୍ଷକବୃନ୍ଦ ମଧ୍ୟ ଧନ୍ୟବାଦାର୍ହ । ତଦ୍ରୂପରି ଶ୍ରୀଯୁକ୍ତ ରବିନାରାୟଣ ବହିଦାର, ଆଇ. ଏ. ଏସ., ତତ୍କାଳୀନ ବି. ଡ଼ି. ଓ. ରାୟଗଡ଼, ମହେନ୍ଦ୍ରଗିରି ବ୍ଲକ ଶ୍ରୀ ପ୍ରମୋଦ-କୁମାର ଦାସ, ଫଲ୍‌ଗୁ ସାହିତ୍ୟ ସଂସଦ କର୍ମକର୍ତ୍ତାବୃନ୍ଦ, ଶ୍ରୀ ସତ୍ୟନାରାୟଣ ପଣ୍ଡା, ଓ. ଏଫ୍. ଏସ୍., ଡ଼କ୍ଟର ସୂର୍ଯ୍ୟନାରାୟଣ ଦାସ, ଓ. ଏଫ୍. ଏସ୍, ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀ, ସମ୍ପାଦକ, ଫଲ୍‌ଗୁ, ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟଙ୍କ ସାହାଯ୍ୟ ଓ ସହାନୁଭୂତି ବିନା ଏ ଗ୍ରନ୍ଥ ସମ୍ଭବ ହୁଅନ୍ତା ନାହିଁ ।

ଶ୍ରୀ ଲକ୍ଷ୍ମଣ ପଣ୍ଡା, ଡ଼ିପ୍ଲୋମା-ଇନ-ଫାଇନ୍-ଆର୍ଟ ବନାପାଣ୍ଡିଗ୍ରାମିକରେ ଦୁର୍ଗମ ରାସ୍ତାରେ ଶୋଲମାନଙ୍କରୁ ଫଟୋ ଉଠାଇଥିବାରୁ ଏବଂ ଶ୍ରୀ ସୁଦାମଚରଣ ପାଲ, ଶ୍ରୀ ରମେଶଚନ୍ଦ୍ର ହୋତା, ଶ୍ରୀ ନବକୁମାର ପଟ୍ଟନାୟକ, ପାଣ୍ଡୁଲିପିର ପ୍ରତିଲିପି କାର୍ଯ୍ୟରେ ସାହାଯ୍ୟ କରିଥିବାରୁ, ସେମାନେ ମଧ୍ୟ ଧନ୍ୟବାଦାର୍ହ । ଶ୍ରୀମତୀ କଲ୍ୟାଣୀ ଘୋଷ, ତତ୍କାଳୀନ ଗଞ୍ଜାମ ଜିଲ୍ଲା ସର୍କଲ ଇନ୍ସପେକ୍ଟର, ଶ୍ରୀ ପଦ୍ମନାଭ ପଣ୍ଡା ଓ. ଇ. ଏସ୍., ପୂର୍ବତନ ଜିଲ୍ଲା ଶିକ୍ଷାଧିକାରୀ ପାରଳାଖେମୁଣ୍ଡି, ଶ୍ରୀ ଗୌରଚନ୍ଦ୍ର ଚୌଧୁରୀ, ଓ. ଇ. ଏସ୍., ପ୍ରଧାନଶିକ୍ଷକ ଯେକେଣ୍ଡେରୀ ଟ୍ରେନିଂ ସ୍କୁଲ ପାରଳାଖେମୁଣ୍ଡିଙ୍କୁ ମଧ୍ୟ କୃତଜ୍ଞତା ଜ୍ଞାପନ କରେ, ଯାହାଙ୍କ ସଦିଚ୍ଛାବିନା ଏ ଦିଗରେ ପ୍ରବୃତ୍ତ ହେବା ଅସମ୍ଭବ ହୋଇଥାନ୍ତା ।

ନିତାନ୍ତ ଉଲ୍ଲେଖଯୋଗ୍ୟ ଯେ ବୃହଦ୍ଆକାର ମୂଳ ଗବେଷଣା ନିବନ୍ଧଟି ମୋଦ୍ୱାରା ପ୍ରକାଶ କରିବା ଅସମ୍ଭବ ବୋଧହେଲା । ଏହି ଅସହାୟ ପରିସ୍ଥିତିରେ ବରାଟ ଗ୍ରନ୍ଥକୁ ସଂକ୍ଷେପକରି ପ୍ରକାଶ କରିବା ଦିଗରେ ଅକ୍ଳାନ୍ତ ପରିଶ୍ରମ କରି ଡ଼କ୍ଟର ସୂର୍ଯ୍ୟନାରାୟଣ ଦାସ ଦିଗ୍ଦର୍ଶକ ହୋଇଥିବା ଯୋଗୁଁ, ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ସର୍ବୋପରି, ମୋର ପରମାରାଧ୍ୟ ଗୁରୁଦେବ ଡକ୍ଟର ବେଣୀମାଧବ ପାଢ଼ୀଙ୍କ ତତ୍ତ୍ୱାବଧାନରେ ଏହି କାର୍ଯ୍ୟ ସଂପନ୍ନ ହୋଇଥିବାରୁ ତାଙ୍କ ଉତ୍ସାହ ଓ ପ୍ରେରଣାପାଇଁ ତାଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

"ନାହଂ କର୍ତ୍ତା ହରିଃ କର୍ତ୍ତା, ତତ୍ପୂଜା କର୍ମଚାଖିଳଂ,
ଯଦ୍‌ଯଦ୍ କର୍ମ କରୋମି ତଦଖିଳଂ ଶମ୍ଭୋତବାରାଧନମ୍ ।"

ଓଁ ତତ୍ସତ୍

—ଲେଖକ

# ସୂଚୀପତ୍ର

## ସହାୟକ ଗ୍ରନ୍ଥ

(କ) ଓଡ଼ିଆ (ଖ) ସଂସ୍କୃତ (ଗ) ବଙ୍ଗଳା (ଘ) ହିନ୍ଦୀ (ଙ) ତେଲୁଗୁ (ଚ) ଇଂରାଜୀ ।

## ଚିତ୍ରାବଳୀ

**ଚିତ୍ର ନଂବର** **ଚିତ୍ର** **ପାଠ ପୃଷ୍ଠା**

(୧୫) ପାରକୁଟ ଗଡର ହନୁମାନ ପାଛକାସ୍ଥୀ ପ୍ରମୀ-୧୨୭, ୧୫୫
[୧୬] ମହେନ୍ଦ୍ରଗିରି ଦୂର୍ଗା-୧୩୯, [୧୭] ସୂର୍ଯ୍ୟ-୧୨୫, [୧୮]
ରାଛାରଞ୍ଜର ମାଳମାଧବ-୧୪୪, [୧୯] ବାଣାସାହି ଶ୍ରୀଜଗନ୍ନାଥ-୧୩୭,
୧୪୩, ୧୭୩ ।

ପ୍ଲେଟ ନଂ ୧ ଚିତ୍ର ନଂ ୧ରୁ ୭ ବାମରୁ ଡ଼ାହାଣ]

[୧] ଜଗମଣ୍ଡା ପାହାଡର ମଲ୍ଲିକେଶ୍ୱର ମନ୍ଦିର-୧୨୩, ୨୨୭,
[୨] ଜଗମଣ୍ଡା ପାହାଡର ନୀଳକଣ୍ଠେଶ୍ୱର ମନ୍ଦିର-୧୨୩, ୨୨୭,
[୩] ଜଗମଣ୍ଡା ପାହାଡର ଧବଳେଶ୍ୱର ମନ୍ଦିର-୨୨୭, ୪] ମହେନ୍ଦ୍ରଗିରି
ଆଦିମ ମନ୍ଦିର-୨୨୭, [୫] ମହେନ୍ଦ୍ରଗିରି ଆଦିମ ମନ୍ଦିର-୨୨୭, [୬)
ମହେନ୍ଦ୍ରଗିରି ଆଦିମ ମନ୍ଦିର-୨୨୭ ।

ପ୍ଲେଟ ନଂ ୨ [ବାମରୁ ଡ଼ାହାଣ]

[୭] ଯୋଗୀ ଦକ୍ଷିଣା ମୂର୍ତ୍ତି-୧୫୩, [୮] ମହେନ୍ଦ୍ରଗିରି ବୁଦ୍ଧେଶ୍ୱର
[ଇନ୍ଦ୍ରଲିଙ୍ଗ] ୧୭୩, [୯] ନାରାୟଣପୁର ଶ୍ରୀଜଗନ୍ନାଥ-୧୭୫, [୧୦]
ପଞ୍ଚ ପାଣ୍ଡବ କୁଣ୍ଡ-୧୪୬, ୨୨୧, [୧୧] ବୁଢ଼ାରସିଂ ଶ୍ରୀଜଗନ୍ନାଥ-୧୭୫ ।

ପ୍ଲେଟ ନଂ ୩ ଚିତ୍ର ୧୨ ଚାଉଳେଶ୍ୱର ୧୪୨ ।

ଚିତ୍ର ୧୩] ପଞ୍ଚ ପାଣ୍ଡବ କୁଣ୍ଡରେ ନିର୍ମିତ ଜଳସେଚନ ପ୍ରକଳ୍ପ-୧୪୬,
ଚିତ୍ର [୧୪] ସିଂହରାଜ ଶୃଙ୍ଗର ଦୃଶ୍ୟ-୨

ପ୍ଲେଟ ନଂ ୪ ମନ୍ଦିରମାଳାର ରେଖା ଚିତ୍ର-୨୨୪, ୨୨୫ ।

[୫] ମନ୍ଦିର କଳାର କ୍ରମବିକାଶ-୨୨୨, ୨୨୫, ୨୨୭, ୨୨୪,
[୬] ମନ୍ଦିର କଳାର କ୍ରମବିକାଶ-୨୨୮ ।

## ମାନଚିତ୍ରାବଳୀ

[୧] ପୌରାଣିକ ସପ୍ତଦ୍ୱୀପ-୩ [୨] ଭାରତ ବର୍ଷ ସପ୍ତକୁଳାଚଳ-୩,
୧୫୭, [୩] ମହେନ୍ଦ୍ରଗିରିରୁ ପ୍ରବାହିତ ପଚିଶ ନଦୀସମୂହ-୫, ୭, ୭,୧୧
[୪] ସମୁଦ୍ରଗୁପ୍ତଙ୍କ ଦକ୍ଷିଣାପଥ ଅଭିଯାନ-୮, ୨୦୯, [୫] ମହେନ୍ଦ୍ରଗିରିର
ଯାତାୟାତ ପଥ-୯ ।

ପଦ୍ମଶ୍ରୀ ଡ: ସତ୍ୟନାରାୟଣ ରାଜଗୁରୁ, ଡି. ଲିଟ୍, ପୁରୀ
ଶ୍ରୀ ଜଗନ୍ନାଥ ସଂସ୍କୃତ ମହାବିଦ୍ୟାଳୟ ତା ୧୬-୧-୧୯୭୭
ଶ୍ରୀବିହାର, ପୁରୀ

ମୋର ଶ୍ରଦ୍ଧେୟ ବନ୍ଧୁ ଡା: ଭରତ ପଣ୍ଡାଙ୍କ ଓଡ଼ିଆ ସଂସ୍କୃତି ଓ ସାହିତ୍ୟ ସମ୍ବନ୍ଧରେ ଆଗ୍ରହ ଓ ଅବଦାନ ପ୍ରଶଂସନୀୟ । ବହୁ ଅଧ୍ୟୟନର ଫଳ ସ୍ୱରୂପ ବର୍ତ୍ତମାନ ସେ ସଙ୍କଳନ କରିଥିବା ଏହି ପୁସ୍ତକଟି "ଯୁଗେ ଯୁଗେ ମହେନ୍ଦ୍ରଗିରି" ଅତ୍ୟନ୍ତ ଉପାଦେୟ ତଥ୍ୟାବଳୀରେ ଭରପୂର ହୋଇଥିବାରୁ ସାଧାରଣ ପାଠକଙ୍କ ଜ୍ଞାନ ସେହି ପବିତ୍ର ମହେନ୍ଦ୍ରଗିରି ସମ୍ପର୍କରେ, ତଥା ସେଠାରେ ପ୍ରବର୍ତ୍ତିତ ଧର୍ମ ଓ ସଂସ୍କୃତି ବିଷୟରେ ବିଶ୍ଳେଷଣ କରି ଡକ୍ଟର ପଣ୍ଡା ଓଡିଶାର ଏକ ଶ୍ରେଷ୍ଠ ତୀର୍ଥର ପରିଚୟ ଦେଇଛନ୍ତି । ଓଡିଶାରେ ମହେନ୍ଦ୍ରଗିରିର ଐତିହାସିକ ପ୍ରାଧାନ୍ୟ ସମେତ ପର୍ଶୁରାମଙ୍କ ଅବସ୍ଥିତି ଏବଂ ପଞ୍ଚପାଣ୍ଡବଙ୍କ ନାମରେ ନିର୍ମିତ କେତେକ ପ୍ରାଚୀନ ମନ୍ଦିରଗୁଡିକ ସେଠାରେ ଅବସ୍ଥିତ । ସେହି ପର୍ବତ ୧୫୦୧ ମିଟର (୪,୯୨୩ ଫୁଟ) ଉଚ୍ଚତାବିଶିଷ୍ଟ ହୋଇ ବଙ୍ଗୋପସାଗର ଉପକୂଳଠାରୁ ପ୍ରାୟ ୧୫ କିଲୋ ମିଟର ଦୂରରେ ଥିବାରୁ ସେଥିର ମନୋହର ଦୃଶ୍ୟ ଓଡ଼ିଶାରେ ସର୍ବଶ୍ରେଷ୍ଠ କହିଲେ ଅତ୍ୟୁକ୍ତି ହେବ ନାହିଁ । ଗ୍ରୀଷ୍ମକାଳରେ ମଧ୍ୟ ସେହି ପର୍ବତର ଶିଖର ଦେଶ ମେଘାଚ୍ଛାଦିତ ହୋଇ ଶୀତଳ ହୋଇଥାଏ । ତେଣୁ ମହାକବି କାଳିଦାସଙ୍କ 'ମେଘଦୂତ' କାବ୍ୟର ବର୍ଣ୍ଣନା ଆମ୍ଭଙ୍କୁ ସ୍ମରଣ କରାଇଦିଏ । ଏଣୁ ତୀର୍ଥଯାତ୍ରୀ ଓ ବୈଦେଶିକ ଦର୍ଶକମାନଙ୍କ ଗମନାଗମନ ପାଇଁ ବ୍ରହ୍ମପୁର ଓ ପାରଳାଖେମୁଣ୍ଡିଠାରୁ ସେହି ମନୋରମ ମହେନ୍ଦ୍ରାଚଳର ଦୃଶ୍ୟ ଦେଖି ଆହ୍ଲାଦିତ ହେବା ଲୋକମାନଙ୍କ ପକ୍ଷରେ ସମ୍ଭବ ହୋଇ ପାରିବ । କେବଳ ସେତିକି ନୁହେଁ ଆଧୁନିକ ସମାଜରେ ଆର୍ଥିକ ବିକାଶ ପାଇଁ ଯେଉଁ ଔଷଧି-ବୃକ୍ଷ ଲତା ସେଠାରେ ଉତ୍ପାଦିତ ହେଉଥିଲା ସେ ସମ୍ବନ୍ଧରେ ଗବେଷଣା କରିବା ଆବଶ୍ୟକ । କିନ୍ତୁ ଓଡିଶାର ଏକ ଉପାନ୍ତ ଅଞ୍ଚଳରେ ରହିଥିବାରୁ ମହେନ୍ଦ୍ରଗିରିର ମାହାତ୍ମ୍ୟ ଓ ସେଠାରେ ଐତିହାସିକ ଗବେଷଣାର ଗୁରୁତ୍ୱ କେହି ଉପଲବ୍‌ଧି କରିପାରୁ ନାହାନ୍ତି । ତେଣୁ ଏହି କ୍ଷୁଦ୍ର ପୁସ୍ତକର ମାଧ୍ୟମରେ ଡକ୍ଟର ଭରତ ପଣ୍ଡା ମହେନ୍ଦ୍ରଗିରିର ପ୍ରାଧାନ୍ୟ ସମ୍ବନ୍ଧେ ଓଡ଼ିଆମାନଙ୍କ ଦୃଷ୍ଟି ଆକର୍ଷଣ କରିଥିବା ଅତ୍ୟନ୍ତ ଆନନ୍ଦର ବିଷୟ ।

ବିଶମ୍ବଦ
ଶ୍ରୀ ସତ୍ୟନାରାୟଣ ରାଜଗୁରୁ

ପ୍ରଫେସର ଅମୂଲ୍ୟ କୁମାର ପଣ୍ଡା,
ଅଧ୍ୟକ୍ଷ
ରେଭେନ୍‌ସା ସ୍ୱୟଂଶାସିତ ମହାବିଦ୍ୟାଳୟ

କଟକ-୭୫୩ ୦୦୩
ଓଡ଼ିଶା (ଭାରତ)
ତା ୧୯-୧-୯୭

ପୂର୍ବଘାଟ ପର୍ବତମାଳାରେ ଅବସ୍ଥିତ ମହେନ୍ଦ୍ରଗିରି ପ୍ରାକୃତିକ, ଐତିହାସିକ, ପୌରାଣିକ ପ୍ରତ୍ନତାତ୍ତ୍ୱିକ ଓ ଧାର୍ମିକ ଦୃଷ୍ଟିରୁ ସାରାଦେଶରେ ଖ୍ୟାତି ଅର୍ଜନ କରିଛି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାପର୍ଯ୍ୟନ୍ତ ଏହା ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିରେ ଥିଲା । ଗର୍ବର ସହ କୁହାଯାଇପାରେ ଯେ ବଙ୍ଗୋପସାଗରର ଉପକୂଳରେ ଅବସ୍ଥିତ ମହେନ୍ଦ୍ରଗିରିର ଭୌଗୋଳିକ ଓ ପ୍ରାକୃତିକ ପରିବେଶ ଜନମାନସକୁ ମୁଗ୍ଧ କରିଥାଏ । ଶୈଳନିବାସ ପାଇଁ ଏହା ଏକ ଉପଯୁକ୍ତ ସ୍ଥାନ । ଇଷ୍ଟଇଣ୍ଡିଆ କମ୍ପାନୀ ଅଧୀନରେ ଥିବାବେଳେ ଏଥିପାଇଁ ଏକ ଯୋଜନା ମଧ୍ୟ ପ୍ରସ୍ତୁତ ହୋଇଥିଲା । କିନ୍ତୁ ଓଡ଼ିଶା ପ୍ରଦେଶ ଗଠିତ ପରେ ଏହା ଉପାନ୍ତ ଅଞ୍ଚଳରେ ରହିଥିବା ଦୃଷ୍ଟିରୁ ତଥା ସରକାରଙ୍କ ବୈମାତୃକ ମନୋଭାବ ଯୋଗୁଁ ଏଠାରେ ଏଯାବତ୍ କୌଣସି ଉନ୍ନତିମୂଳକ କାର୍ଯ୍ୟ ହୋଇପାରି ନାହିଁ । ଏପରିକି ଭୁବନେଶ୍ୱରଠାରୁ ଓଡ଼ିଶା ଭିତରେ ନିକଟତମ ରାସ୍ତାଟିଏ ମଧ୍ୟ ବିଗତ ୬୦ ବର୍ଷ ହେଲା ସମ୍ପୂର୍ଣ୍ଣ ହୋଇପାରି ନାହିଁ ।

ଏଠାର ପ୍ରାକୃତିକ ଶୋଭାଧର ଓଡ଼ିଶାର ଅନ୍ୟ ସ୍ଥାନରେ କ୍ୱଚିତ୍ ଦେଖିବାକୁ ମିଳିଥାଏ । ଜୈବ ବିଭିନ୍ନତା ଦୃଷ୍ଟିରୁ ମହେନ୍ଦ୍ରଗିରି ଅନନ୍ୟ ଓ ଅନୁପମ । ବିଭିନ୍ନ ଜାତିର ବନ୍ୟଜନ୍ତୁ ଯଥା—ବାଘ (Royal Bengal Tiger ଓ Leopard), ହାତୀ, ଭାଲୁ, ହେଟା, ବଣୁଆ କୁକୁର, ସମ୍ବର, ବିଭିନ୍ନ ଜାତିର ହରିଣ, ଝିଙ୍କ, ବନ୍ଦ୍ରକାପ୍ତା ଇତ୍ୟାଦି ପଶୁ, ବିଭିନ୍ନ ଜାତିର ସରୀସୃପ, ଅନେକ ସ୍ଥାନୀୟ ଓ ବିଦେଶାଗତ ପକ୍ଷୀ ଏବଂ ଅନ୍ୟ ବହୁଜାତିର ଜୀବଜନ୍ତୁଙ୍କ ଏକ ଅପୂର୍ବ ସମାବେଶ, ମନରେ ଧାରଣା ଜନ୍ମାଏ ଯେ ସତେ ଯେମିତି ପ୍ରକୃତି ନିଜ ହାତରେ ଗୋଟିଏ "ନନ୍ଦନ କାନନ" ଏଠାରେ ସୃଷ୍ଟି କରିଛି । ସେହିପରି ବହୁପ୍ରକାରର ଛୋଟବଡ଼ ଉଦ୍ଭିଦ ମହେନ୍ଦ୍ରଗିରିର ପ୍ରାକୃତିକ ଶୋଭାକୁ ବେଶି ବଢ଼ାଇ ଦେଇଛି । ତା ଛଡ଼ା ଏହି ଜଙ୍ଗଲକୁ ଏକ ପ୍ରାକୃତିକ ବନୌଷଧି ଭଣ୍ଡାର କହିଲେ ଅତ୍ୟୁକ୍ତି ହେବନାହିଁ ।

ସବୁଦିଗରୁ ଅତୁଳନୀୟ ଏହି ମହେନ୍ଦ୍ରଗିରି ଉପରେ ବନ୍ଧୁ ଡକ୍ଟର ଭରତ ପଣ୍ଡାଙ୍କ ଲିଖିତ ପୁସ୍ତକ "ଯୁଗେ ଯୁଗେ ମହେନ୍ଦ୍ରଗିରି" ଯଥାର୍ଥରେ ପ୍ରଶଂସନୀୟ ।

ସାତୋଟି ପରିଚ୍ଛେଦ ବିଶିଷ୍ଟ ଏହି ପୁସ୍ତକରେ ଡ଼. ପଣ୍ଡା, ପ୍ରାକୃତିକ ଅବସ୍ଥିତି ତଥା ପୌରାଣିକ, ଐତିହାସିକ, ସାଂସ୍କୃତିକ, ପ୍ରତ୍ନତାତ୍ତ୍ୱିକ ଓ କିମ୍ବଦନ୍ତୀ ଦୃଷ୍ଟିରୁ ମହେନ୍ଦ୍ର-ଗିରିର ବୈଶିଷ୍ଟ୍ୟ ପ୍ରାଞ୍ଜଳଭାବେ ବର୍ଣ୍ଣନା କରିଛନ୍ତି । ମୋର ବିଶ୍ୱାସ ବହୁଦିନର ଗବେଷଣାପ୍ରସୂତ ଏହି ପୁସ୍ତକ ମହେନ୍ଦ୍ରଗିରିକୁ ପ୍ରକୃତି, କଳା ଓ ସଂସ୍କୃତି ଏକ ସମନ୍ୱୟ ଭାବେ ପ୍ରତିପାଦିତ କରିବାରେ ସଫଳ ହେବ ଏବଂ ସରକାରଙ୍କ ଦ୍ୱାରା ଏଯାଏ ଅବହେଳିତ ଏହି ଅତ୍ୟନ୍ତ ମନୋରମ ସ୍ଥାନକୁ ଭାରତର ପର୍ଯ୍ୟଟନ ମାନଚିତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେବାରେ ସହାୟକ ହେବ ।

ଭଗବାନଙ୍କଠାରେ ପ୍ରାର୍ଥନା ଡ଼. ପଣ୍ଡାଙ୍କ ଗବେଷଣା ଓ ଲେଖନୀ ସ୍ୱଚ୍ଛ ରହୁ ।

ଅମୂଲ୍ୟ କୁମାର ପଣ୍ଡା
ଅଧ୍ୟକ୍ଷ,
ରେଭେନ୍ସା ମହାବିଦ୍ୟାଳୟ, କଟକ

ଡକ୍ଟର ବାସୁଦେବ ସାହୁ,
ଏମ୍.ଏ., ପିଏଚ୍. ଡି., ଡି.ଲିଟ୍
ଅବସର ପ୍ରାପ୍ତ ପ୍ରଫେସର,
ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀ ବିହାର
ଭୁବନେଶ୍ୱର (ଓଡ଼ିଶା)

## 'ଯୁଗେ ଯୁଗେ ମହେନ୍ଦ୍ରଗିରି' : ଏକ ଆକଳନ

ଅବିଭକ୍ତ ଗଞ୍ଜାମ ଜିଲ୍ଲା ଓ ଅଧୁନା ଗଜପତି ଜିଲ୍ଲାରେ ଅବସ୍ଥିତ ମହେନ୍ଦ୍ରଗିରି କେବଳ ଓଡ଼ିଶାର ନୁହେଁ, ସମଗ୍ର ଭାରତର ଭୌଗୋଳିକ ପରିବେଶ, ଧର୍ମ, ସଂସ୍କୃତି, ଇତିହାସ, ପୁରାତତ୍ତ୍ୱ, ପ୍ରକୃତତତ୍ତ୍ୱ, ରାଜନୀତି, ସାହିତ୍ୟ, କିମ୍ବଦନ୍ତୀ ପ୍ରଭୃତି ଦୃଷ୍ଟିରୁ ଅତୀବ ମହତ୍ତ୍ୱପୂର୍ଣ୍ଣ । ଏହା ସମ୍ପର୍କରେ ସଂସ୍କୃତ, ଓଡ଼ିଆ, ବଙ୍ଗଳା, ତେଲୁଗୁ, ହିନ୍ଦୀ, ଇଂରାଜୀ ପ୍ରଭୃତି ବିଭିନ୍ନ ଭାଷାରେ ବହୁ ପ୍ରାମାଣିକ ଆଲୋଚନା ଗ୍ରନ୍ଥ, ଗବେଷଣାମୂଳକ ପ୍ରବନ୍ଧ, ପୁରାଣ, କାବ୍ୟ ରଚିତ ହୋଇଛି । ଅଥଚ ସାଂପ୍ରତିକ ଭାରତର ପର୍ଯ୍ୟଟନ ନକ୍ସାରେ ଏହା ସେଭଳି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ପାଇନାହିଁ ।

ମହେନ୍ଦ୍ରଗିରି ସମ୍ପର୍କରେ ଅତୀତରେ ବିକ୍ଷିପ୍ତ ଭାବରେ ବହୁ ଆଲୋଚନା ଥିଲେ ହେଁ ବିଧିବଦ୍ଧ ପଦ୍ଧତିରେ ସବୁ ଦୃଷ୍ଟିରୁ ସର୍ବତୋଭାବେ ସର୍ବାଙ୍ଗୀନ ଗବେଷଣା-ମୂଳକ ସନ୍ଦର୍ଭ ଲେଖା ହୋଇନାହିଁ । ବିଦ୍ୱାନ୍ ଗବେଷକ, ଆଜୀବନ ସାହିତ୍ୟସାଧକ, ଆଦର୍ଶ ଶିକ୍ଷକ ଡକ୍ଟର ଭରତ ପଣ୍ଡା ଏହି ଅଭାବପୂରଣ ଲାଗି ଯେଉଁ ମହଦୁଦ୍ୟମ କରିଛନ୍ତି, ସେଥିପାଇଁ ତାହାଙ୍କୁ ମୁଁ ପ୍ରଥମେ ସଶ୍ରଦ୍ଧ ସାଧୁବାଦ ଜଣାଉଛି ।

ତାଙ୍କର ଗବେଷଣାମୂଳକ ପି.ଏଚ୍. ଡି. ସନ୍ଦର୍ଭର ଶୀର୍ଷକ ହେଉଛି "ଓଡ଼ିଶାର ସାମାଜିକ ଓ ଧାର୍ମିକ ପରମ୍ପରାରେ ମହେନ୍ଦ୍ରଗିରିର ଭୂମିକା ।" ସନ୍ଦର୍ଭଟି ଯେପରି ତଥ୍ୟପୂର୍ଣ୍ଣ, ସେହିପରି ତାତ୍ତ୍ୱିକ; ଯେପରି ଐତିହାସିକ ମୂଲ୍ୟସଂପନ୍ନ, ସେହିପରି ସାହିତ୍ୟିକ ମୂଲ୍ୟରେ ଋଦ୍ଧିମନ୍ତ । ଏହି ସନ୍ଦର୍ଭର ଏକ ପରିମାର୍ଜିତ ଓ ପରିବର୍ଦ୍ଧିତ ରୂପ ହେଉଛି "ଯୁଗେ ଯୁଗେ ମହେନ୍ଦ୍ରଗିରି ।"

ସଂସ୍କୃତ ଭାଷାରେ ରଚିତ ବିଭିନ୍ନ ରାମାୟଣ, ମହାଭାରତ, ବ୍ରହ୍ମବୈବର୍ତ୍ତ ପୁରାଣ, ମତ୍ସ୍ୟପୁରାଣାଦି ବଂଶାଧିକ ପୁରାଣକୁ ତନ୍ନ ତନ୍ନ ଅଧ୍ୟୟନ କରି ସେ ମହେନ୍ଦ୍ର-ଗିରିର ପ୍ରାଚୀନ ଐତିହ୍ୟ ଉପରେ ଆଲୋକପାତ କରିଛନ୍ତି । ଓଡ଼ିଆ ଭାଷାର ସାରଳା

ମହାଭାରତ, ବାଲ୍ମୀକି ରାମାୟଣ, ହରିବଂଶ, ନୃସିଂହପୁରାଣ, ତେଲୁଗୁ ଓ ତାମିଲ୍ ଭାଷାର ରାମାୟଣ, ମହାଭାରତ, ବଙ୍ଗଳାର କୃତ୍ତିବାସ ରାମାୟଣ ପ୍ରଭୃତିରେ ଯେଉଁ ମହେନ୍ଦ୍ର-ଗିରିର ଉଲ୍ଲେଖ ରହିଛି, ତାହା ଓଡ଼ିଶାର ମହେନ୍ଦ୍ରଗିରି ବୋଲି ଡ଼କ୍ଟର ପଣ୍ଡା ବହୁ ପ୍ରାମାଣିକ ଯୁକ୍ତିବଳରେ ପ୍ରତିପାଦନ କରିଛନ୍ତି । ଗୁପ୍ତ, ମାଠର, ଶୈଳୋଦ୍ଭବ, ଭୌମକର, ଗଙ୍ଗ ଓ ସୂର୍ଯ୍ୟବଂଶୀୟ ଶାସନ କାଳରେ ମହେନ୍ଦ୍ରଗିରିର ଭୂମିକା ପ୍ରତିଷ୍ଠା କରିବା ପାଇଁ ସେ ବହୁ ଦୁର୍ଲଭ ଐତିହାସିକ ଉପାଦାନର ସାହାଯ୍ୟ ନେଇଛନ୍ତି । ଆର୍ଯ୍ୟ, ଅଷ୍ଟ୍ରିକ ଓ ଦ୍ରାବିଡ଼ ସଂସ୍କୃତିରେ ମହେନ୍ଦ୍ରଗିରିର ମହତ୍ତ୍ୱ ଦର୍ଶାଇବା ସଙ୍ଗେ ସଙ୍ଗେ ସେ ପ୍ରାପ୍ତ କୋଡ଼ିଏଟି କିମ୍ବଦନ୍ତୀ ଭିତ୍ତିରେ ଏହାର ମାହାତ୍ମ୍ୟ ଦର୍ଶାଇଛନ୍ତି ।

ନିଷ୍କର୍ଷରେ ସେ ପ୍ରମାଣ କରିଛନ୍ତି ଯେ ଓଡ଼ିଶାର ସାଂସ୍କୃତିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ମହେନ୍ଦ୍ରଗିରିର ଭୂମିକା ଅନବଦ୍ୟ । ସ୍ୱତନ୍ତ୍ର ଉତ୍କଳ-ପ୍ରଦେଶ ଗଠନରେ ମଧ୍ୟ ଏହାର ରହିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ଜଗତରେ ଏହା ଏକ ଉଜ୍ଜ୍ୱଳ ନମୁନା । ଏହା ଏକ ଗିରିଦୁର୍ଗ । ଏହିପରି ଏକ ମହିମାମୟ ଗୌରବାଢ଼୍ୟ ଗିରିକୁ ଏ ଜାତି ସମ୍ମାନ ଦେଇ ଏହାର ପ୍ରଚାର ଓ ବିକାଶରେ ଗମ୍ଭୀର ଧ୍ୟାନ ଦେବା ଆବଶ୍ୟକ ବୋଲି ସେ ଆହ୍ୱାନ କରିଛନ୍ତି ।

ଡ଼କ୍ଟର ପଣ୍ଡା ଏଭଳି ଏକ ଉଚ୍ଚକୋଟୀର ଗବେଷଣା ଗ୍ରନ୍ଥ ପ୍ରସ୍ତୁତି ପାଇଁ କି କଷ୍ଟ ଓ ନିଷ୍ଠା ମଧ୍ୟରେ ଗତି କରିଛନ୍ତି, ଭାବିଲେ ବିସ୍ମିତ ହେବାକୁ ପଡ଼େ । ଏହି ଗ୍ରନ୍ଥ ତାଙ୍କ ପାଇଁ ଅଭୂତପୂର୍ବ ଯଶ ଓ ଖ୍ୟାତି ଆଣିଦେବ, ଏଥିରେ ସନ୍ଦେହ ନାହିଁ ।

ମୁଁ ଏହି ମହାନ୍ ଗବେଷକଙ୍କ ସାଧନାର ଉତ୍ତରୋତ୍ତର ଉତ୍ତରଣ କାମନା କରୁଛି ।

ବାସୁଦେବ ସାହୁ

ଡକ୍‌ଟର କରୁଣା ସାଗର ବେହେରା, ଏମ୍‌.ଏ., ଡି.ଲିଟ୍‌ (ଉତ୍କଳ)
ପ୍ରଫେସର, ଇତିହାସ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର
ଭୁବନେଶ୍ୱର
ଓଡ଼ିଶା (ଭାରତ)

ଭାରତବର୍ଷର ସପ୍ତ କୁଳପର୍ବତ ମହେନ୍ଦ୍ରଗିରି ପୂର୍ବଭାରତର ଗର୍ବ ଓ ଗୌରବ । ମହାଭାରତରେ ଜଣାଯାଏ ଅତି ପ୍ରାଚୀନ କାଳରୁ ପର୍ଶୁରାମଙ୍କର କ୍ଷେତ୍ରରୂପେ ଖ୍ୟାତିଲାଭ କରିଥିଲା । ବାମନ ପୁରାଣରୁ ଜଣାଯାଏ ବିରଜା, ପୁରୁଷୋତ୍ତମ ଓ ମହେନ୍ଦ୍ରଗିରି ଓଡ଼ିଶାର ପ୍ରଧାନ ତୀର୍ଥସ୍ଥଳ ଥିଲା । ଦକ୍ଷିଣପୂର୍ବ ଏସିଆରେ ମହେନ୍ଦ୍ରଗିରି ନାମର ବ୍ୟବହାର ଦେଖାଯାଏ । ଏପରିକି ବାଲିଦ୍ୱୀପର ସଂସ୍କୃତ ସ୍ତବ ସ୍ତୁତି ଆଦିରେ ମହେନ୍ଦ୍ରଗିରିର ମହତ୍ତ୍ୱ ପ୍ରତିଫଳିତ ହୋଇଛି । କଳିଙ୍ଗର ପ୍ରାଚୀନ ଇତିହାସ ସହିତ ମହେନ୍ଦ୍ରଗିରିର ନିବିଡ଼ ସମ୍ପର୍କ ଥିଲା । ଗଙ୍ଗରାଜାମାନେ ମହେନ୍ଦ୍ରଗିରିର ଶିଖର ଦେଶରେ ପ୍ରତିଷ୍ଠିତ ଗୋକର୍ଣ୍ଣେଶ୍ୱର ସ୍ୱାମୀଙ୍କର ପୂଜା ଆରାଧନା କରୁଥିଲେ । ମହେନ୍ଦ୍ରଗିରିକୁ ଜୟକଲେ କଳିଙ୍ଗକୁ ଜୟ କରିବାର ସୂଚିତ ହେଲା । ମହୋଦଧିର ନିକଟରେ ମହେନ୍ଦ୍ରଗିରିର ଅବସ୍ଥିତି ଉତ୍ତର ଭାରତ ଓ ଦକ୍ଷିଣ ଭାରତର ଗମନାଗମନ ପଥକୁ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ । କାଳିଦାସ ମହେନ୍ଦ୍ରଗିରିର ଗୁରୁତ୍ୱ ଓ ମହତ୍ତ୍ୱକୁ ଉପଲବ୍‌ଧି କରି କଳିଙ୍ଗର ଅଧିପତିଙ୍କୁ ମହୋଦଧି ଓ ମହେନ୍ଦ୍ରଗିରି ଅଧିପତି ବୋଲି ବର୍ଣ୍ଣନା କରିଛନ୍ତି । ଷଷ୍ଠ, ସପ୍ତମ ଶତାବ୍ଦୀରେ ମହେନ୍ଦ୍ରଗିରି ଅଞ୍ଚଳ ଶୈଳୋଦ୍ଭବ ରାଜବଂଶର ଲୀଳନଭୂମି ଥିଲା । ମହେନ୍ଦ୍ରଗିରିର ଶିଖର ଦେଶରେ ଯୁଧିଷ୍ଠିର, କୁନ୍ତୀ ଓ ଭୀମଙ୍କ ନାମରେ ନାମିତ ପ୍ରାଚୀନ ମନ୍ଦିର କଳିଙ୍ଗର ମନ୍ଦିର ସ୍ଥାପତ୍ୟ ବିକାଶର ପରିଚୟ ଦିଏ । ଶିବ, ଅର୍ଦ୍ଧନାରୀଶ୍ୱର, ବିଷ୍ଣୁ ତଥା ଜଗନ୍ନାଥଙ୍କର ଉପାସନା ସହ ପର୍ଶୁରାମ, ରାମ ଓ ହନୁମାନଙ୍କ ଆରାଧନା ଧାର୍ମିକ କେନ୍ଦ୍ରରୂପେ ମହେନ୍ଦ୍ରଗିରିର ବିଶେଷତ୍ୱ ପ୍ରତିପାଦନ କରେ । ବ୍ରାହ୍ମଣ ଓ ଶବର ସଂସ୍କୃତିର ସମନ୍ୱୟ ମଧ୍ୟ ମହେନ୍ଦ୍ରଗିରିରେ ଦେଖିବାକୁ ମିଳେ ।

୧୯୯୪ ମସିହାରେ ସଂସ୍କୃତପ୍ରେମୀ ତଥା ପ୍ରଶାସକ ଶ୍ରୀଯୁକ୍ତ ପତିତ ପାବନ ମହାପାତ୍ରଙ୍କ ନେତୃତ୍ୱରେ ମୋତେ ମହେନ୍ଦ୍ରଗିରି ପରିଦର୍ଶନ କରିବାର ସୁଯୋଗ ମିଳିଥିଲା । ଯୁଧିଷ୍ଠିର ମନ୍ଦିରଠାରୁ ଭୀମ ମନ୍ଦିରକୁ ପଦଯାତ୍ରାରେ ଯିବା କଷ୍ଟସାଧ୍ୟ ଥିଲା କିନ୍ତୁ ମହେନ୍ଦ୍ରଗିରିର ପ୍ରାକୃତିକ ସୌନ୍ଦର୍ଯ୍ୟ, ପରିବେଶ ତଥା ପ୍ରତ୍ନତାତ୍ତ୍ୱିକ ବିଭବ

ମୋତେ ଗଭୀର ଆନନ୍ଦ ଦେଉଥିଲା । ଭାରତ ବର୍ଷର ବିଭିନ୍ନ କୀର୍ତ୍ତିରାଜି ପରିଦର୍ଶନ କରିବାର ମୋତେ ସୌଭାଗ୍ୟ ମିଳିଛି କିନ୍ତୁ ସେଦିନ ପବିତ୍ର ମହେନ୍ଦ୍ରଗିରିର ଶିଖରକୁ ଯାଇ ଯେଉଁ ଆନନ୍ଦ ଲାଭ କରିଛି ତାହା ଭାଷାରେ କହି ହେବ ନାହିଁ । ଡ଼କ୍ଟର ଭରତ ପଣ୍ଡାଙ୍କ ସାହାଯ୍ୟ ଓ ମାର୍ଗଦର୍ଶନ ମହେନ୍ଦ୍ରଗିରି ପରିଦର୍ଶନକୁ ସଫଳ କରାଇଥିଲା । ଡ଼କ୍ଟର ପଣ୍ଡା ଦୀର୍ଘ ୧୫ ବର୍ଷଧରି ଓଡ଼ିଶାର ସାମାଜିକ ଓ ଧାର୍ମିକ ପରମ୍ପରାରେ ମହେନ୍ଦ୍ରଗିରିର ଗବେଷଣା କରି ଆସିଛନ୍ତି । ମହେନ୍ଦ୍ରଗିରିର ପ୍ରତ୍ୟେକ ସ୍ଥାନ, ପଥର ତଥା କୀର୍ତ୍ତିରାଜି ସହିତ ସେ ପରିଚିତ ଓ ସେ ସବୁର ମହତ୍ତ୍ୱ ସମ୍ବନ୍ଧରେ ସଚେତନ । ଅତି ଖୁସିର କଥା ତାଙ୍କ ପ୍ରଣୀତ ଯୁଗେ ଯୁଗେ ମହେନ୍ଦ୍ରଗିରି ପୁସ୍ତକ ପ୍ରକାଶିତ ହେବାକୁ ଯାଉଛି । ଏହି ପୁସ୍ତକରେ ମହେନ୍ଦ୍ରଗିରିର ଇତିହାସ, ଧାର୍ମିକ ପରମ୍ପରା, ମାହାତ୍ମ୍ୟ, କିମ୍ବଦନ୍ତୀ, ଦେବାଳୟ, ପ୍ରତ୍ନତାତ୍ତ୍ୱିକ ବିଭବ ଆଦିର ବିଶଦ ଆଲୋଚନା କରାଯାଇଛି । ବହୁତ ଦିନରୁ ଏପରି ଏକ ପୁସ୍ତକର ଆବଶ୍ୟକତା ଥିଲା । ଏହି ମହନୀୟ ପ୍ରୟାସ ଲାଗି ଡ଼କ୍ଟର ପଣ୍ଡାଙ୍କୁ ମୁଁ ଅଭିନନ୍ଦନ ଜଣାଉଛି । ମୋର ଦୃଢ଼ବିଶ୍ୱାସ ଯୁଗେ ଯୁଗେ ଏ ମହେନ୍ଦ୍ରଗିରିର ପୁସ୍ତକ ଗବେଷକ, ଛାତ୍ର ଓ ସାଧାରଣ ଲୋକଙ୍କ ଦ୍ୱାରା ଆଦୃତ ହେବ ।

କରୁଣା ସାଗର ବେହେରା

## ପ୍ରଥମ ପରିଚ୍ଛେଦ

# ।। ମହେନ୍ଦ୍ରଗିରିର ପ୍ରାକୃତିକ ଅବସ୍ଥିତି ।।

କେଉଁ ଆଦିମ ଯୁଗରୁ ପ୍ରାଚୀନ ଗଣ୍ଡୱାନାଲଣ୍ଡର ଅଂଶବିଶେଷ ଦାକ୍ଷିଣାତ୍ୟ ମାଳଭୂମିର ଉତ୍ତୁଙ୍ଗ ମହେନ୍ଦ୍ରଗିରି ଆଜି କେବଳ ମହାଶିବରାତ୍ରି ଉତ୍ସବର ପାଳନ ଅବସରରେ ହଜାର ହଜାର ଯାତ୍ରୀଙ୍କୁ ଆକୃଷ୍ଟ କରୁଛି, ଯେପରିକି ଏପ୍ରକାର ସମାଗମ ତିରୁପତି, ହିମାଚଳ ଓ ଭଦ୍ରାଚଳାଦି ପୁଣ୍ୟ ତୀର୍ଥକ୍ଷେତ୍ରରେ ଦୃଷ୍ଟିଗୋଚର ହେଉଅଛି । କିନ୍ତୁ ଏକଦା ଏହି ଗିରି ଯେ ଏକ ପବିତ୍ର ତୀର୍ଥକ୍ଷେତ୍ର ରୂପେ ସମଗ୍ର ପୃଥିବୀର ବହୁ ଐତିହାସିକ, ସାଧକ, ପର୍ଯ୍ୟଟକ ଓ ତୀର୍ଥ ଯାତ୍ରୀଙ୍କୁ ଅକୃଷ୍ଟ କରିପାରିଥିଲା, ତାହା ମହାଭାରତ, ରାମାୟଣ, ବିଷ୍ଣୁପୁରାଣ, ବାୟୁପୁରାଣ, ଅଗ୍ନିପୁରାଣ, ପ୍ରାଚୀନ ଉତ୍କଳ ଇତିହାସ, ବିଭିନ୍ନ ଶିଳାଲେଖ, ତାମ୍ରପତ୍ରାଦି ଅନୁଧ୍ୟାନ କଲେ ସ୍ପଷ୍ଟ ପ୍ରମାଣିତ ହୁଏ । ତେବେ ଏ ସମ୍ବନ୍ଧରେ ବିସ୍ତୃତ ଆଲୋଚନା ପୂର୍ବରୁ ପ୍ରଥମେ ଏହାର ଭୌଗୋଳିକ ପରିବେଶ ସମ୍ପର୍କରେ ଆଲୋକପାତ କରାଯିବା ଆବଶ୍ୟକ ।

### (କ) ଭୌଗୋଳିକ ପରିବେଶ :

ଗଞ୍ଜାମ ଜିଲ୍ଲାର ସୁ-ପ୍ରସିଦ୍ଧ ମହେନ୍ଦ୍ରଗିରି ୧୮°-୫୮'-୧୦'' ଉତ୍ତର ଅକ୍ଷାଂଶ ଏବଂ ୮୪°-୨୭'-୪'' ପୂର୍ବ ଦ୍ରାଘିମାରେ ଅବସ୍ଥିତ । ଏହାର ଉଚ୍ଚତା ୪୯୨୩ ଫୁଟ ଅର୍ଥାତ୍ ୧୫୦୧ ମିଟର । (୧) ଓଡ଼ିଶାର ଦକ୍ଷିଣରେ ଗଞ୍ଜାମ ଓ ଗଜପତି ଜିଲ୍ଲାରେ

---

(୧) (i) ଡି°. ଡକ୍ଟର ବିଚକ୍ଷାନନ୍ଦ : ଭୂବର୍ତ୍ତିକା-୩ -- ସର୍ଭେ ଅଫ ଇଣ୍ଡିଆ ।

ଥିବା ପର୍ବତଶ୍ରେଣୀ ଏବଂ ଗୋଦାବରୀ ନଦୀତଟସ୍ଥ ପୂର୍ବଘାଟ ପର୍ବତମାଳାକୁ ମହେନ୍ଦ୍ର ପର୍ବତ କୁହାଯାଏ । ଏ ପର୍ବତଶ୍ରେଣୀ ଐତିହାସିକ ଉତ୍କଳର ସର୍ବୋଚ୍ଚ ପର୍ବତ (୨) ମହେନ୍ଦ୍ରର ଅର୍ଥ ମହତ୍ତ୍ୱରେ ଇନ୍ଦ୍ର (ମହାଯୁକ୍ତ ଇନ୍ଦ୍ର) ଅର୍ଥାତ୍ ଶ୍ରେଷ୍ଠ ଅର୍ଥରେ ପ୍ରୟୋଗ ହୁଏ । ସପ୍ତ କୁଳାଚଳ ମଧ୍ୟରେ ଶ୍ରେଷ୍ଠ ହେବା ଯୋଗୁଁ ପୂର୍ବେ ରାଜାମାନଙ୍କର ନାମ ମହେନ୍ଦ୍ର ରଖାଯାଉଥିଲା । ସମ୍ରାଟ ଅଶୋକଙ୍କ ପୁତ୍ରଙ୍କ ନାମ ମଧ୍ୟ ମହେନ୍ଦ୍ର ଥିଲା । ସୃଷ୍ଟି ରହସ୍ୟରୁ ଏହି ପ୍ରମାଣ ସ୍ପଷ୍ଟ ଯେ ସମୁଦ୍ରଗର୍ଭରୁ ହିମାଳୟର ସୃଷ୍ଟି ପ୍ରାୟ ଅଢ଼େଇ କୋଟି ବର୍ଷ ପୂର୍ବେ ଘଟିଥିଲେ ହେଁ (୩) (ହିମାଳୟ ପର୍ବତର ତରଙ୍ଗାୟିତ ସ୍ତର (Folds) ମଧ୍ୟରେ ଅଧୁନା ଲୁପ୍ତ ଅତୀତ ଯୁଗର ଜୀବଜନ୍ତୁଙ୍କ ଜୀବାଶ୍ମ ପ୍ରସ୍ତରୀଭୂତ ଜୀବାବଶେଷ—(Fossil) ରୂପେ ଦୃଷ୍ଟିଗୋଚର ହୁଏ) ତାର କ୍ରମୋତ୍ଥାନ ବର୍ତ୍ତମାନ ସୁଦ୍ଧା ଶେଷ ହୋଇନାହିଁ । (୪) ଭାରତର ଭୂ-ପ୍ରକୃତର ଉପର୍ଯ୍ୟୁକ୍ତ ଭୌଗୋଳିକ ଆଲୋଚନାରୁ ସ୍ପଷ୍ଟ ଜଣାଯାଏ ଯେ, ବର୍ତ୍ତମାନ ଭାରତର ବିଭିନ୍ନ ଅଂଶ ଏକ ସମୟରେ ଓ ଏକ ପ୍ରଣାଳୀରେ ଗଠିତ ହୋଇନାହିଁ । ଆଦିକାଳରୁ ଦକ୍ଷିଣ ଭାରତ ମାଳଭୂମି (ମହେନ୍ଦ୍ରଗିରି ସମେତ) ସ୍ଥିର ଶିଳାରାଶି ବିଦ୍ୟମାନ ଅଛି । ଏହାହିଁ ଭାରତର ପ୍ରାଚୀନତମ ଅଂଶ ।

ବିଷ୍ଣୁପୁରାଣ ଅନୁଯାୟୀ ଭାରତ ଭୂଖଣ୍ଡର ପାର୍ବତ୍ୟ ଅଞ୍ଚଳ ମଧ୍ୟରେ ପୁଣ୍ୟପୀଠ ମହେନ୍ଦ୍ରଗିରି ଆଦିକାଳରୁ ପ୍ରସିଦ୍ଧ ଓ ଉତ୍ତୁଙ୍ଗ ହିମାଳୟଠାରୁ ବୟସରେ ପ୍ରାଚୀନ

---

(ii) Mishra R. C and Mohanty P. R. : Pride of Eastern Ghat, O.E.S. BBSR. The Survey of India map in 1 : 1 Millian scale indicates the altitude of Mahendragiri and Singraj to be 1501 m and 1516 m. respectively while in the toposheet (1977) of 1 : 50,000 scales the hills are mentioned as 1499 m and 1495 m respectively. Since the original toposheet of SOI is in 1 : 50,000 scale from which the maps are generated, the altitude mentioned in the former may be taken as the correct height of the hills.

(୨) ପୂର୍ଣ୍ଣଚନ୍ଦ୍ର ଭାଷାକୋଷ : ମହେନ୍ଦ୍ରଗିରି ।

(୩) ଘୋଷ, ଲଳିତ ମୋହନ : ଅଭିନବ ଭୂଗୋଳ ପାଠ, ପୃ-୪ ।

(୪) Ibid-P. 5.

ବୋଲି ପ୍ରମାଣସିଦ୍ଧ । (୫) ମାର୍କଣ୍ଡେୟ ପୁରାଣରେ ମଧ୍ଯ ଏହି ସପ୍ତକୁଳାଚଳର ବିଷୟ ବର୍ଣ୍ଣାଯାଇଛି । (୬) ଅଗ୍ନିପୁରାଣରେ ନିମ୍ନୋକ୍ତ ବର୍ଣ୍ଣନା ବାୟୁ ପୁରାଣ ଦ୍ୱାରା ମଧ୍ଯ ସମର୍ଥିତ ।

ସର୍ବେଷ୍ୱେତେଷୁ ବର୍ଷେଷୁ, ସପ୍ତ ସପ୍ତ କୁଳାଚଳାଃ । (୭) ଅର୍ଥାତ୍—ଭାରତୀୟ ଭୂଗୋଳରେ ପୁରାଣମାନଙ୍କରେ ଦ୍ୱୀପସଂଖ୍ୟା ସାତ (ମାନଚିତ୍ର ପୌରାଣିକ ସପ୍ତଦ୍ୱୀପ ଦ୍ରଷ୍ଟବ୍ୟ) ପ୍ରତ୍ୟେକ ଦ୍ୱୀପର ବର୍ଷ ସଂଖ୍ୟା ସାତ,ପ୍ରତ୍ୟେକ ବର୍ଷର କୁଳପର୍ବତ ସଂଖ୍ୟା ସାତ ବୋଲି ନିର୍ଦ୍ଧାରିତ ହୋଇଛି । (ମାନଚିତ୍ର ସପ୍ତକୁଳାଚଳ ଦ୍ରଷ୍ଟବ୍ୟ)

ପୁନଶ୍ଚ ବିଷ୍ଣୁପୁରାଣରେ (୮) ଉକ୍ତ ଅଛି—

ନବ ବର୍ଷାସ୍ତୁ ମୈତ୍ରେୟ ଜମ୍ବୁଦ୍ୱୀପ ମିଦଂମଯା ।
ଲକ୍ଷ ଯୋଜନ ବିସ୍ତାରଂ ସଂକ୍ଷେପାତ୍କଥିତଂ ତବ ॥
ଜମ୍ବୁଦ୍ୱୀପଂ ସମାବୃତ୍ୟ ଲକ୍ଷ ଯୋଜନ ବିସ୍ତାରଃ ।
ମୈତ୍ରେୟ ବଳୟାକାରଃ ସ୍ଥିତଃ କ୍ଷାରୋଦଧେର୍ବହିଃ ॥୨୮॥

ବର୍ତ୍ତମାନ ଅବସ୍ଥିତିରୁ ଅନୁମିତ ହୁଏ, ଏହି ସପ୍ତକୁଳାଚଳର କେନ୍ଦ୍ର ମହେନ୍ଦ୍ରଗିରି ସମେତ ଜମ୍ବୁଦ୍ୱୀପର ସମସ୍ତ ଭୂଭାଗ ବର୍ତ୍ତମାନର ୟୁରୋପର ପୂର୍ବାଂଶ ଓ ସମଗ୍ର ଏସିଆ ମହାଦେଶ ଅଟେ (୯) ।

---

(୫) "ଉତ୍ତରଂ ଯତ୍ସମୁଦ୍ରସ୍ୟ ହିମାଦ୍ରେ ଶ୍ଚୈବ ଦକ୍ଷିଣମ୍
ବର୍ଷଃ ତଦ୍‌ଭାରତଂ ନାମ ଭାରତୀ ଯତ୍ର ସନ୍ତତିଃ ॥ ୧ ॥
ନବଯୋଜନ ସହସ୍ର ବିସ୍ତାରସ୍ୟ ମହାମୁନେ ।
କର୍ମଭୂମି ରିୟଂ ସ୍ୱର୍ଗ ମପବର୍ଗଂ ଚ ଗଚ୍ଛତାମ୍ ॥ ୨ ॥
ମହେନ୍ଦ୍ରୋ ମଳୟଃ ସହ୍ୟଃ ଶୁକ୍ତିମାନୃକ୍ଷ ପର୍ବତଃ ।
ବିନ୍ଧ୍ୟଶ୍ଚ ପାରିଯାତ୍ରଶ୍ଚ ସପ୍ତାତ୍ର କୁଳ ପର୍ବତାଃ ॥ ୩ ॥
(୨ୟ ଅଂଶ ୩ୟ ଅଧ୍ୟାୟ) ବିଷ୍ଣୁପୁରାଣମ୍, ଭାରତାଦି ନବଖଣ୍ଡ ବର୍ଣ୍ଣନା

(୬) ମାର୍କଣ୍ଡେୟ ପୁରାଣମ୍-with reference to the commentary by F. E. Pargitor, 57/10.

(୭) ଅଗ୍ନିପୁରାଣ : ୧୦୮/୩୨

(୮) ବିଷ୍ଣୁପୁରାଣ : ୨୬/୨୮

(୯) Ali S. M. Prof. : Geography of Puranas, P 22.

ସତ୍ୟ, ତ୍ରେତୟା, ଦ୍ୱାପର ଓ କଳି ଏହି ଚାରି ଯୁଗରେ କଳିଙ୍ଗ ରାଜ୍ୟର ପରିଚୟ ମିଳେ । ମାତ୍ର ବର୍ତ୍ତମାନ ବଙ୍ଗ ଅଛି, ଉତ୍କଳ ଅଛି, କଳିଙ୍ଗ ନାମକ ଜନପଦର ଚିହ୍ନ ବିଲୁପ୍ତ । (୧୦) ବର୍ତ୍ତମାନ ଜନପଦଟି କ୍ଷୁଦ୍ର ହେଲେ ହେଁ ମହେନ୍ଦ୍ରର ପଶ୍ଚିମକୁ ଏହାର ପାଦଦେଶରେ, କଳିଙ୍ଗ ନାମକ ଯେଉଁ ଶବର ପଡ଼ା ରହିଛି, ତାହା ଲୋକ-ଲୋଚନ ଗୋଚରକୁ ଆସିନାହିଁ । କେତେକ ମଧ୍ୟ ବଂଶଧାରା ନଦୀ ମୁହାଣରେ କଳିଙ୍ଗ ନଗରର ଅବସ୍ଥାନ ସୂଚିତ କରନ୍ତି । କିନ୍ତୁ ମହେନ୍ଦ୍ରମାଳା କଳିଙ୍ଗର କେନ୍ଦ୍ରରେ ଅବସ୍ଥିତ । ଏହା ସର୍ବବାଦୀସମ୍ମତ (୧୧) । କଳିଙ୍ଗ ଏକ ସମୟରେ ତ୍ରି-କଳିଙ୍ଗ ନାମରେ ପରିଚିତ ଥିଲା । ତହିଁର ପୃଥକ ଏକମାତ୍ର ତ୍ରିକଳିଙ୍ଗ ବା ତୈଲିଙ୍ଗ (ତେଲେଙ୍ଗାନା) । କଳିଙ୍ଗ ଥରେ ବଙ୍ଗ ଦେଶକୁ ଗ୍ରାସ କରିଥିଲା ଓ ଉତ୍କଳ (ଓଡ୍ରଦେଶ) କଳିଙ୍ଗର ଅଙ୍ଗ ଥିଲା । ପୂର୍ବତନ ଗଙ୍ଗା ତୀରସ୍ଥ ନବଦ୍ୱୀପ ଏବଂ ଆରାକାନ୍ ପର୍ଯ୍ୟନ୍ତ ପରିବ୍ୟାପ୍ତ କଳିଙ୍ଗ ଆଜି ଆଉ ନାହିଁ । ରାଜମହେନ୍ଦ୍ରୀ, କଳିଙ୍ଗପଟ୍ଟନ, ବିଶାଖାପଟ୍ଟନ ପ୍ରଭୃତି ନଗର ଏବଂ ମହେନ୍ଦ୍ର ପର୍ବତ ପାର୍ଶ୍ୱସ୍ଥିତ ଭୂ-ଭାଗହିଁ ସେତେବେଳେ କଳିଙ୍ଗ ରାଜ୍ୟ ବୋଲି ପରିଚିତ ଥିଲା । ରଘୁ ମହାରାଜାଙ୍କ ଦିଗ୍‌ବିଜୟ କାଳର ଯେଉଁ ବର୍ଣ୍ଣନା ମିଳେ, ତାହା ପ୍ରାଚୀନ ଉତ୍କଳ, ଓଡ଼ିଆ ଜାତିର ଇତିହାସ, ଓଡ଼ିଶାର ଇତିହାସ । ଅନ୍ୟାନ୍ୟ ଭାଷାରେ ଓଡ଼ିଶା ଇତିହାସର ପ୍ରଣେତାଗଣ ଏକମତ ହୋଇ କହନ୍ତି—ରଘୁ-ମହାରାଜା କପିଶା ନଦୀ ପାରି ହୋଇ ଉତ୍କଳ ପଥଦେଇ କଳିଙ୍ଗକୁ ଯାଇଥିଲେ । (୧୨)

ଏପରିକି କଳିଙ୍ଗାଧିପତି ନିଜକୁ ମହେନ୍ଦ୍ରାଧିପତି ବୋଲାଇ ଥିଲେ ଓ 'ରାଜ-ମହେନ୍ଦ୍ରୀ' ନାମରୁ ସୂଚିତ ଯେ ତାହା ମହେନ୍ଦ୍ର ରାଜାଙ୍କ ରାଜଧାନୀ ଥିଲା । (୧୩)

---

(୧୦) ପ୍ରାଚୀନ ଉତ୍କଳ : ୧ମ ଭାଗ ପୃ-୧୯ ।

(୧୧) Rajguru Dr. S. N. : ଓଡ଼ିଶାର ଇତିହାସ, ପୃ ୧୧୬

(୧୨) "ସତାର୍ଦ୍ଧା କପିଶାଂ ସୈନ୍ୟୈର୍ବଦ୍ଧ ଦ୍ୱିରଦ ସେତୁଭିଃ ।
ଉତ୍କଳା ଦର୍ଶିତ ପଥଃ କଳିଙ୍ଗାଭି ମୁଖୋ ଯଯୌ ॥ ୩୮ ॥
ସ ପ୍ରତାପଂ ମହେନ୍ଦ୍ରସ୍ୟ ମୂର୍ଦ୍ଧ୍ନି ତୀକ୍ଷ୍ଣ ନ୍ୟବେଶୟତ୍
ଅଙ୍କୁଶଂ ଦ୍ୱିରଦସ୍ୟେବ ଯନ୍ତା ଗମ୍ଭୀର ବେଦିନଃ ॥ ୩୯ ॥
× × × ×
ଗୃହୀତ ପ୍ରତି ମୁକ୍ତସ୍ୟ ସଧର୍ମ ବିଜୟୀ ନୃପଃ ।
ଶ୍ରିୟଂ ମହେନ୍ଦ୍ର ନାଥସ୍ୟ ଜହାର ନତୁ ମେଦିନୀମ୍ ॥ ୪୩ ॥
(ରଘୁବଂଶ—୪ର୍ଥ ଅଧ୍ୟାୟ)

(୧୩) ପ୍ରାଚୀନ ଉତ୍କଳ : ପ୍ରଥମ ଭାଗ, ପୃ ୨୦

ମତ୍ସ୍ୟ ପୁରାଣ ବିଷ୍ଣୁ ପୁରାଣକୁ ସମର୍ଥନ କରି କହେ । (୧୪)

ସପ୍ତ ଗ୍ରସ୍ମିନ୍ ମହା ବର୍ଷେ ବିଶ୍ରୁତାଃ କୁଳପର୍ବତାଃ ।
ମହେନ୍ଦ୍ରୋ ମଲୟଃ ସହ୍ୟଃ ଶୁକ୍ତିମାନୃକ୍ଷ ବାନପି ॥ ୧୭ ॥
ବିନ୍ଧ୍ୟଶ୍ଚ ପାରିଯାତ୍ରଶ୍ଚ ଇତ୍ୟେତେ କୁଳ ପର୍ବତାଃ ।
ତେଷାଂ ସହସ୍ର ଶାଶ୍ଚନ୍ୟେ ପର୍ବତାସ୍ତୁ ସମୀପତଃ ॥ ୧୮ ॥

ଅର୍ଥାତ୍ ଭାରତ ବର୍ଷର ସାତଟି ବିଶ୍ୱବିଖ୍ୟାତ କୁଳପର୍ବତ ମହେନ୍ଦ୍ର, ମଲୟ, ସହ୍ୟ, ଶୁକ୍ତିମାନ, ଋକ୍ଷ, ବିନ୍ଧ୍ୟ ଓ ପାରିଯାତ୍ର ପର୍ବତ ଅଟେ । ଏମାନଙ୍କ ମଧ୍ୟରେ ଓଡ଼ିଶାର ଦକ୍ଷିଣ ପୂର୍ବଭାଗର ପର୍ବତକୁ ମହେନ୍ଦ୍ର ରୂପେ ସୂଚିତ କରାଯାଇଛି । (୧୫) ଏ ସମ୍ପର୍କରେ ଡା. ବାସୁଦେବ ଶରଣ ଅଗ୍ରୱାଲଙ୍କ ସମ୍ପାଦିତ ମାର୍କଣ୍ଡେୟ ପୁରାଣ ଏକ ଅଧ୍ୟୟନ; ଡ଼: ଡ଼ି. ସି. ସରକାରଙ୍କ ଷ୍ଟଡ଼ିସ୍ ଇନ୍ ଦି ଜାଗ୍ରୋଫି ଅଫ୍ ଏନ୍ସିଅଣ୍ଟ ଆଣ୍ଡ ମେଡ଼ିଭେଲ ଇଣ୍ଡିଆ ଓ ଡ଼ ଅଗ୍ରୱାଲଙ୍କ ମତ୍ସ୍ୟପୁରାଣ ଏ ଷ୍ଟଡି (୧୬) କୁ ଭିତ୍ତିକରି ବଳଦେବ ଉପାଧ୍ୟାୟ ନିମ୍ନୋକ୍ତ ମତ ପ୍ରକାଶ କରନ୍ତି । (୧୭)

ପୌରାଣିକ ଭୂଗୋଳରେ ପର୍ବତ ଦୁଇପ୍ରକାର ଅଟେ । (୧) ବର୍ଷ ପର୍ବତ (୨) କୁଳପର୍ବତ । ବର୍ଷ ପର୍ବତ ଗୋଟିଏ ବର୍ଷକୁ ଅନ୍ୟ ବର୍ଷ ମଧ୍ୟରେ ବିଭାଜନ କରେ । କୁଳ ପର୍ବତ ଦେଶ ମଧ୍ୟରେ ପ୍ରାନ୍ତ ସୀମାରେଖା ନିର୍ଦ୍ଦେଶ କରେ ଅର୍ଥାତ୍ ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ପୃଥକ୍ କରେ । ଆଲୋଚ୍ୟ କୁଳପର୍ବତ ନିମ୍ନପ୍ରକାର ଅଟେ ।

(୧) **ମହେନ୍ଦ୍ର** : କଳିଙ୍ଗଠାରୁ ଆରମ୍ଭ କରି ପୂର୍ବଘାଟ ପର୍ବତମାଳା ପର୍ଯ୍ୟନ୍ତ ବ୍ୟାପ୍ତ ପର୍ବତମାଳାକୁ ବୁଝାଏ । ଏହା ପର୍ଶୁରାମ ତପସ୍ୟା ସ୍ଥଳ ହିସାବରେ ପ୍ରସିଦ୍ଧ । ଏହା ବର୍ତ୍ତମାନ ଗଞ୍ଜାମ ଗଜପତି ଜିଲ୍ଲାର ମହେନ୍ଦ୍ରମାଳ ନାମରେ ଖ୍ୟାତ ।

(୨) **ମଳୟ** : ଦକ୍ଷିଣ ଭାରତର ନୀଳଗିରି ପର୍ବତ ଯେଉଁ ସ୍ଥାନରେ କି ପୂର୍ବଘାଟ ଓ ପଶ୍ଚିମଘାଟ ପର୍ବତମାଳାକୁ ସଂଯୋଗ କରୁଛି ଓ ବିଷୁବରେଖାରେ ଅବସ୍ଥିତ । ଏହା ଚନ୍ଦନ ପାଇଁ ପ୍ରସିଦ୍ଧ ।

---

(୧୪) ମତ୍ସ୍ୟପୁରାଣ : କଲ୍ୟାଣ ୧୯୮୪
(୧୫) ରଘୁବଂଶ : VI ୫୪
(୧୬) କଲ୍ୟାଣ : ମତ୍ସ୍ୟପୁରାଣାଙ୍କ, ପୃ ୩୮୫-୧୧୩-୩
(୧୭) ପୁରାଣବିମର୍ଷ : ୭ମ ଅଧ୍ୟାୟ, ପୃ ୩୪୨

(୩) **ସହ୍ୟ** : ବା ସୈହାଦ୍ରି ଦକ୍ଷିଣରୁ ଉତ୍ତରକୁ ବିସ୍ତାରିତ ପଶ୍ଚିମଘାଟ ପର୍ବତମାଳାକୁ ବୁଝାଏ । ବର୍ତ୍ତମାନ ସେ ମହାରାଷ୍ଟ୍ର ତଥା କର୍ଣ୍ଣାଟ ଅନ୍ତର୍ଗତ ।

(୪) **ଶୁକ୍ତିମାନ** : ଏହା ସୈହାଦ୍ରି ପର୍ବତର ଉତ୍ତର ଦିଗେ ଟିକିଏ ଆଗକୁ ପୂର୍ବ ଦିଗେ ବିସ୍ତାରିତ ବୋଲି ସଂକେତ ମିଳେ । ଏହା ଚୀନ ଦେଶର ପାହାଡ଼ିଆ ଅଞ୍ଚଳ ଅଟେ ।

(୫) **ଋକ୍ଷ ପର୍ବତ** : ସାତପୁରା ପାହାଡ଼ଠାରୁ ଆରମ୍ଭ କରି ଏହି ପର୍ବତମାଳା ବିସ୍ତୃତ । ଯେଉଁ ଅଞ୍ଚଳରୁ ତାପ୍ତି ତଥା ବେନୁଗଙ୍ଗା, ଓଡ଼ିଶାର ବ୍ରାହ୍ମଣୀ ଓ ବୈତରଣୀ ନଦୀ ପ୍ରବାହିତ । ଏହା ଛୋଟନାଗପୁର ପର୍ବତମାଳା ଯାଏ ବିସ୍ତୃତ ।

(୬) **ବିନ୍ଧ୍ୟ ପର୍ବତ** : ବିନ୍ଧ୍ୟାଞ୍ଚଳ ହିସାବରେ ସୁ-ପ୍ରସିଦ୍ଧ । ଯେଉଁ ସ୍ଥାନରୁ ଶୋଣ,ନର୍ମଦା, ମହାନଦୀ, ତମସା ତଥା ଦଶାର୍ଣ୍ଣ ନଦୀମାନ ପ୍ରବାହିତ ।

(୭) **ପାରିଯାତ୍ର** : ଆରାବଲୀ ପର୍ବତ । ଏଥିରୁ ଚର୍ମଣ୍ୱତୀ (ଚମ୍ବଲ) ନଦୀ ପ୍ରବାହିତ ବୋଲି କୁହାଯାଏ ।

ମହେନ୍ଦ୍ର ପର୍ବତରୁ ପ୍ରବାହିତ ନଦୀମାନଙ୍କ ସମ୍ବନ୍ଧରେ କୁହାଯାଇଛି—(୧୮)

(୧୮) ମତ୍ସ୍ୟପୁରାଣ—ଅଧ୍ୟାୟ ୧୧୪/୨୦-୩୩, ବ୍ରହ୍ମପୁରାଣ ୧୯/୧୦-୧୪, ବ୍ରହ୍ମାଣ୍ଡ ୧/୧୬/୨୪-୪୯ ତଥା ୭୨, ବାୟୁ ୪୫/୭୩/୧୦୮, ବିଷ୍ଣୁ ୨/୩୧, ଭାଗବତ ୪୧/୧୯/୧୬-୧୮, ବାମନ ୧୩/୨୩-୩୩, ଗରୁଡ଼-ପୂର୍ବଖଣ୍ଡ ।

## ମହେନ୍ଦ୍ରରୁ ପ୍ରବାହିତ ନଦୀମାନଙ୍କର ପୌରାଣିକ ଓ ବର୍ତ୍ତମାନ ନାମ

| ମାର୍କଣ୍ଡେୟ | ବାୟୁ | ମତ୍ସ୍ୟ | ବ୍ରହ୍ମାଣ୍ଡ | ଅନ୍ୟାନ୍ୟ | ବର୍ତ୍ତମାନ ନାମ | |
|---|---|---|---|---|---|---|
| ପିତୃସୋମା | ତ୍ରିସାମା | ତ୍ରିଭଙ୍ଗା | ତ୍ରିସୋମା | ତ୍ରିସାମା | ଘୋଡ଼ାହାଡ଼ ଭାର୍ଗବ, ପଦ୍ମା | (୧) |
| ଋଷିକୁଲ୍ୟ | ଋଷିକୁଲ୍ୟା | ଋଷିକୁଲ୍ୟା | ଋଷିକୁଲ୍ୟା | ଋଷିକୁଲ୍ୟା | ଋଷିକୁଲ୍ୟା | (୨) |
| ଇକ୍ଷୁଲା | ଇକ୍ଷୁଲା | ଇକ୍ଷୁଲା | ଇକ୍ଷୁଲା | ଇକ୍ଷୁଲା | ବାହୁଦା | (୩) |
| ତ୍ରିଦିବା | ତ୍ରିଦିବା | ତ୍ରିଦିବା | ତ୍ରିଦିବା | — | ବେଗବତୀ ନାଗାବଳୀ | (୪) |
| ଲାଙ୍ଗୁଲିନୀ | — | — | ଲାଙ୍ଗୁଲିନୀ | ମୂଳିନୀ | ସ୍ୱର୍ଣ୍ଣମୁଖୀ | |
| | | | | ଲାମୂଳିନୀ | ଲାଙ୍ଗୁଲ୍ୟା | |
| ବଂଶକର | ବଂଶଧାରା | ବଂଶଧାରା | ବଂଶଧାରା | — | ବଂଶଧାରା | |

ତ୍ରିସାମା, ଋଷିକୁଲ୍ୟା ଚ ଇକ୍ଷୁଳା ତ୍ରିଦିବାଚଲା ।
ଲାଙ୍ଗଲିନୀ, ବଂଶଧାରା ମହେନ୍ଦ୍ର ତନୟାଃ ସ୍ମୃତାଃ ॥

ଅର୍ଥାତ୍—ତ୍ରିସାମା, ଋଷିକୁଲ୍ୟା, ଇକ୍ଷୁଳା, ତ୍ରିଦିବା, ଅଚଳା, ଲାଙ୍ଗୁଳିନୀ, ବଂଶଧାରା ଓ ମହେନ୍ଦ୍ର ତନୟା—ଏହି ସମସ୍ତ ନଦୀ ମହେନ୍ଦ୍ର ପର୍ବତମାଳାରୁ ପ୍ରବାହିତ । ଏହି ନଦୀମାନଙ୍କ ମଧ୍ୟରୁ ଋଷିକୁଲ୍ୟା ଓ ମହେନ୍ଦ୍ର ତନୟା ପବିତ୍ର ନଦୀ ହିସାବରେ ପରିଚିତ । (୧୯) ହିନ୍ଦୁମାନଙ୍କର ସମସ୍ତ ମାଙ୍ଗଳିକ କର୍ମରେ ଏହି ନଦୀମାନଙ୍କ ନାମ ଉଚ୍ଚାରିତ ହେଉଥାଏ । (୨୦) ପୁରାଣକୁ ଭିତ୍ତିକରି ଭୌଗୋଳିକମାନେ ମତ ଦିଅନ୍ତି— ପୁରାଣାନୁଯାୟୀ ଭାରତବର୍ଷ ନବଖଣ୍ଡ ବା ନବ ଭାଗରେ ବିଭକ୍ତ । ଇନ୍ଦ୍ରଦ୍ୱୀପ ଲଙ୍କା ଓ ମହେନ୍ଦ୍ର ମଧ୍ୟବର୍ତ୍ତୀ ଦେଶ । ସ୍କନ୍ଦ ପୁରାଣାନୁଯାୟୀ ଏହା ସିଂହଳ ଠାରୁ ମହେନ୍ଦ୍ର ମଧ୍ୟବର୍ତ୍ତୀ ଅଞ୍ଚଳ । ଗରୁଡ ପୁରାଣ ମତରେ ଇନ୍ଦ୍ରଦ୍ୱୀପ ମହେନ୍ଦ୍ରର ଉତ୍ତର ଦିଗେ ବ୍ରହ୍ମପୁତ୍ର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଉକ୍ତ ଭୌଗୋଳିକଙ୍କ ମତରେ ଏହା ସ୍ୱତଃସିଦ୍ଧ ଯେ ମଧ୍ୟଦେଶ ଚିହ୍ନଟ କରିବା ପାଇଁ ଏହି ମହେନ୍ଦ୍ରହିଁ ଏକମାତ୍ର ସୂଚନାସ୍ଥଳ । (୨୧) ଏ ସମ୍ପର୍କରେ ପୁନଶ୍ଚ କାଳିଦାସଙ୍କ ମେଘଦୂତ (୨୨)ରେ ବର୍ଣ୍ଣିତ ଅଛି—

---

(୧) ଏ ଉପନୋଟି ନଦୀ ତ୍ରିଭଙ୍ଗ ନାମରେ ନାମିତ ।

(୨) ଶୁକ୍ତିମତୀ ପର୍ବତରୁ ନିର୍ବାହିତ ଉପନଦୀ ସମ୍ମିଶ୍ରିତ ।

(୩) ଇଚ୍ଛାପୁର ଏହାର ତଟବର୍ତ୍ତୀ ।

(୪) ଲାଙ୍ଗୁଳିନୀର ଉପନୋଟି ଉପନଦୀ ।

(୧୯) Ali Prof. S. M.: Geography of Puranas, Page 125 (Sagar University)

(୨୦) ମଙ୍ଗଳାଷ୍ଟକ—ଗଙ୍ଗା, ସିନ୍ଧୁ ସରସ୍ୱତୀ ଚ ଯମୁନା ଗୋଦାବରୀ ନର୍ମଦା
କାବେରୀ ସରଯୂ ମହେନ୍ଦ୍ରତନୟା ଚର୍ମଣ୍ୱତୀ ରେଣୁକା,
ସିପ୍ରା ବେତ୍ରବତୀ ମହାସୁରନଦୀ ଖ୍ୟାତୋ ଜୟା ଗଣ୍ଡକୀ,
ପୁଣ୍ୟା ପୁଣ୍ୟଜଳା ସମୁଦ୍ର ସହିତା କୁର୍ବନ୍ତୁତେ ମଙ୍ଗଳମ୍ ।
—ବିହାରୀ କର୍ମକାଣ୍ଡ, ପୃ ୩୨୮ ନଂ ୪୨୧

(୨୧) Ali Prof. S. M. : Geography of Puranas, Page 125 126

(୨୨) Mahapatra Dr. Gopinath, Prof. Utkal University

"କଶ୍ଚିତ୍ କାନ୍ତା ବିରହ ଗୁରୁଣା ସ୍ୱାଧିକାରାତ୍ ପ୍ରମତ୍ତଃ ।
ଶାପେ ନାସ୍ତଙ୍ଗ-ମିତ ମହିମା ବର୍ଷ ଭୋଗ୍ୟେଣ ଭର୍ତ୍ତୁଃ ।।
ଯକ୍ଷଶ୍ଚକ୍ରେ ଜନକ ତନୟା ସ୍ନାନ ପୁଣ୍ୟୋଦକେଷୁ ।
ସ୍ନିଗ୍ଧ ଛାୟା ତରୁଷୁ ବସତିଂ ରାମଗିର୍ଯ୍ୟାଶ୍ରମେଷୁ ।।

ଟୀକାକାର କହନ୍ତି—ପ୍ରକୃତରେ ଗତି ଅନୁସାରେ ମେଘ କବି ବର୍ଣ୍ଣିତ ମାର୍ଗରେ ଗତି କରେ କି ନାହିଁ, ଏହା ଭୂଗୋଳବିତ୍ମାନେ ସ୍ଥିର କରିବେ । ତେବେ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ମହେନ୍ଦ୍ର ପର୍ବତରେ ବାଧାପ୍ରାପ୍ତ ହୋଇ ଉତ୍ତରକୁ ଆସି ସେଠାରୁ ଋଷ୍ୟମାଳ ପର୍ବତରେ ବାଧା ପାଇ ପଶ୍ଚିମକୁ ଯାଇ ସେଠାରୁ ଅମରକୋଟ ବାଟେ ଉଜ୍ଜୟିନୀ ଯିବା ସମ୍ଭବ × × × । ଏଥିରୁ ବଳିଷ୍ଠ ପ୍ରମାଣ ମିଳେ ଯେ ବର୍ତ୍ତମାନ ଗଞ୍ଜାମ-ଗଜପତିର କୁଳାଚଳ ମହେନ୍ଦ୍ରଗିରି ହିଁ ରାମଗିରି ପାର୍ଶ୍ୱରେ ଅବସ୍ଥିତ । (୧୩)

ଆଜକୁ ୨୩ ଶହ ବର୍ଷ ପୂର୍ବେ ମୌର୍ଯ୍ୟଯୁଗରେ ଗ୍ରୀକ୍ ଦୂତ ମେଘାସ୍ଥିନିସ ଭାରତର ଇତିହାସ 'ଇଣ୍ଡିକା' ଲେଖିଥିଲେ । ତାହା ଆଜକୁ ୨୦୦୦ ବର୍ଷ ପୂର୍ବେ ପାଶ୍ଚାତ୍ୟ ପଣ୍ଡିତ ପ୍ଲିନି ସାହେବ ଅନୁବାଦ କରିଛନ୍ତି । ମେଘାସ୍ଥିନିସଙ୍କ ତଦାନୀନ୍ତନ ଇତିବୃତ୍ତକୁ ଅନୁସରଣ କରି ପଣ୍ଡିତମାନେ ଏକମତ ହୋଇଛନ୍ତି । ଗ୍ରୀକ୍ ଦୂତ ମେଘାସ୍ଥିନିସ୍ଙ୍କ ଇଣ୍ଡିକା ଓ ପ୍ରାଚୀନ ପୁରାଣର ସିଦ୍ଧାନ୍ତକୁ ଅନୁସରଣ କରି କନିଂହାମ୍ ସାହେବ କହନ୍ତି—କଳିଙ୍ଗ ବା ରାଜମହେନ୍ଦ୍ରୀ, ଭାରତବର୍ଷ ପୂର୍ବଭାଗରେ ମାଲେମଲି ଏବଂ ପ୍ରସିଦ୍ଧ ମାଲ୍ଲିସ ପର୍ବତ ନିମ୍ନଭାଗରେ କଳିଙ୍ଗ ଦେଶ ଅବସ୍ଥିତ । ସେହି ମାଲ୍ଲିସ ପର୍ବତକୁ ପଣ୍ଡିତମାନେ ମହେନ୍ଦ୍ର ପର୍ବତ ବୋଲି କହନ୍ତି । (୧୪) ସମ୍ରାଟ ଅଶୋକଙ୍କ ଶିଳାଲେଖ ଜଉଗଡ଼ରେ ସୁରକ୍ଷିତ ।

ଚତୁର୍ଥ ଶତାବ୍ଦୀରେ ସମୁଦ୍ରଗୁପ୍ତଙ୍କ ଦକ୍ଷିଣାପଥ ଅଭିଯାନ ସମୟରେ କୋଶଳର ରାଜ୍ୟ ଓ ସ୍ୱାମୀଦତ୍ତଙ୍କୁ ପରାସ୍ତ କରିବା ବର୍ଣ୍ଣନାରୁ ପ୍ରମାଣ ମିଳେ ଯେ ସମୁଦ୍ରଗୁପ୍ତ ଜୟ କରିଥିବା ମହେନ୍ଦ୍ରଗିରି; ଏହି ମହେନ୍ଦ୍ରଗିରି ଅଟେ । (୧୫)

---

(୧୩) ମିଶ୍ର ଶର୍ମା ପଣ୍ଡିତ କୁଳମଣି : ଝଙ୍କାର-୭ମ ବର୍ଷ ୯ମ ସଂଖ୍ୟା ଓ ୯ମ ୭ମ ସଂଖ୍ୟା

(୧୪) ସିଂ ଜଗବନ୍ଧୁ : ପ୍ରାଚୀନ ଉତ୍କଳ, ପୃ-୧୭

(୧୫) Sahu Dr. N. K. : ପ୍ରାଚୀନ କଳିଙ୍ଗ, ପୃ. ୧୧୫

ସପ୍ତମ ଶତାବ୍ଦୀର ମଧ୍ୟଭାଗରେ ଚୀନ ପରିବ୍ରାଜକ ହୁଏନ୍‌ସାଂ ମତ ଦେବଚନ୍ଦ୍ର—ଶୈଳୋଦ୍ଭବମାନଙ୍କ ରାଜ୍ୟ କଙ୍ଗୋଦର ପୂର୍ବରେ ବଙ୍ଗୋପସାଗର, ପଶ୍ଚିମରେ ଫୁଲବାଣୀ ଜଙ୍ଗଲ, ଉତ୍ତରରେ ଭୁବନେଶ୍ୱର ଓ ଦକ୍ଷିଣରେ ମହେନ୍ଦ୍ରଗିରି ପର୍ବତ ଅବସ୍ଥିତ । (୨୬) ହର୍ଷଚରିତରେ ମହେନ୍ଦ୍ରଗିରି ମଳୟ ପର୍ବତ ନାମରେ ବର୍ଣ୍ଣିତ ।

ଏହି କୁଳଗିରିକୁହିଁ ମହେନ୍ଦ୍ରଗିରି ଭାବେ ସ୍ଥିର କରି ବ୍ରିଟିଶ୍ ଶାସନ କାଳରେ ବିଭିନ୍ନ ଶୈଳନିବାସ ସକାଶେ ପ୍ରସ୍ତାବ ଆଗତ ହୋଇଥିଲା । ପ୍ରସିଦ୍ଧ ଐତିହାସିକ ରାୟଚୌଧୁରୀ କହନ୍ତି ପୁରାଣ ବର୍ଣ୍ଣିତ ଓ ରାମାୟଣ ବର୍ଣ୍ଣିତ ମହେନ୍ଦ୍ରଗିରି ଏକ ଓ ଅଭିନ୍ନ । (୨୭) ଉତ୍ତର ନୈଷଧ ଚରିତରେ ଉଲ୍ଲେଖ ଅଛି—ପ୍ରାଚୀନ କଳିଙ୍ଗ ରାଜ୍ୟରେ ଥିବା ମହେନ୍ଦ୍ରମାଳାହିଁ ମହେନ୍ଦ୍ରପର୍ବତ ଅଟେ । (୨୮) ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ମତରେ କୁଳଗିରିମାନଙ୍କ ମଧ୍ୟରେ ପ୍ରସିଦ୍ଧ ମହେନ୍ଦ୍ରଗିରି ଗଞ୍ଜାମର ଏହି ମହେନ୍ଦ୍ରଗିରି ଅଟେ । (୨୯) ଭୌଗୋଳିକମାନଙ୍କ ମତକୁ ସମର୍ଥନ କରି ବିଖ୍ୟାତ ଭୌଗୋଳିକ ବିଗ୍ରରିନ ମଣ୍ଡଳୀ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି କି, ମହାନଦୀଠାରୁ ଗୋଦାବରୀ ମଧ୍ୟବର୍ତ୍ତୀ ପାର୍ବତ୍ୟ ଅଞ୍ଚଳ ମହେନ୍ଦ୍ର ନାମରେ ନାମିତ । (୩୦) ଭୌଗୋଳିକ ସ୍ଥିତିକୁ ଲକ୍ଷ୍ୟ କରି ଡ଼କ୍ଟର ବିଜୟକୁମାର ରଥ କହନ୍ତି—ପୂର୍ବଘାଟ ପର୍ବତମାଳାର ମଧ୍ୟବର୍ତ୍ତୀ ଶୃଙ୍ଗ (ଯାହାକି ବର୍ତ୍ତମାନର ମଞ୍ଜୁଷା ରାଜ୍ୟର ଶେଷ ସୀମାରେ ବଙ୍ଗୋପସାଗରକୁ ସଂଲଗ୍ନ, ସପ୍ତ କୁଳଗିରି ମଧ୍ୟରେ ଅନ୍ୟତମ) ହେଉଛି ମହେନ୍ଦ୍ରଗିରି (୩୧)

ଉତ୍କଳର ସ୍ୱନାମଧନ୍ୟ କବି ଗୋଦାବରୀଶ ମହେନ୍ଦ୍ରଗିରିର ବର୍ଣ୍ଣନା ପ୍ରସଙ୍ଗରେ ତାର ଭୌଗୋଳିକ ସୂଚନା ଦେଇ ମହେନ୍ଦ୍ରଗିରିରେ ଅବସ୍ଥିତ ପାରଳା-ମଞ୍ଜୁଷା ରାଜ୍ୟ

---

(୨୬) Behera Dr. S.C. : କଙ୍ଗୋଦର ଭୌଗୋଳିକ ବିବରଣୀ

(୨୭) Ray Choudhury H.C. : Studies in Indian Antiquities

(୨୮) ଉତ୍ତର ନୈଷଧ ଚରିତ : Canto XII-V-24.

(୨୯) Dr. S. N. Rajguru : ଓଡ଼ିଶାର ଇତିହାସ—ମହେନ୍ଦ୍ରଗିରି ପ୍ରସଙ୍ଗ

(୩୦) The Cultural Heritage of India by 33 Authors—Rama Krishna Mission.

(୩୧) Dr. Rath : History of Mount Mahendra. The Orissa Historical Journal Vol XII No. 384.

ମଧ୍ୟରେ ସ୍ପଷ୍ଟଭାବେ ନିର୍ଦ୍ଧାରଣ କରିଛନ୍ତି । (୩୨) ଏବମ୍ଭୂତ ଭୌଗୋଳିକ ପରିବେଶ ନିଶ୍ଚିତ ରୂପେ ପ୍ରାକୃତିକ ସୌନ୍ଦର୍ଯ୍ୟ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଥାଏ; ତାହା କଦାପି ଅସ୍ୱୀକାର କରିଯାଇ ନପାରେ ।

## (ଖ) ପ୍ରାକୃତିକ ସୌନ୍ଦର୍ଯ୍ୟ :

ବାସ୍ତବରେ ମହେନ୍ଦ୍ରର ଶିଖର ଦେଶରେ ଯେ ଥରେ ପ୍ରବେଶ କରିଛି, ସେଥିର ମନୋହର ପ୍ରାକୃତିକ ଦୃଶ୍ୟ ଜୀବନରେ ଭୁଲିପାରିବ ନାହିଁ । ପ୍ରତିଦିନ ଛ'ଟି ଋତୁର ଆବର୍ତ୍ତନ ସେଠାରେ ଅନୁଭୂତ ହୁଏ । ପୂର୍ବବର୍ଣ୍ଣିତ କାଳିଦାସଙ୍କ ମେଘଦୂତର ଚମତ୍କାର ବର୍ଣ୍ଣନା ଏଠାରେ ହିଁ ଉପଲବ୍ଧ କରିଯାଇପାରେ । ବୋଧହୁଏ, ମହେନ୍ଦ୍ରମାଳା ଅନତି ଦୂରରେ କାଳିଦାସଙ୍କ ସାମୟିକ ଅବସ୍ଥିତି ସମ୍ଭବ ହୋଇଥିବାରୁ ସେ ମେଘର ଗତିବିଧି ଲକ୍ଷ୍ୟ କରି ଏପରି ଗୋଟିଏ କାବ୍ୟ ରଚନା କରିବାକୁ ସମର୍ଥ ହୋଇଥିବେ । (୩୩)

ପ୍ରକୃତି ସହିତ ମାନବର ନିବିଡ଼ ସମ୍ପର୍କ ରହିଛି । ମାନବ ପ୍ରକୃତି ଓ ପ୍ରାକୃତିକ ଦୃଶ୍ୟ ସନ୍ଦର୍ଶନରେ ବିଭୋର ହୋଇପଡ଼େ ଓ ନିଜକୁ ଭୁଲିଯାଏ । ପ୍ରକୃତି ଆଧ୍ୟାତ୍ମିକ

---

(୩୨) Mishra, Godabarish—ମହେନ୍ଦ୍ରଗିରି କବିତା

ଉତ୍କଳ ମଣ୍ଡଳେ ମହେନ୍ଦ୍ର ପର୍ବତ
ସକଳ ପର୍ବତୁଁ ବଡ ।
ଏ ପାଖେ ରହିଛି ପାରଳା ରାଜ୍ୟ
ସେପାଖେ ମଞ୍ଜୁଷା ଗଡ଼ ।
ଭେଦିଛି ଆକାଶ ଶିଖ ତାର ତହିଁ
ଗଲେ ମନେ ଲାଗେ ଭୟ
ଲକ୍ଷେ ପରବତ ମଧ୍ୟ ସେ କି ଏକା
ଉତ୍କଳର ହିମାଳୟ ।
ଶାସ୍ତ୍ରେ ପରା ଅଛି ଶିବଶିରୁଁ ମର୍ତ୍ତ୍ୟ
ଜାହ୍ନବୀ ଯାଉଛି ବହି
ତେସନେ ବହିଇ ମହେନ୍ଦ୍ର ଶିଖରୁ
ମହେନ୍ଦ୍ର ତନୟା ନଈ ।

(ଗୋଦାବରୀଶ ଗ୍ରନ୍ଥାବଳୀ ପୃ ୪୯୨)

(୩୩) Dr. S.N. Rajguru : ମୁଖବନ୍ଧ ଉତ୍କଳର ପ୍ରାଚୀନ କୀର୍ତ୍ତି ମହେନ୍ଦ୍ରଗିରି—ଫଲ୍‌ଗୁ, ବ୍ରହ୍ମପୁର

ପରିବେଶ ସୃଷ୍ଟି କରିଥାଏ । ଏଣୁ ପ୍ରାକୃତିକ ସୌନ୍ଦର୍ଯ୍ୟ ଦାର୍ଶନିକ ଓ ସାହିତ୍ୟ ସାଧକ-ମାନଙ୍କୁ ଆକୃଷ୍ଟ କରିବା ସ୍ୱାଭାବିକ । ଏଣୁ ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର ମହେନ୍ଦ୍ରଗିରି ଯୁଗେ ଯୁଗେ ଦାର୍ଶନିକ, ସାହିତ୍ୟ ସାଧକ, ପରିବ୍ରାଜକ ଓ ଧର୍ମ ସଂସ୍ଥାପକମାନଙ୍କୁ ଖୋରାକ ଯୋଗାଇ ଆସିଛି ।

ମହେନ୍ଦ୍ରଗିରି ଉଚ୍ଚତମ ଶୃଙ୍ଗଗୁଡିକ ଏହିଭଳି କଠିନ ଗ୍ରାନାଇଟ୍ ପ୍ରସ୍ତରର ସମଷ୍ଟି ଯେ ପ୍ରିଜମର ମିଶ୍ରଣ ଭଳି ପ୍ରତୀୟମାନ ହୁଏ । ଶୃଙ୍ଗୋପରି ପର୍ବତର ଚତୁଃପାର୍ଶ୍ୱସ୍ଥ ସ୍ଥଳଭାଗର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ପର୍ବତର ଉତ୍ତର-ପଶ୍ଚିମ ଓ ଦକ୍ଷିଣାଞ୍ଚଳ ପର୍ବତ ଶ୍ରେଣୀ ଏପରି ଭାବରେ ପରିବେଷ୍ଟିତ ଯେ ପର୍ବତ ଶୃଙ୍ଗୋପରି ମେଘର ତରଙ୍ଗାୟିତ ଗଭୀର ସମୁଦ୍ରର ଢେଉ ତୁଲ୍ୟ ପ୍ରତୀୟମାନ ହୋଇଥାଏ । ପୂର୍ବଦିଗର ପାର୍ବତ୍ୟ ଦେଶ ଅବନ୍ତିଳାକ୍ରମେ ଫେନିଳ ଜଳରାଶିରେ ଲୀନ ହେବା ଭଳି ମନେହୁଏ । ସତ୍ତ୍ୱେ ଏହା ପନ୍ଦର ମାଇଲ ଦୂରରେ ସମୁଦ୍ରକୁ ଆଲିଙ୍ଗନ କରିଛି । ପାର୍ବତ୍ୟ ଶିଳାରାଶି ଓ ସମୁଦ୍ରର ଜଳରାଶି ଶୃଙ୍ଗୋପରି ଭାସମାନ ମେଘ ଭଳି ପ୍ରତୀତ ହୁଏ । (୩୪) ମେଘ-ମାଳାର ଗତିବିଧିର ଦୃଶ୍ୟ ଥରେ ଦର୍ଶନ କଲେ ଦର୍ଶକର ଦର୍ଶନ ପିପାସା ମେଣ୍ଟିବ ନାହିଁ । ହଠାତ୍ ଶୃଙ୍ଗୋପରି ମେଘାଚ୍ଛନ୍ନ ଓ ପର ମୂହୂର୍ତ୍ତରେ ନିର୍ମଳ ଆକାଶ । ଏତାଦୃଶ ଲୁଚକାଳି ଖେଳ ଦର୍ଶନରେ ଆନନ୍ଦର ସୀମା ରହେ ନାହିଁ । ସ୍ଥଳଭାଗରେ ରହି ଜଳରାଶିକୁ ପୂର୍ବ ଦିଗେ ଲକ୍ଷ୍ୟ କଲେ ଦର୍ଶକ ଯେଉଁ ଦୃଶ୍ୟ ଦର୍ଶନ କରେ, ସେଥିରେ ସେ ବିଭୋର ହୋଇଯାଏ । ସେହିଭଳି ଜଳରାଶିରେ ଥାଇ ସ୍ଥଳଭାଗ ଦର୍ଶନ ତାହାଠାରୁ ଅତ୍ୟନ୍ତ ଆମୋଦଦାୟକ । ଦଳେ ଜଳଯାତ୍ରୀଙ୍କ ଅନୁଭୂତି ନିମ୍ନରେ ପ୍ରଦତ୍ତ ହେଲା । (୩୫)

"ଆମର ଜାହାଜ ପୁରୀ ସମୁଦ୍ର ପାରହୋଇ ଯେତେବେଳେ ମାଡ୍ରାସ ପ୍ରେସିଡେନ୍‌ସିର ଚିଲିକା ଅଞ୍ଚଳ ପାରି ହେଲା ଜାହାଜର ଡେକ୍‌ରେ ଥାଇ ପଶ୍ଚିମ ପାର୍ଶ୍ୱସ୍ଥ ପର୍ବତମାଳା ଦିଗେ ଲକ୍ଷ୍ୟ କଲୁ । ଆମେ ଆମ କେପ୍‌ଟେନ୍‌ଙ୍କୁ ଜାହାଜ ଚାଳନା ଧୀର କରିବା ପାଇଁ କହିଲୁ । ଗୋପାଳପୁର ବନ୍ଦର ଠାରୁ ବଙ୍ଗୋପସାଗରର

---

(୩୪) V. Ball : Jungle life of India

(୩୫) Morrison C. : Voyage along the coasts of Madras Presidency Ch. XVI.

(୩୬) Voyage along the Coasts of Madras Presidency. : C. Morrison.

ଉପକୂଳରେ ପୂର୍ବଘାଟ ପର୍ବତମାଳାର ଦୃଶ୍ୟ ଅବଲୋକନ କଲୁ । ମହେନ୍ଦ୍ରଗିରିର ଦୃଶ୍ୟ ଆମ ଯାତ୍ରୀ ଦଳଙ୍କୁ ଏତେ ଆକୃଷ୍ଟ କଲା ଯେ ଆମେ ଗୋପାଳପୁରଠାରୁ ପର୍ବତ ଆଡ଼େ ସ୍ଥଳଭାଗରେ ପଦଯାତ୍ରା ଆରମ୍ଭ କରିବାକୁ ଇଚ୍ଛା ହେଲା ।" ଉଚ୍ଚତମ ଶୃଙ୍ଗ ମହେନ୍ଦ୍ରଗିରିର ଆଶ୍ଚର୍ଯ୍ୟଜନକ ଦୃଶ୍ୟ ପ୍ରକୃତରେ ଆନନ୍ଦଦାୟକ । ପୂର୍ବ ଆଡ଼େ ଲକ୍ଷ୍ୟକଲୁ ସ୍ଥଳଭାଗ ହଠାତ୍ କମ କମ୍ ହୋଇଯାଇଛି, ସମୁଦ୍ର ଉପକୂଳ ସ୍ପଷ୍ଟଭାବେ ଦେଖାଯାଉଛି । ତତ୍ପରେ ସମୁଦ୍ରର ଦୃଶ୍ୟ ବର୍ଣ୍ଣନା କରିବା ପାଇଁ ଭାଷା ନାହିଁ । ପଶ୍ଚିମ ଆଡ଼େ ଜଙ୍ଗଲ ଘୋଡ଼େଇ ହୋଇ ପର୍ବତର ଯାହି ଅଂଶ ପର୍ବତମାଳା (called Maliahs) ମହେନ୍ଦ୍ରଗିରି ଠାରୁ ସାମାନ୍ୟ ଅଲଗା ହୋଇଛି ଓ ସଂକୀର୍ଣ୍ଣ ଉପତ୍ୟକାମାନଙ୍କ ଦୃଶ୍ୟ ଦର୍ଶନରେ ବିଶେଷ ମୁଗ୍ଧ ହେଲୁ । (୩୬)

ଗମ୍ଭୀର ରାତ୍ରିର ଘନକୃଷ୍ଣ ତମିସ୍ରା ଭିତରେ କଭିଷ୍ଟୁମ୍ଭୀ ମହେନ୍ଦ୍ରଗିରିର ଶିରୋ-ଦେଶରେ ଦଣ୍ଡାୟମାନ ହୋଇ ଊର୍ଦ୍ଧ୍ୱରେ ଦୀପମାଳା ସଦୃଶ ତାରକାରାଜି ଓ ପାଦ-ଦେଶରେ ଅନନ୍ତବିସ୍ତାରୀ ସାଗରର ଦୃଶ୍ୟ ଦର୍ଶନ କଲେ ଦର୍ଶକର ହୃଦୟରେ ଏକ ଅବର୍ଣ୍ଣନୀୟ ପୁଲକ ଓ ଅହେତୁକ ଭାବଧାରାର ସଞ୍ଚାର ହୁଏ । ଏହିପରି ସହସ୍ରାଧିକ ପରିବ୍ରାଜକ, ଐତିହାସିକ, ସାଧକ ଓ ତୀର୍ଥଯାତ୍ରୀଙ୍କ ମନୋହରଣ କରିଆସୁଛି; ଏହି କୁଳାଚଳ ମହେନ୍ଦ୍ରଗିରି । ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ କବିବର ରାଧାନାଥ କହୁଛନ୍ତି—

ଏ ଗଞ୍ଜାମ ମହୀ ମଞ୍ଜୁ ଶତଦଳ,<br>
କେଶର ତହିଁ ଏ ମହେନ୍ଦ୍ର ଅଞ୍ଚଳ ।<br>
ଉତ୍କଳ ଲକ୍ଷ୍ମୀର ପ୍ରିୟ ଅଟ୍ଟାଳିକା,<br>
ବିଶ୍ୱଲୋକେ ଇନ୍ଦ୍ର ନୀଳ ବଳଭିକା । (୩୭)

ପ୍ରାକୃତିକ ସୌନ୍ଦର୍ଯ୍ୟର ରସୋପଲବ୍ଧି କରି ସ୍ୱଅନୁଭୂତିରୁ କବିଶେଖର ଚିନ୍ତାମଣି ମହାନ୍ତି ଉତ୍କଣ୍ଠିତ ହୋଇ ଗାଇଛନ୍ତି—

ଭାରତ ମାତର ଟୀକା ଏ ଉତ୍କଳ<br>
ତୁହି ସେ ଟୀକାର ହୀର ସରଳ ସୁନ୍ଦର ।। ୩୮ ।।

---

(୩୬) Ibid.

(୩୭) Ray, Radhanath : ରାଧାନାଥ ଗ୍ରନ୍ଥାବଳୀ—ମହେନ୍ଦ୍ର କାବ୍ୟ

(୩୮) Mahanty, Chintamani : ଚିନ୍ତାମଣି ଗ୍ରନ୍ଥାବଳୀ—ମହେନ୍ଦ୍ର କାବ୍ୟ

ଚନ୍ଦ୍ରାଲୋକରେ ମହେନ୍ଦ୍ରଗିରି କଭଳି ପ୍ରାକୃତିକ ବିଭବ ପ୍ରଦର୍ଶନ କରେ ତାହା ତାଙ୍କ ଭାଷାରେ—

ଚନ୍ଦ୍ରାଲୋକ ଭେଦକରି ଉଠିଛୁ ଉପରେ,
ଲୋକାଲୋକ ଗିରି ଶୋଭା ଧରିଲ ମହେନ୍ଦ୍ର,
ପୂର୍ବପାର୍ଶ୍ୱେ ଚନ୍ଦ୍ରକାନ୍ତ, ପଶ୍ଚିମ ଅନ୍ଧାର
ଚନ୍ଦ୍ର ଆସି ଗିରିଶିର ମଣ୍ଡନ୍ତା ଯଦ୍ୟପି,
ହୁଅନ୍ତା ସାର୍ଥକ ହର ପାର୍ବତୀ ଉପମା ॥ ୩୯ ॥

ପ୍ରକୃତରେ ପୂର୍ବଦିଗର ଦୃଶ୍ୟ ଓ ପର୍ବତର ପଶ୍ଚିମ ଦିଗର ଦୃଶ୍ୟ ମଧ୍ୟରେ ଯେଉଁ ଭିନ୍ନତା ପରିଦୃଷ୍ଟ ହୁଏ ତାହା ଦର୍ଶନରେ ହିଁ ଉପଲବ୍ଧି କରାଯାଇପାରେ ।

ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟରେ ମହେନ୍ଦ୍ରଗିରିର ସୂର୍ଯ୍ୟୋଦୟର ଦୃଶ୍ୟ ଅଗ୍ରଗଣ୍ୟ । ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟ, ପୁରୀ ସମୁଦ୍ରକୂଳରେ ସୂର୍ଯ୍ୟୋଦୟ ବିଶେଷ କରି ଭାରତ ବର୍ଷର ସମସ୍ତ ସମୁଦ୍ର କୂଳର ଅଞ୍ଚଳର ସୂର୍ଯ୍ୟୋଦୟଠାରୁ ମହେନ୍ଦ୍ରଗିରି ଶିଖର ଉପରେ ବଙ୍ଗୋପସାଗରର ସୂର୍ଯ୍ୟୋଦୟ ଅତ୍ୟନ୍ତ ଚିତ୍ତାକର୍ଷକ ଅଟେ । ମନେହୁଏ ସତେ ଯେପରି ସୂର୍ଯ୍ୟଦେବ ହଠାତ୍ ଲୋହିତ ବର୍ଣ୍ଣ ଧାରଣ କରି ପୃଥିବୀପୃଷ୍ଠକୁ ଲମ୍ଫ ପ୍ରଦାନ ପୂର୍ବକ ଅବତୀର୍ଣ୍ଣ ହୁଅନ୍ତି । ତତ୍କାଳୀନ ଅରୁଣିମାରେ ସତେ ଯେମିତି ସାଗର ଜଳ ସ୍ୱର୍ଣ୍ଣ ଆକାର ଧାରଣ କରି ମନେହୁଏ ନାରାୟଣ ଅନନ୍ତ ଶୟନରେ, ହଠାତ୍ ତାଙ୍କ ନାଭି କମଳରୁ ଉତ୍ପତ୍ତି ଘଟୁଛି ।

ରାମାୟଣ ସୁନ୍ଦରା କାଣ୍ଡରେ ବାଲ୍ମୀକ ଅତି ଚମତ୍କାର ଭାବରେ ବାନର ସେନାଙ୍କ ପର୍ବତ ଲଂଘନ ସମୟର ଦୃଶ୍ୟ ବର୍ଣ୍ଣନା କରିଛନ୍ତି—"କପିଶ୍ରେଷ୍ଠ ପ୍ରାକୃତିକ ଶ୍ୱେତ, କୃଷ୍ଣ, ନୀଳ, ଲୋହିତ ଓ ମଞ୍ଜିଷ୍ଠ ବର୍ଣ୍ଣର ବିଚିତ୍ର ଧାତୁମାନଙ୍କ ଦ୍ୱାରା ଅଳଂକୃତ ସପରିବାର ଦେବତୁଲ୍ୟ କାମରୂପୀ ଯକ୍ଷ, ଗନ୍ଧର୍ବ, କିନ୍ନର ଓ ପନ୍ନଗମାନଙ୍କଦ୍ୱାରା ସତତ ସେବିତ ଏବଂ ଶ୍ରେଷ୍ଠ ନାଗ ସମାକୀର୍ଣ୍ଣ ସେହି ମହେନ୍ଦ୍ର ପର୍ବତରେ ଚଳେ ଠିଆହୋଇ ହ୍ରଦ ମଧ୍ୟସ୍ଥିତ ଗଜ ସଦୃଶ ଶୋଭା ପାଇଲେ । (୪୦) ପୁନଶ୍ଚ ହନୁମାନ ପ୍ରତ୍ୟାଗମନ କାଳରେ ମହର୍ଷି ବାଲ୍ମୀକ କହନ୍ତି—ହନୁମାନ ନକ୍ଷତ୍ରଗଣ ଓ ସୂର୍ଯ୍ୟଙ୍କ ସହିତ ଆକାଶକୁ ଆରୋହଣ କରି ଏବଂ ମେଘ ଶ୍ରେଣିକୁ ଆକର୍ଷଣ କରି ଅପରିଶ୍ରାନ୍ତ ଭାବରେ ଅପାର ଆକାଶ ସାଗର ପାରିହୋଇ ପଡ଼ୁଥିବା ସମୟରେ ପାଣ୍ଡୁର, ଅରୁଣ, ନୀଳ, ମଞ୍ଜିଷ୍ଠ ଏବଂ ହରିତ୍

(୩୯) Ibid.

(୪୦) ବାଲ୍ମୀକ ରାମାୟଣ

ବର୍ଣ୍ଣିର ପ୍ରକାଣ୍ଡ ମେଘଖଣ୍ଡମାନ ଶୋଭପାଇବାକୁ ଲଗିଲ ଏବଂ କ୍ଷଣେ ଦୂରରେ ମହେନ୍ଦ୍ର ଗିରିକୁ ଲକ୍ଷ୍ୟ କରି ସେହି ମହାବଳ ମେଘସଦୃଶ ସ୍ବଗମ୍ଭୀର ଶବ୍ଦରେ ଗର୍ଜନ କରି ଦଶ-ଦିଗ ପ୍ରକମ୍ପିତ କରିଦେଲ । (୪୧)''

ମହେନ୍ଦ୍ରଗିରିରେ ଆଇ ସୂର୍ଯ୍ୟୋଦୟ ସମୟରେ ସମୁଦ୍ର ଦର୍ଶନରେ ମନେହୁଏ, ସତେ ଯେପରି ମର୍ତ୍ତ୍ୟର ବୈକୁଣ୍ଠ ଆସନ ଦାବୀ କରିବା ପାଇଁ ମହେନ୍ଦ୍ର ଏ ସବୁ ଶୋଭା ଧାରଣ କରିଛି । ବାସ୍ତବରେ—(ଚିତ୍ର ଦ୍ରଷ୍ଟବ୍ୟ)

''ହୃଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ ।''

ତେଣୁ ପ୍ରାକୃତିକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସ୍ବଦୂରରୁ କଲ୍ପନାବାହନ ଆରୋହଣ କରି କବିବର ରାଧାନାଥ ତାଙ୍କ ଅସମ୍ପୂର୍ଣ୍ଣ ମହେନ୍ଦ୍ର କାବ୍ୟରେ ଲେଖିଛନ୍ତି—

''ଯା ଶୃଙ୍ଗ ପରଶ ଛଳେ ଦିବାକର,
ଚୁମ୍ବନ୍ତି ଉତ୍କଳ ଧରା ବିମ୍ବାଧର ।
ଉତ୍କଳେ ଅଖିଳ ସ୍ବଷମାର ଧାମ,
ବକ୍ଷେ ଧରି ଯାକୁ ଧନ୍ୟ ଏ ଗ୍ରାମ ।
× × ×
ସମଗ୍ର ଉତ୍କଳ ଶୋଭା ତିଲୋତ୍ତମା,
ଛବିଳ ଉତ୍କଳେ ଏ ଛବିଳ ଭମା ॥ (୪୨)

ପଣ୍ଡିତ ଗୋଧବନ୍ଧୁ ବନ୍ଦୀର ସ୍ବଦେଶ ଚିନ୍ତାରେ ଲେଖିଛନ୍ତି—

ହେ ବସନ୍ତବାତ          ମୋ ଦ୍ୱାରେ ଆଘାତ
କର ଭଲ ଆଜି ଥରେ ସଦୟେ,
ଦକ୍ଷିଣ ଦିଗର          କହ ସମାଗ୍ରର
ସିକ୍ତ, ଶାନ୍ତ ସ୍ବଧା କ୍ଷଣେ ହୃଦୟେ ।
କରିଥିବ ଭେଟ          ମଞ୍ଜୁଳା ମୁକୁଟ
ମହେନ୍ଦ୍ର ଶଇଳ ସ୍ବବାସ ଫୁଲ,

(୪୧) Ibid.

(୪୨) ରାଧାନାଥ ଗ୍ରନ୍ଥାବଳୀ : ମହେନ୍ଦ୍ର କାବ୍ୟ ।

ତବ ସମାଗମେ ନାଚଥିବ ପ୍ରେମେ
ଦୋହଲାଇ ତରୁ ଭୁଜ ସକୁଳ ॥ (୪୩) ॥

କବି ଗୋଦାବରୀଶ ଉତ୍କଳବାସୀଙ୍କୁ ଉଦ୍‌ବୋଧନ ଦେଇ କହନ୍ତି—

ବିମଳ ଚିଲିକା ବକ୍ଷେ ଖେଳୁ ସେ ସୀତ
ଉଠୁ ମହୋଦଧି ବାରି ଅମୃତ ସିକ୍ତ
ମହେନ୍ଦ୍ର ଶ୍ୟାମଳ କୂଳେ ପୂତ ଚନ୍ଦ୍ରୋପଳା ନୀରେ
ଢାଳୁ ସେ ସମ୍ପଦ ଶିଖି
ଗ୍ରାମ ବିଲ୍ କାନନେ
ତୁଙ୍ଗ ଶିଖରୀ ଚୂଳ କୁଞ୍ଜ କାନନ ମାଳ
ପୁଣ୍ୟ ଜଳଧି ଜଳ ଖେଳିଉଠୁ ଗଗନେ ॥ ୪୪ ॥

କବିବର ରାଧାନାଥଙ୍କର ପ୍ରକୃତ ପ୍ରେମିକତା, କବିଶେଖର ଚିନ୍ତାମଣି, ଉତ୍କଳମଣି ଗୋପବନ୍ଧୁ ଓ ଗୋଦାବରୀଶଙ୍କ ବ୍ୟତୀତ ଅନ୍ୟାନ୍ୟ କବିଙ୍କୁ ମଧ୍ୟ ମହେନ୍ଦ୍ରଗିରି ଅନୁପ୍ରେରିତ ଓ ଉତ୍ସାହିତ କରିଛି । ତନ୍ମଧ୍ୟରେ ଗଙ୍ଗାଧର ମେହେରଙ୍କୁ ଏହା ସର୍ବାପେକ୍ଷା ଅଧିକ ବିମୁଗ୍ଧ କରିଥିବା ମନେହୁଏ । ଅପୂର୍ବ ଜାତୀୟ ପ୍ରୀତିରେ ଉଦ୍‌ବୁଦ୍ଧ ହୋଇ କବି ଉତ୍କଳର ବିଭିନ୍ନ ପ୍ରାକୃତିକ ଦୃଶ୍ୟର ସ୍ୱରୂ ଚିତ୍ରାଙ୍କନ କରିବାକୁଯାଇ ମହେନ୍ଦ୍ରଗିରି ସମ୍ପର୍କରେ କହିଛନ୍ତି—

"ମନ୍ଦ୍ର ପ୍ରସ୍ତରରୁ ଉଚ୍ଚ ଉଚ୍ଚ ଗିରି
ଶ୍ରେଣୀରେ ପାଇଲେ ସ୍ଥାନ,"
ଘନ ଶିରସ୍ତ୍ରକ ମହେନ୍ଦ୍ର ଅଚଳ
ମନ୍ତ୍ରେ ହୋଇ ସମାଦୃତ,
ଝଲେଶ୍ୱର, ସୋଲେଶ୍ୱର କାଳିଜାଇ ଆଦି
ତା ସଙ୍ଗେ ଥିଲେ ବନ୍ଦିତ । (୪୫-i)

ପୁନଶ୍ଚ ଅର୍ଘ୍ୟଥାଳରେ ମଳୟଙ୍କୁ ଆବାହନ କରି ମହେନ୍ଦ୍ର ଆସନ ଅଳଂକୃତ କରିବା ପାଇଁ ନମ୍ରମତେ ସ୍ୱାଗତ ଜଣାଇଛନ୍ତି ।

---

(୪୩) ପଣ୍ଡିତ ଗୋପବନ୍ଧୁ ଦାସ : ବନ୍ଦୀର ସ୍ୱଦେଶ ଚିନ୍ତା

(୪୪) କବି ଗୋଦାବରୀଶ ମିଶ୍ର : ଉଦ୍‌ବୋଧନ

(୪୫) (i) ଗଙ୍ଗାଧର ଗ୍ରନ୍ଥାବଳୀ—ଉତ୍କଳ ଲକ୍ଷ୍ମୀ, ପୃ-୧୮୭

"ଋଷିକୁଲ୍ୟା ଜଳେ ପଦ୍ମର ପଖାଳି
ମହେନ୍ଦ୍ର ଆସନେ ବସି,
ଚନ୍ଦ୍ରୋତ୍ପଳା ଜଳେ ସ୍ନାନ କରି ପାନ
କର ସ୍ୱର୍ଣ୍ଣରେଖା ରସ । (୪୫ ii)

ଏହିପରି ଭାବରେ ମହେନ୍ଦ୍ରଗିରିର ପ୍ରାକୃତିକ ଶୋଭା କବିଙ୍କ ମାନସରେ ଗମ୍ଭୀର ରେଖାପାତ କରିବା ସଙ୍ଗେ ସଙ୍ଗେ ଏହାର ପ୍ରାକୃତିକ ଶୋଭା ଜନମାନସ ପଟରେ ଉଦ୍ଭାସିତ ରହିଛି ।

ଶୈଳୋଦ୍ଭବ ରାଜାମାନଙ୍କର ପ୍ରଶସ୍ତି ଅଭିଲେଖରୁ ମହେନ୍ଦ୍ରଗିରିର ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନାର ମଧ୍ୟ ପ୍ରମାଣ ମିଳେ । ମହେନ୍ଦ୍ରଗିରିର ଅତୁଳନୀୟ ଶୃଙ୍ଗ ପୂର୍ବଘାଟ ପର୍ବତମାଳା ଦ୍ୱାରା ସମୁଦ୍ରକୁ ପ୍ରତିରୋଧ କରେ ଓ ଉପବନରାଜିର ବିଭିନ୍ନ ପୁଷ୍ପରାଜି ଭରପୂର ଲତା ଓ ବୃକ୍ଷସମୂହ ତଥା ଗହ୍ୱରମାନ ଅଜସ୍ର ଝରଣାର ଜଳଦ୍ୱାରା ସୃଷ୍ଟି ହେଉଥିବା କଳକଳନାଦରେ ଏବଂ ପକ୍ଷୀ ସମୂହର ଗୁଞ୍ଜନ ଦ୍ୱାରା ଉତ୍ପନ୍ନ ଶ୍ରୁତି ମଧୁର ଶବ୍ଦ ଗହ୍ୱର-ମାନଙ୍କରେ ପ୍ରତିଧ୍ୱନି ସୃଷ୍ଟି କରେ । ପୃଥିବୀରେ ମେରୁତୁଲ୍ୟ କୁଳଗିରି ରୂପେ ପୂଜିତ ଏହି ପର୍ବତ ପୂର୍ବ ଗଙ୍ଗ ଓ ଶୈଳୋଦ୍ଭବ ରାଜାଙ୍କର ଉତ୍ପତ୍ତି ସ୍ଥଳ ଓ ବିହାର ସ୍ଥଳ ଥିଲା । (୪୬)

ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ କେତେକ ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ମଧ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି—

"ନିର୍ମଳ ପ୍ରଭାତରେ ମହେନ୍ଦ୍ର ଶିଖର ଦେଶରେ ଆମେ ପହଞ୍ଚିଗଲୁ । ସେଠାରେ ଏକ ସୁବିସ୍ତୀର୍ଣ୍ଣ ସମତଳ ଭୂମି ରହିପାରେ । ଏହା ମୁଁ ପ୍ରଥମେ ଚିନ୍ତା କରିପାରି ନଥିଲି । ଏକ ପ୍ରଶାନ୍ତ ନିସ୍ତବ୍ଧତା ଯେପରି ସେଠାରେ ଆଧିପତ୍ୟ ବିସ୍ତାର କରିଛି । ଶୀତଳ ବାୟୁ ପ୍ରବାହରେ ମେଘଖଣ୍ଡମାନ ଭାସି ଆସି ଆମ ଦେହକୁ ସ୍ପର୍ଶ କରିଯାଉଥାନ୍ତି । ଏକ ଦିଗରେ ସୁଦୂର ବନାନୀର ଅପୂର୍ବ ଶୋଭା ଗ୍ରୀଷ୍ମଅଡ଼େ ବିଚ୍ଛୁରିତ, ଅନ୍ୟ ଦିଗରେ ନୀଳ ବର୍ଣ୍ଣାଢ଼୍ୟ ଆକାଶ ସଙ୍ଗେ ସୁନୀଳ ସମୁଦ୍ରର ସମ୍ମିଶ୍ରଣ ଚକ୍ରବାଳରେଖା, ଯେପରି ତାହା ମଙ୍ଗଳସୂତ୍ର-ପରି ବାନ୍ଧି ରଖିଛି । ଅପୂର୍ବ ସେହି ପ୍ରାକୃତିକ ବୈଚିତ୍ର୍ୟରେ ବିଭୋର ହେବାକୁ ଆମର ବେଳ ନାହିଁ ।" (୪୭)

(ii) Ibid : ଅର୍ଘ୍ୟଥାଳୀ-୨୬୦

(୪୬) Das, Biswarupa : Banpur Chapter. Ref. to E-2. Vol. XXIX.

(୪୭) Rajguru S. N. : ଶ୍ରୀ ଜଗନ୍ନାଥଙ୍କ ଆଦିମ ସ୍ୱରୂପ, ଉତ୍କଳ ପ୍ରସଙ୍ଗ ୧୯୮୬-ରଥଯାତ୍ରା ସଂଖ୍ୟା

ବାସ୍ତବରେ ଏହି ପ୍ରାକୃତିକ ସୌନ୍ଦର୍ଯ୍ୟ ହିଁ ଆଦି ସଭ୍ୟତାର ସଙ୍କେତ ବହନ କରି ମହେନ୍ଦ୍ରଗିରିକୁ ବୈକୁଣ୍ଠ ଧାମରେ ପରିଣତ କରିଛି ।

**(ଗ) ଆଦି ସଭ୍ୟତାର ସଙ୍କେତ :**

ପୃଥିବୀ ସୃଷ୍ଟି ହେବା ପରେ ପ୍ରଥମେ ଯେଉଁ ଶିଳା ଗଠିତ ହେଲା ତାହା ଦାକ୍ଷିଣାତ୍ୟ ମାଳଭୂମିର ଶିଳା ଋଣି ବୋଲି ପ୍ରତ୍ନତାତ୍ତ୍ୱିକମାନେ ପ୍ରମାଣ କରିଛନ୍ତି । Sir T. W. Holderness K. C. S. ତାଙ୍କର Peoples and Problems of India ପୁସ୍ତକରେ ସ୍ୱୀକାର କରିଛନ୍ତି । (୪୮)

"Peninsular India of the Deccan is geologically distinct from the Indo-Gangetic Plain and Himalayas. It is the remains of a former continent (Gondwana land Lamuria) which stretched continuously to Africa in the space now occupied by the Indian Ocean. The rocks of which it is formed are among the oldest in the world and show no traces of having ever been submerged. In many parts, they are overlaid by a sheet of black trap rock or basalt which once flowed over them as molten lava. In the Deccan we are therefore in the first days of the world, we see land substantially as it existed before the beginnings of life."

(Ch-1, Page-23)

ପୁନଶ୍ଚ ଭୂଗୋଳବିତ୍‌ଙ୍କ ମତରେ—

"Physiographically this region constitutes the lower reach of the Orissa section of the Eastern Ghats which

(୪୮) Yoga or Yaga by Sri S. Malayan, Director International Institute of Places, Geographical Studies and Historical Studies. Madras. Published by T. T. D. Tirupati, Page-26.

stood over 2000 millions years creating the Eastern Ghat line. (୪୯)

ମାନବକୁଳର ଉଦ୍ଭବ ଏହି କୁଳାଚଳମାନଙ୍କରେ ହିଁ ସମ୍ଭବ ହୋଇଛି । ମହାବସ୍ତୁ ପୁରାଣରେ ମଧ୍ୟ ଉଲ୍ଲେଖ ଅଛି—

ମହେନ୍ଦ୍ର ମଳୟ ଯେ ସହ୍ୟ ଶୁକ୍ତିମାନ
ପାରିଯାତ୍ର ଋକ୍ଷ ବିନ୍ଧ୍ୟ ଏ ସାତ ମହାନ ।
କରିଛନ୍ତି କୁଳାଚଳ ସଦା ବିରାଜିତ
ମାନବ କୁଳ ଏ ସ୍ଥଳେ ସଦା ଅବସ୍ଥିତ । (୫୦)

ଆଦିମ ମାନବ ଏହିଠାରୁ ସୃଷ୍ଟି ହୋଇଥିବା ପ୍ରମାଣ ଆଦିବାସୀମାନଙ୍କର ପୁରାତନ ପ୍ରସ୍ତର ଯୁଗୀୟ ଅସ୍ତ୍ରଶସ୍ତ୍ର ଓ ଆଚାରବ୍ୟବହାରରୁ ସ୍ପଷ୍ଟ ହୁଏ । (୫୧) ଆଦିମ ଶବର ଜାତିର ବାସସ୍ଥାନ ମହେନ୍ଦ୍ରଠାରୁ ବିନ୍ଧ୍ୟାଞ୍ଚଳ ମଧ୍ୟବର୍ତ୍ତୀ ଅଞ୍ଚଳ ନିର୍ଣ୍ଣୀତ, ଯାହାକି କଳିଙ୍ଗର ନିକଟବର୍ତ୍ତୀ ତ୍ରିକଳିଙ୍ଗ ଅଟେ । କିନ୍ତୁ ଆର୍ଯ୍ୟମାନେ କଳିଙ୍ଗକୁ ଆଗମନ ପୂର୍ବରୁ, ଆଦିବାସୀ ଶବରମାନେ ଏହି ପର୍ବତ ଶିଖରରେ ବାସ କରୁଥିଲେ । ପ୍ରାକ୍ ଐତିହାସିକ ଯୁଗରୁ ଏଠାରେ ମାନବ ବସତି ଥିବା ଅନୁମିତ ହୁଏ । ବର୍ତ୍ତମାନ କେତେକ ପୁରାତନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ଏହି ମହେନ୍ଦ୍ରଗିରିଠାରୁ ମିଳିଛି । ତାହା ଖ୍ରୀ: ପୂ ୩୦୦୦୦ ବର୍ଷ ପୂର୍ବର ବୋଲି ଧରାଯାଏ । (୫୨)

ପ୍ରସ୍ତର ଯୁଗର ଶେଷ ପର୍ଯ୍ୟାୟ ସମ୍ପୃକ୍ତ ପିଲେଷ୍ଟିନ୍ କାଳ ଅତିକ୍ରମ କରି ହଲୋସିନ୍ ଯାଏ ଚାଲିଆସିଥିଲା । କ୍ରମେ ବର୍ଷା ଓ ଗ୍ରୀଷ୍ମର ବ୍ୟବଧାନ ହ୍ରାସ ପାଇ ହଲୋସିନ୍ ଆରମ୍ଭବେଳେ ଗ୍ରୀଷ୍ମ, ବର୍ଷା, ଶୀତ ଏହି ତିନି କାଳ ନେଇ ଋତୁଚକ୍ର

---

(୪୯) Panda G. K. and Tripathy S. N. : Lecturer in Geog. and Prof. Head of Dept. Geog. Published in "Mahendragiri The Pride of Eastern Ghat." 92 Orissa Environment Society, Bhubaneswar.

(୫୦) ମହାବସ୍ତୁ ପୁରାଣ : କ୍ଷେତ୍ରମୋହନ ପ୍ରଧାନ, ପୃ ୧୧୨-୧୧୪

(୫୧) Rajguru S. N. Padmasri : Homeland of Savaras and their contribution to Orissa I.T.D.A, Pkd 1983.

(୫୨) Ibid.

ଘୁଣ୍ଡିନ ଯଥାବିଧି ପ୍ରକାଶ ପାଇନି । ଆଦିମ ପ୍ରସ୍ତର ଯୁଗ ଆଲୋଚନାରୁ ଜଣାଯାଏ ଯେ ପିଲେଷ୍ଟିନ୍ ଯୁଗର ଦ୍ୱିତୀୟାର୍ଦ୍ଧ କାଳରେ ବର୍ତ୍ତମାନ ଓଡ଼ିଶା ଅଞ୍ଚଳରେ ମାନବର ଆବିର୍ଭାବ ଘଟିଥିଲା । (୫୩) ସେହି ଆଦିମ ମାନବ ଜାତି ସମ୍ଭବତଃ ପଶ୍ଚାତ ଅଞ୍ଚଳର ପ୍ରାକ୍-ସୋଆନମାନଙ୍କର ସମସାମୟିକ ଥିଲେ । ଶରୀର ଗଠନ ଦୁର୍ବଳ ଓ ନିଃସହାୟ ଥିଲା । ମାତ୍ର ଉନ୍ନତ ମାନସିକ ଶକ୍ତିର ଉନ୍ମେଷ ଘଟିଥିଲା । ଜୀବନ ସଂଗ୍ରାମରେ ବ୍ରତୀ ହୋଇ ସେ ପଥରର ବିଭିନ୍ନ ଅସ୍ତ୍ରଶସ୍ତ୍ର ବ୍ୟବହାର କରିବା ଶିଖିଥିଲା । ସେଗୁଡ଼ିକ ପରୀକ୍ଷା କଲେ ଜଣାପଡ଼େ ଯେ ବଡ଼ ପଥର ଖଣ୍ଡ ଛେଲି ଛେଲି କରି ଭାଙ୍ଗି ସେଥିରୁ ଯେଉଁ ହତିଆର ଗଢ଼ାଯାଉଥିଲା ତାହା ଛେଚିବା, ଖୋଳିବା କିମ୍ବା କାଟିବା କାମରେ ବ୍ୟବହୃତ ହେଉଥିଲା । (୫୪)

ପ୍ରତ୍ନତାତ୍ତ୍ୱିକ ବିଶ୍ଳେଷଣ ଓ ଅନୁସନ୍ଧାନର ଅଭାବରୁ ମହେନ୍ଦ୍ରାଞ୍ଚଳ ଲୋକ-ଲୋଚନ ଅଗୋଚରରେ ରହିଯାଇଛି । ଏଠାକାର ଆଦିବାସୀଙ୍କ ଚାଲିଚଳନ ଓ ଅନ୍ୟାନ୍ୟ ବିଷୟ ପୁଙ୍ଖାନୁପୁଙ୍ଖ ଭାବେ ବିଶ୍ଳେଷଣ କଲେ ଆଦି ସଭ୍ୟତାର ବହୁ ସଙ୍କେତ ଏଠାରୁ ମିଳିବାର ସମ୍ଭାବନା ଉଜ୍ଜ୍ୱଳ । ଏହି ମହେନ୍ଦ୍ରାଞ୍ଚଳରେ ଶିଙ୍ଗ, ହାଡ ଓ ପଥରର ଅସ୍ତ୍ରଶସ୍ତ୍ର ଅଦ୍ୟାପି ବ୍ୟବହାର ହୋଇ ଆସୁଛି । ଏଠାକାର କେତେକ ଗ୍ରାମରେ ଅଦ୍ୟାପି ନୂତନ ସଭ୍ୟତାର ପ୍ରଭାବ ଅନୁଭୂତ ହୋଇପାରିନାହିଁ ଏବଂ ଆଦିମ ସଭ୍ୟତାର ସଙ୍କେତ ଅବ୍ୟାହତ ରହିଛି । ମହେନ୍ଦ୍ରାଞ୍ଚଳ ମାନବ ଜାତିର ସୃଷ୍ଟିର ଆଦି ସଙ୍କେତ ସ୍ଥଳ ହୋଇ ନଥିଲେ ଶୈଳ ବେଷ୍ଟିତ ମହେନ୍ଦ୍ରଗିରି ମଧ୍ୟରୁ ଶୈଳୋଦ୍ଭବ ବଂଶୀୟ ଅତି ବୀର ପୁରୁଷଙ୍କ ଆବିର୍ଭାବ ଘଟି ନଥାନ୍ତା । ଏହି ବିଷୟ ଶୈଳୋଦ୍ଭବ ବଂଶୀୟ ପ୍ରଶସ୍ତିରେ ବର୍ଣ୍ଣିତ ।

ଏ ସଂପର୍କରେ ଡକ୍ଟର ନବୀନକୁମାର ସାହୁ ଓ ଡକ୍ଟର ଶରତଚନ୍ଦ୍ର ବେହେରା ଏକମତ ହୋଇ କହିଛନ୍ତି—ଏହି ଶିଳାରୁ ଉଦ୍ଭବ ମହାପୁରୁଷହିଁ କଙ୍ଗୋଦ ରାଜ୍ୟର ଅଧିପତି । (୫୫)

ଯେ ଯାହାହେଉ ସେହି ଶବର ଜାତି ଯେଉଁମାନେ କି ମହେନ୍ଦ୍ରର ଚାରପାଖ ଗ୍ରାମର ଅଧିବାସୀ ସମଗ୍ର ଓଡ଼ିଶା ଓ ଓଡ଼ିଶା ବାହାରକୁ ଯାଇ ବସବାସ କରନ୍ତି । ସେମାନେ

---

(୫୩) Dr. Sahu, Nabin Kumar : ଓଡ଼ିଆ ଜାତିର ଇତିହାସ, ପୃ-୨୪-୨୫

(୫୪) Das M. N. : Hist. and Cultural of Orissa, P. 48.

(୫୫) Dr. Sahu, N. K. : ଓଡ଼ିଆ ଜାତିର ଇତିହାସ
Dr. Behera, S. C. : Rise and Fall of Sailodbhaba

ହିଁ ଶ୍ରୀ ବରହର ପୂଜକ ଜାହ୍ନବର ଆଦିମ ଅଧିବାସୀ । ସେମାନେ ହିଁ ପୃଥିବୀର ଆଦି ମାନବ ଅଟନ୍ତି । ଅଦ୍ୟାପି ସେମାନେ ହିଁ ପ୍ରକୃତ ପୂଜକ ଅଟନ୍ତି । ଆଦିମାନବ ରୂପୀ ସୃଷ୍ଟିପଦ ସଂସ୍କାରବିହୀନ ଆଦିପୁରୁଷ ଜଗନ୍ନାଥ ସନାତନ ସାରଥି ଅଟନ୍ତି । (୫୬) ଆଦିମ ଦେବତା, ଆଦିମାନବ ସହ ଆଦିବାସୀରୂପେ ପରିଚିତ ସେମାନେ ପୂର୍ବର ମହେନ୍ଦ୍ର-ଗିରିର ଜାହ୍ନବର, ସେମାନେ ହିଁ ସନାତନ ସାରଥିଙ୍କ ପ୍ରକୃତ ପୂଜକ । ଶୈବ ସିଦ୍ଧାନ୍ତ, ଅବଧୂତ, ଶାକ୍ତ, ତନ୍ତ୍ର, ବୈଷ୍ଣବ ଇତ୍ୟାଦିର ମୂଳପୀଠ ମଧ୍ୟ ମହେନ୍ଦ୍ରଗିରି ଅଟେ । ପରବର୍ତ୍ତୀ ଅଧ୍ୟାୟରେ ଏହା ବର୍ଣ୍ଣିତ ।

ଏ ସଂକ୍ରାନ୍ତରେ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଦ୍ୱାରା ଆବିଷ୍କୃତ ତାଳପତ୍ର ପାଣ୍ଡୁଲିପି "ଜାହ୍ନବର ବଂଶାବଳୀ" ଦ୍ରଷ୍ଟବ୍ୟ । ଏଥିରେ ଶବରମାନଙ୍କ ବଂଶାବଳୀ ସହିତ ସେମାନେ ପୁରୁଷୋତ୍ତମଙ୍କ ସେବା କାର୍ଯ୍ୟରେ କିପରି ଲିପ୍ତ, ତାହା ଏଥିରେ ବର୍ଣ୍ଣିତ । ଏହି ଜାତି ଶବରମାନେ ବାରଘର ଅଧିବାସୀ ବୋଲି ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ପ୍ରମାଣ କରିଛନ୍ତି । ଏମାନେହିଁ ସମଗ୍ର ଅଞ୍ଚଳକୁ ବ୍ୟାପିଥିବା କଳ୍ପିତ । (୫୭)

ବେଦରେ ମଧ୍ୟ ଗୋଟିଏ ସୂକ୍ତ ଅଛି—

ସୋମାନଂ ସ୍ୱରଣଂ କୃଣୁହି ବ୍ରାହ୍ମଣ ସ୍ପତେ
କକ୍ଷୀବନ୍ତଂ ଯଃ ଔଶିଜଃ । (୫୮)

ଅର୍ଥାତ୍, କଳିଙ୍ଗ ରାଜ ମହିଷୀଙ୍କ ଦାସୀ ଉଶିବ ଗର୍ଭରେ ଦୀର୍ଘତମା ଋଷିଙ୍କ ଔରସରେ ଯେଉଁ କକ୍ଷୀବାନ୍ ଜନ୍ମଗ୍ରହଣ କରିଥିଲେ, ସେ ନୀଚ ବଂଶଜ ହେଲେ ହିଁ ଦେବତାଙ୍କ ନିକଟରେ ପ୍ରଖ୍ୟାତ ହୋଇପାରିଥିଲେ । ହେ ବ୍ରାହ୍ମଣ ସ୍ପତିଦେବ । ଏହି ପ୍ରାର୍ଥନାକାରୀଙ୍କୁ ସେହିପରି ଦେବଗଣଙ୍କ ନିକଟରେ ପ୍ରତିଷ୍ଠାନ୍ୱିତ କରନ୍ତୁ । (୫୯)

ଏହି ପ୍ରାଚୀନ କଳିଙ୍ଗର ସଂସ୍କୃତି ସହିତ ପ୍ରାଚୀନ କଳିଙ୍ଗର କେନ୍ଦ୍ରରେ ଥିବା ମହେନ୍ଦ୍ରାଞ୍ଚଳରେ ଆଦିମ ଶବର ଜାତିର ସଂସ୍କୃତିକୁ ଲକ୍ଷ୍ୟ କଲେ ଜଣାଯାଏ ଯେ

(୫୬) Das Anirudha I.A.S. : Cultural Heritage.
(୫୭) Dr. S. N. Rajguru : Homeland of Savaras, Sovenir, I. T. D. A. Pkd 1983.
(୫୮) ଋକ୍‌ବେଦ : ପ୍ରଥମ ମଣ୍ଡଳ-ଅଷ୍ଟାଦଶ ସୂକ୍ତ
(୫୯) ମହାନ୍ତି ସୁରେନ୍ଦ୍ର : ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ-୧୦

ସେମାନେ ସମତଳ ଅଞ୍ଚଳରୁ ବିତାଡ଼ିତ ହୋଇ ପୁରାତନ ସଂସ୍କୃତି ବର୍ଣ୍ଣିତ ମହେନ୍ଦ୍ର-ଗିରିରେ ଆଶ୍ରୟ ନେଇଛନ୍ତି । ପରେ ଏମାନେ 'ସଅର' ହିସାବରେ ଭାରତବର୍ଷର ବିଭିନ୍ନ ଅଞ୍ଚଳକୁ ପୂଜକ ହିସାବରେ ଯାଇଛନ୍ତି ।

ବାୟୁ ପୁରାଣ କହେ—

ଭାରତ ବର୍ଷରେ ଯେତେ ଜନପଦ ଅଛି,
ଏ ସବୁ ପର୍ବତ ସଙ୍ଗେ ଯେ ମିଶି ରହିଛି । (୭୦)

ଏହା ସ୍ୱତଃସିଦ୍ଧ ଯେ ଭାରତର ମୂଳ ସଭ୍ୟତା ନଦୀକୂଳ ସଭ୍ୟତା ଓ ପାର୍ବତ୍ୟ ସଭ୍ୟତା । ଓଡ଼ିଶା ତଥା କଳିଙ୍ଗ, ବିଶେଷତଃ ମହେନ୍ଦ୍ରାଞ୍ଚଳ ସେଥିରୁ ବଞ୍ଚିତ ନୁହେଁ ।

ପୁନଶ୍ଚ ମହେନ୍ଦ୍ରାଞ୍ଚଳରେ ଭୂୟାଁ ପଦବୀଧାରୀ ଶବର ମୁଖିଆଙ୍କୁ ଆଦିମ ସଭ୍ୟତାର ପ୍ରଥମ ନେତା ଆଖ୍ୟା ଦିଆଯାଇପାରେ । ବିଷ୍ଣୁ ପୁରାଣର 'ମହେନ୍ଦ୍ର ଭୌମ' ପ୍ରଶସ୍ତିକୁ ଲକ୍ଷ୍ୟ ରଖି ପ୍ରଫେସର ଆର. ସି. ମଜୁମଦାର (୭୧) ଶ୍ରୀ ବି. ମିଶ୍ର ଏହା ପ୍ରମାଣ କରିଛନ୍ତି । ଡ଼କ୍ଟର ବିଶ୍ୱରୂପ ଦାସ ମଧ୍ୟ ତାଙ୍କ 'ଭୌମକର' ଇତିହାସ ରଚନାରେ ଏମାନେ ଗୁହ ନାମରେ ପରିଚିତ ଥିଲେ ବୋଲି କହନ୍ତି । (୭୨)

ବାୟୁ ପୁରାଣରେ ଦର୍ଶାଯାଇଛି ଯେ 'ଗୁହ' ମାନେ ମହେନ୍ଦ୍ରଗିରିର ମହିଷ ଓ କଳିଙ୍ଗମାନଙ୍କ ସହିତ ରାଜତ୍ୱ କରୁଥିଲେ । (୭୩) କଳିଙ୍ଗ, ମହିଷ ଓ ମହେନ୍ଦ୍ର ଗୁହମାନଙ୍କ ଦ୍ୱାରା ଶାସିତ ଥିବା ଉଇଲସିନ ସାହେବ ମଧ୍ୟ ମତ ପୋଷଣ କରନ୍ତି । (୭୪) ମହେନ୍ଦ୍ର 'ଭୌମ'ହିଁ ଭୌମକର ରାଜବଂଶର ଉତ୍ପତ୍ତି ସ୍ଥଳ । ଏ ସନ୍ଦର୍ଭରେ ବିଭିନ୍ନ ମତଦ୍ୱୈଧ ମଧ୍ୟରେ ଗବେଷକ ବିଶ୍ୱରୂପ ଦାସଙ୍କ ମତ ଗ୍ରହଣଯୋଗ୍ୟ କାରଣ ରାଜନୈତିକ ଇତିହାସରେ ଏହି ଭୂୟାଁମାନଙ୍କ ପଦବୀକୁ ଉଚ୍ଚ ଆସନ ଦିଆଯାଇଛି ।

(୭୦) ବାୟୁ ପୁରାଣ

(୭୧) Majumdar, R. C. : Age of Imperial Kanuaj, P. 63.

(୭୨) The Bhaumakaras – Dr. Biswarupa Das, P. 28.

(୭୩) Parjitor F. E. : Dynastics of Kali Age with reference to Vayu Puran, 99-383.

(୭୪) Wilson, H. N. ; Vishnupuran Trans. PP. 385-386.

ଏହି ଆଦି ସଭ୍ୟତାର ସଙ୍କେତ ସ୍ଥଳ ମହେନ୍ଦ୍ରଗିରିର ଗଙ୍ଗ ବଂଶ, ଶୈଳୋଦ୍ଭବ ବଂଶ, ଭୌମକର ବଂଶମାନଙ୍କର ବଂଶୋତ୍ପତ୍ତିର ସ୍ଥଳ ରୂପେ ଖ୍ୟାତି ଅର୍ଜନ କରିବା କଥା କମ୍ ଗୌରବର ବିଷୟ ନୁହେଁ । ବୈଦିକ ଯୁଗରେ ଏହି ଆଦି ସଭ୍ୟତାର ସଙ୍କେତ ମହେନ୍ଦ୍ରଗିରି ଜନସମାଜରେ କିପରି ମଙ୍ଗଳ ବିଧାନରେ ସହାୟକ ଥିଲି ତାହା ବୈଦିକ କର୍ମକାଣ୍ଡରୁ ଜଣାପଡ଼େ ।

× × × ×

ଶ୍ରୀମତ୍ ପଙ୍କଜ ବିଷ୍ଟରୋ ହରିହରୌ ବାୟୁର୍ମହେନ୍ଦ୍ରୋଽନଲ—
ଶ୍ଚନ୍ଦ୍ରୋ ଭାସ୍କର ବିତ୍ତପାଳ ବରୁଣ ଧର୍ମାଧିପାଳ ଗ୍ରହାଃ
ପ୍ରଦ୍ୟୁମ୍ନୋ ନଳ କୁବେରଃ ସୁରଗଣ ଶ୍ଚିନ୍ତାମଣି କୌସ୍ତୁଭଂ
ସ୍ୱାମୀ ଶକ୍ତି ଧରସ୍ତୁ ଲାଙ୍ଗଳ ଧରଃ କୁର୍ବନ୍ତୁତେ ମଙ୍ଗଳମ୍ । (୭୫) ।

ଏହି ପରିପ୍ରେକ୍ଷୀରେ ପୌରାଣିକ ବର୍ଣ୍ଣନାରେ ମହେନ୍ଦ୍ରଗିରି ବିଷୟ ବିସ୍ମୟ ।



(୭୫) ବିବାହ କର୍ମକାଣ୍ଡ, ପୃ ୭୨୮

# ଦ୍ୱିତୀୟ ପରିଚ୍ଛେଦ

## ।। ପୌରାଣିକ ବର୍ଣ୍ଣନାରେ ମହେନ୍ଦ୍ରଗିରି ।।

ଭାରତୀୟ ସଭ୍ୟତା ଓ ସଂସ୍କୃତିର ଇତିହାସ ମୁଖ୍ୟତଃ ପ୍ରାଚୀନ ପୌରାଣିକ ତଥ୍ୟ ଉପରେ ହିଁ ଆଧାରିତ । ମୂଳ ସଂସ୍କୃତ ରାମାୟଣ ଓ ମହାଭାରତର ରଚନାକାଳ ଖ୍ରୀ: ପୂ: ୫୦୦ ଠାରୁ ୩୦୦ ମଧ୍ୟରେ ବୋଲି ଗୃହୀତ । (୧) ଏହାର ପରବର୍ତ୍ତୀ କାଳରେ ଗୁପ୍ତଯୁଗ ଶେଷ ସୁଦ୍ଧା ଅଷ୍ଟାଦଶ ପୁରାଣ (୨) ପୂର୍ଣ୍ଣାଙ୍ଗ ରୂପରେ ଆତ୍ମପ୍ରକାଶ କରିସାରି-ଥିଲା । ଏଣୁ ବିଭିନ୍ନ ପୁରାଣର ଭିତ୍ତିଭୂମି ଉପରେ ଯେ ଜାତୀୟ ସଭ୍ୟତା ଓ ସଂସ୍କୃତିର ଇତିହାସ ଗଢ଼ି ଉଠିଛି, ଏହା ନିଃସନ୍ଦେହ । ସୁତରାଂ ମହେନ୍ଦ୍ରଗିରିର ଐତିହାସିକ ସାଂସ୍କୃତିକ ଅବଦାନ ସଂପର୍କରେ ଆଲୋଚନା କରିବା ପୂର୍ବରୁ, ରାମାୟଣ, ମହାଭାରତ ସମେତ ବିଭିନ୍ନ ପ୍ରାଚୀନ ସଂସ୍କୃତ ପୁରାଣଗୁଡ଼ିକରେ ଉପଲବ୍ଧ ଏ ସମ୍ବନ୍ଧୀୟ ତଥ୍ୟର ଅବତାରଣା ଏକାନ୍ତ ଆବଶ୍ୟକ ।

### (କ) ସଂସ୍କୃତ ପୁରାଣ : ରାମାୟଣ

ପୂର୍ବବର୍ଣ୍ଣିତ ପ୍ରକାରେ ରଘୁ ମହାରାଜା ରାମଚନ୍ଦ୍ରଙ୍କ ପୂର୍ବରୁ କଳିଙ୍ଗକୁ ଆଗମନ କରି ମହେନ୍ଦ୍ରଗିରିରେ ପଦାର୍ପଣ କରିଥିଲେ । ତେଣୁ ରାମଚନ୍ଦ୍ର ମଧ୍ୟ ମହେନ୍ଦ୍ର ପ୍ରତି ଆକୃଷ୍ଟ

---

(୧) ଯୁଗେ ଯୁଗେ ଭାରତ : ଡକ୍ଟର ସୂର୍ଯ୍ୟନାରାୟଣ ଦାସ, ପୃ-୨୨୪ ଏବଂ ସଂସ୍କୃତ ସାହିତ୍ୟର ଇତିହାସ : ଆଚାର୍ଯ୍ୟ ପ୍ରମୋଦକୁମାର, ପୃ-୭୦

(୨) ସାରଳା ସାହିତ୍ୟରେ ରାଜନୈତିକ ମୂଲ୍ୟବୋଧ : ଡକ୍ଟର ସୂର୍ଯ୍ୟନାରାୟଣ ଦାସ, ପୃ ୮୧

ହେବା ସ୍ୱାଭାବିକ ଥିଲା । ପୁନଶ୍ଚ ମିଥିଳାର ରାଜକନ୍ୟା ସୀତାଙ୍କ ସ୍ୱୟମ୍ବର ପରେ ବରକନ୍ୟାଙ୍କୁ ଜନକଙ୍କ ଗୃହରୁ ଅଯୋଧ୍ୟା ନଗରୀକୁ ଶୋଭାଯାତ୍ରାରେ ଆସିବା ସମୟରେ ମହାବୀର ପର୍ଶୁରାମଙ୍କ ସହିତ ସାକ୍ଷାତ ହୋଇଥିଲା ଯେ କି ତତ୍ ପୂର୍ବରୁ ମହେନ୍ଦ୍ରଗିରିରେ ଆଶ୍ରୟ ନେଇଥିଲେ । ଅଦ୍ୟାପି ସମୁଦ୍ରକୂଳରୁ ୫ କି.ମି. ଦୂରରେ ଗଞ୍ଜାମ ଜିଲ୍ଲାର ରମ୍ଭାନିକଟରେ ପର୍ଶୁରାମଙ୍କ ପୂର୍ବାଶ୍ରମ "ପୁରୁଆ ସାହି" ଓ ସେଠାରେ ମହେନ୍ଦ୍ରତନୟା ଗର୍ଭରେ ପର୍ଶୁରାମ ତର୍ପଣ କରିବା କୁଣ୍ଡ ସୁରକ୍ଷିତ । ରାମ ପର୍ଶୁରାମଙ୍କ ଭେଟ ପୂର୍ବରୁ ଦଶରଥଙ୍କ ହୃତ୍କମ୍ପଜାତ ହେଲା । ପ୍ରଚଣ୍ଡ ବେଗରେ ପବନ ବୋହିଲା । ପବନରେ ପୃଥିବୀ କମ୍ପି ଉଠିଲା । ସମସ୍ତ ବୃକ୍ଷ ଟଳି ପଡ଼ିଲେ । ସୂର୍ଯ୍ୟ ଅନ୍ଧକାର ମଧ୍ୟରେ ଲୁଚି ରହିଗଲେ । ବାଟ ଚାଲିବା କଷ୍ଟକର ହୋଇ ପଡ଼ିଲା । ତାହାଥିଲା ମହାବୀର ପର୍ଶୁରାମଙ୍କ ଆଗମନର ସୂଚନା । ପର୍ଶୁରାମଙ୍କ କଣ୍ଠଦେଶରେ ତଡ଼ିତ ସଦୃଶ ଖଡ୍ଗ ହସ୍ତରେ ଶରାସନ । ଦଶରଥଙ୍କ ମନେହେଲା, ସତେଅବା ତ୍ରିପୁରବିଜୟୀ ମହାଦେବ ଶିବ ଉଭା ହୋଇଛନ୍ତି । ପିତୃବଧ ପରେ ପର୍ଶୁରାମ କ୍ଷତ୍ରିୟ ବଂଶ ନିର୍ମୂଳ ପାଇଁ ସଂକଳ୍ପବଦ୍ଧ ଥିଲେ । କାଶ୍ୟପ ମହର୍ଷିଙ୍କୁ ସମସ୍ତ ରାଜ୍ୟ ଅର୍ପଣ କରିବା ପରେ ତାଙ୍କର କ୍ରୋଧାଗ୍ନି ନିର୍ବାପିତ ହୋଇଗଲା । (୩) ରାମ ପର୍ଶୁରାମଙ୍କ ଭେଟ ହୋଇଥିଲା ଭାର୍ଗବଙ୍କ ଆଶ୍ରମ ନିକଟରେ । ଏହି ଆଶ୍ରମର ସଂକେତ ସ୍ୱରୂପ ଅଦ୍ୟାପି ପୁରୁଆ ସାହି ବିଦ୍ୟମାନ । ପୁଲିନ୍ଦ-ବଂଶର ଆଦିବାସୀ ଏଠାକାର ଅଧିବାସୀ ଅଟନ୍ତି ।

ଶ୍ରୀରାମ ପର୍ଶୁରାମଙ୍କୁ ଭେଟିବା ସଂପର୍କରେ କୁହାଯାଇଛି ଯେ ପୂର୍ବେ ବିଶ୍ୱକର୍ମା ନିର୍ମାଣ କରିଥିବା ଦୁଇଟି ଧନୁ ମଧ୍ୟରୁ ଦେବତାମାନେ ତ୍ରିପୁରାସୁରକୁ ମାରିବା ପାଇଁ ଗୋଟିଏ ମହାଦେବଙ୍କୁ ଓ ଅନ୍ୟଟି ବିଷ୍ଣୁଙ୍କୁ ଅର୍ପଣ କରିଥିଲେ । ହରିହର ଯୁଦ୍ଧ କାଳରେ ଶିବଙ୍କ ଧନୁ ଶିଥିଳ ହୋଇ ପଡ଼ିବା ଯୋଗୁଁ ସେ ତାହା ବିଦେହ ରାଜାଙ୍କୁ ଅର୍ପଣ କରିଥିଲେ ଯାହାକି ଶ୍ରୀରାମଚନ୍ଦ୍ର ସୀତାଙ୍କ ସ୍ୱୟମ୍ବର କାଳରେ ଭାଙ୍ଗିଥିଲେ । ବିଷ୍ଣୁଙ୍କୁ ପ୍ରଦତ୍ତ ହୋଇଥିବା ଅନ୍ୟ ଧନୁଟି ଭୃଗୁ, ଋଚିକ ଓ ପରେ ପର୍ଶୁରାମଙ୍କୁ ପ୍ରାପ୍ତ ହୋଇ ଥିଲା । ଜମଦଗ୍ନି ତାହା ବ୍ୟବହାର ନ କରିବାରୁ ସହସ୍ରାର୍ଜୁନ ତାଙ୍କୁ ହତ୍ୟା କରିବାକୁ

---

(୩) ଭାର୍ଗବାଣାଂ କୁଲେ ଜାତଃ ସ୍ୱାଧ୍ୟାୟ ବ୍ରତ ଶାଲିନାମ୍
ସହସ୍ରାକ୍ଷେ ପ୍ରତିଜ୍ଞାୟ ଶସ୍ତ୍ରଂ ପ୍ରକ୍ଷିପ୍ତ ବାନସି ॥ ୭ ॥
ସତ୍ତ୍ୱଂ ଧର୍ମ ପରେ ଭୂତ୍ୱା କାଶ୍ୟପାୟ ବସୁନ୍ଧରାମ୍ ।
ଦତ୍ତ୍ୱାବନ ମୁପାଗମ୍ୟ ମହେନ୍ଦ୍ର କୃତକେତନଃ ॥ ୮ ॥

( ବାଲ୍ମୀକି ରାମାୟଣ, ବାଲକାଣ୍ଡ )

ସମର୍ଥ ହୋଇଥିଲ । ତେଣୁ ସେ ପିତୃହତ୍ୟାର ପ୍ରତିଶୋଧ ନେବା ପାଇଁ ଏକବିଂଶବାର କ୍ଷତ୍ରିୟ ସଂହାର ଅଭିଯାନ ଚଳାଇ ଥିଲେ ।

ବଧିନଦେଶମତେ ଶ୍ରୀରାମଚନ୍ଦ୍ର ପରଶୁରାମଙ୍କଠାରୁ ଉକ୍ତ ବୈଷ୍ଣବ ଧନୁସହ ଗୁରକଳା ହରଣ କରିନେଇଥିଲେ । କାରଣ ଦ୍ୱାଦଶ କଳାଯୁକ୍ତ ଶ୍ରୀରାମଚନ୍ଦ୍ର ଷୋଡ଼ଶ କଳାରେ ପରିପୂର୍ଣ୍ଣ ହୋଇ, ଧରାଧାମରେ ନିଜର ଲୀଳା ପ୍ରକଟ କରିବା ନିମନ୍ତେ ଅଭିପ୍ରେତ ହୋଇଥିଲେ । ଏହି ଗୁରକଳା ସ୍ୱଇଚ୍ଛାରେ ଦେବାପାଇଁ ସଙ୍କଳ୍ପ ନଥିଲେ; ରାମ ପରଶୁରାମଙ୍କ ଯୁଦ୍ଧ କାଳରେ ରାମଙ୍କ ତୂଣୀରୁ ଶରଶୂନ୍ୟ ହୋଇଯାଇଛି । ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ଶର ଭିକ୍ଷା କରନ୍ତେ ପରଶୁରାମ ତାଙ୍କୁ ସେଥିରୁ ନିବୃତ୍ତିକରି, ନିଜପାଇଁ ସ୍ୱର୍ଗପଥ ଅବରୋଧ କରି ମହେନ୍ଦ୍ରରେ ଆଚନ୍ଦ୍ର ଦିବାକର ଅବସ୍ଥାନ ନିମିତ୍ତ ଆଶୀର୍ବାଦ ଭିକ୍ଷା କରିଥିଲେ ଓ ନିଜର ଶର ପ୍ରଦାନ କରିଥିଲେ । ରାମଚନ୍ଦ୍ର ପରଶୁରାମଙ୍କୁ ଆଶୀର୍ବାଦ ଦେଇଥିଲେ । (୪)

ଅଦ୍ୟାବଧି ମହେନ୍ଦ୍ର ପାଦଦେଶ ପୁରିଆ ସାହିଠାରେ 'ପରଶୁରାମ କୁଣ୍ଡ' (ରାଜଗଡ଼ରେ ପିତୃ ତର୍ପଣ କରିବା କୁଣ୍ଡ)ଗୁଡ଼ିକ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରୁଛି । ସେହି ସେତସ୍ୱା ଯୁଗରୁ ପରଶୁରାମ ମହେନ୍ଦ୍ର ପର୍ବତରେ ଚିରଞ୍ଜୀବୀ ହୋଇ ନିବାସ କରି ଆସୁଛନ୍ତି । ରାମାୟଣରେ ବାଲ୍ମୀକି ଯଥାର୍ଥରେ ତତ୍କାଳୀନ ଭାରତବର୍ଷର ଜମ୍ବୁଦ୍ୱୀପ ବର୍ଣ୍ଣନାରେ ମହେନ୍ଦ୍ରକୁ ମୁଖ୍ୟ ଆସନ ଦେଇଛନ୍ତି । ପୁନଶ୍ଚ ରାମଚନ୍ଦ୍ରଙ୍କ ବନଗମନ ସମୟରେ ସେ ଉତ୍ତର ଭାରତରୁ ବିନ୍ଧ୍ୟାଞ୍ଚଳଦେଇ ଦଣ୍ଡକାରଣ୍ୟରେ ପ୍ରବେଶ କରିଥିଲେ । ସୀତା ଅପହୃତା ହେବାପରେ ସୁଗ୍ରୀବ ମିତ୍ର ହିସାବରେ, ସୀତା ଅନ୍ୱେଷଣ ପାଇଁ, ବାନର ସୈନ୍ୟଙ୍କୁ ଦୂତ ହିସାବରେ ପ୍ରେରଣ କଲାବେଳେ, ହନୁମାନଙ୍କ ନେତୃତ୍ୱରେ ନଳ, ନୀଳ, ଜାମ୍ବୁବାନ, ସୁଷେଣ ଓ ଅଙ୍ଗଦ ଆଦି ମହେନ୍ଦ୍ର ପର୍ବତରେ ପହଞ୍ଚିଥିଲେ । ହନୁମାନ ନିଜ ଦଳ ସହିତ ମହେନ୍ଦ୍ରଗିରିରେ ପଦାର୍ପଣ ପରେ ସମୁଦ୍ର ସନ୍ଦର୍ଶନ କରିଥିଲେ ଏବଂ ସମ୍ପାତିଠାରୁ ଲଙ୍କାପୁରୀର ସଙ୍କେତ ପାଇ ସମୁଦ୍ର ଲଙ୍ଘନ ପାଇଁ ତତ୍ପର ହୋଇଥିଲେ । ବାଲ୍ମୀକିଙ୍କ ଭାଷାରେ—

କୋଽପି ଲୋକେ ନମେବେଗଂ ପବନେ ଧାରୟିଷ୍ୟତି
ଏତାନି ହି ନଗସ୍ୟାସ୍ୟ ଶିଳା ସଙ୍କଟଶାଳିନଃ ॥ ୩୬ ॥

---

(୪) ସହତାନ୍ ଦୃଶ୍ୟ ରାମେଣ, ସ୍ୱର୍ଗଲୋକାଂ ସ୍ତପ ସାର୍ଜିତାନ୍ ।
ଜାମଦଗ୍ନ୍ୟୋ ଜଗାମାଶୁ, ମହେନ୍ଦ୍ରଂ ପର୍ବତୋ ତମମ୍ ॥
[ବାଲ୍ମୀକି ରାମାୟଣମ୍—ବାଳକାଣ୍ଡ]

ଶିଖରାଣି ମହେନ୍ଦ୍ରସ୍ୟ ସ୍ଥିରାଣି ଚ ମହାନ୍ତି ଚ ।
ଯେଷୁ ବେଗଂ ଗମିଷ୍ୟାମି ମହେନ୍ଦ୍ର ଶିଖରେ ଷ୍ୱହମ୍ ।। ୩୭ ।।
ସ ସୂର୍ଯ୍ୟାୟ ମହେନ୍ଦ୍ରାୟ ପବନାୟ ସ୍ୱୟଂଭୁବେ ।
ଭୂତେ ଭ୍ୟଶ୍ଚାଞ୍ଜଳୀଂ କୃତ୍ୱା ଚକାର ଗଗନେ ମତମ୍ ।। ୩୮ ।।

ଅର୍ଥାତ୍, ଧୀର ମହାବଳ ହନୁମାନ ପ୍ରାକୃତିକ କୃଷ୍ଣନୀଳ, ଲୋହିତ ଓ ମାଞ୍ଜିଷ୍ଠ ବର୍ଣ୍ଣର ବିଚିତ୍ର ଧାତୁମାନଙ୍କ ଦ୍ୱାରା ଅଳଂକୃତ ସପରିବାର ଦେବତୁଲ୍ୟ କାମରୂପୀ ଯକ୍ଷ, ଗନ୍ଧର୍ବ, କିନ୍ନର ଓ ପବନମାନଙ୍କ ଦ୍ୱାରା ସତତ ସେବିତ ଏବଂ ଶ୍ରେଷ୍ଠନାଗ ସମାକୀର୍ଣ୍ଣ ସେହି ମହେନ୍ଦ୍ର ପର୍ବତରେ ଠିଆ ହୋଇ ହ୍ରଦ ମଧ୍ୟସ୍ଥିତ ଗଜସଦୃଶ ଶୋଭାପାଇଲେ । (୫) ସେ ସୂର୍ଯ୍ୟ, ମହେନ୍ଦ୍ର, ପବନ, ବ୍ରହ୍ମା ଏବଂ ଅନ୍ୟାନ୍ୟ ଭୂତଗଣଙ୍କୁ କୃତାଞ୍ଜଳି ପୂର୍ବକରେ ପୂର୍ବାଭିମୁଖ ହୋଇ କରଯୋଡ଼ି ପିତା ପବନଦେବଙ୍କୁ ନମସ୍କାର କରି ଦକ୍ଷିଣ ଦିଗକୁ ଯିବା ପାଇଁ ବର୍ଦ୍ଧିତ ହେବାକୁ ଲାଗିଲେ । (୬) ଏଠାରେ କବି କହନ୍ତି—

ପୀଡ଼୍ୟମାନସ୍ତୁ ବଲିନା ମହେନ୍ଦ୍ରସ୍ତେନ ପର୍ବତଃ
ରୀତି ନିର୍ବର୍ତ୍ତୟାମାସ କାଞ୍ଚନାଞ୍ଜନ ରାଜତୀଃ ।। ୧୫ ।।

ଅର୍ଥାତ୍, ସେହି ମହେନ୍ଦ୍ର ପର୍ବତ ମହାବଳୀଙ୍କ ଦ୍ୱାରା ପୀଡ଼୍ୟମାନ ହୋଇ ସ୍ୱର୍ଣ୍ଣ ଓ ରଜତ ବର୍ଣ୍ଣର ସ୍ରୋତମାନ ପ୍ରବାହିତ ହେବାକୁ ଲାଗିଲା ।

ଶିଳାଖଣ୍ଡମାନ ଏପରି ନିପତିତ ହେଲା ଯେତେ ଅବା ସେହି ମନଃଶିଳା ସମନ୍ୱିତ ବିଶାଳ ଶିଳାଖଣ୍ଡ ତେଜସ୍ୱାନ ଅଗ୍ନିର ମଧ୍ୟ ସ୍ଥାନ ଭଳି ପ୍ରଜ୍ୱଳିତ ହେଲା । ସର୍ପମାନେ ଫଣାଟେକି ସେହି ଶିଳାଖଣ୍ଡମାନଙ୍କୁ ଦଂଶନ କଲେ । ଔଷଧି ବୃକ୍ଷ ସେହି ସର୍ପମାନଙ୍କର ବିଷ ନିବାରଣ କରିବା ପାଇଁ ସମର୍ଥ ହୋଇପାରିଲେ ନାହିଁ । ସମଗ୍ର ଅଞ୍ଚଳ ଅସ୍ତବ୍ୟସ୍ତ ହୋଇଯାଇଥିଲା । ତତଃପର ଲବଣ ସାଗରର ଉତ୍ତାଳ ତରଙ୍ଗମାଳାକୁ ଇତସ୍ତତଃ ଆକର୍ଷଣ ପୂର୍ବକ ହେନ୍ତି କପିଶ୍ରେଷ୍ଠ ସ୍ୱର୍ଗ ଓ ପୃଥିବୀ ବିକ୍ଷିପ୍ତ କରି ମହାସାଗରରେ ମେରୁ ଓ ମନ୍ଦର ପର୍ବତ ସଦୃଶ ଉନ୍ନତ ତରଙ୍ଗ ସମୁଦ୍ରକୁ ଗଣନା କଲା ପରି, ସେ ମହାବେଗରେ ଅତିକ୍ରମ କଲେ ।

ହନୁମାନଙ୍କ ପ୍ରତ୍ୟାଗମନ କାଳରେ ବର୍ଣ୍ଣନା କ୍ରମେ କବି କହନ୍ତି— (୭)

(୫) ବାଲ୍ମିକି ରାମାୟଣମ୍— ସୁନ୍ଦରକାଣ୍ଡ ୧ମ ସର୍ଗ : ଟୀକା ଲିଙ୍ଗରାଜ ମିଶ୍ର ।

(୬) Ibid

(୭) ବାଲ୍ମିକି ରାମାୟଣ ମୂଳ—ଅଷ୍ଟପଞ୍ଚାଶ ସର୍ଗ ।

ମହେନ୍ଦ୍ର ମେଘ ସଙ୍କାଶୋ ନନାଦଶ ମହାକପିଃ
ସ ପୂରୟା ମାସ କପିର୍ଦିଶୋ ଦଶ ସମନ୍ତତଃ ॥ ୫ ॥

× × ×

ତତସ୍ତସ୍ୟ ଗିରେଃ ଶୃଙ୍ଗ ମହେନ୍ଦ୍ରସ୍ୟ ମହାବଲାଃ
ହନୁମତ୍ପ୍ରମୁଖାଃ ପ୍ରୀତିଂ ହରୟୋ ଜଗ୍ମୁରୁତ୍ତମାମ୍ ॥ ୯ ॥

ଅର୍ଥାତ୍, ଲଙ୍କା ନଗରୀକୁ ବ୍ୟାକୁଳିତ, ରାବଣକୁ ବ୍ୟଥିତ ଓ ରାକ୍ଷସମାନଙ୍କୁ ନିପୀଡ଼ିତ କରି, ମହାବୀର ଜାନକୀଙ୍କୁ ଅଭିବାଦନ ଜଣାଇ ପୁଣି ସାଗରର ମଧ୍ୟସ୍ଥଳରେ ଉପସ୍ଥିତ ହେଲେ । ସୁଦୂରରୁ ମହେନ୍ଦ୍ରଗିରିକୁ ଦେଖି ସେହି ମହାକପି ମେଘ ଗର୍ଜନ କରି ଦଶଦିଗ ପୂର୍ଣ୍ଣ କରିଦେଲେ । (୮) ବାନରଗଣ ହନୁମାନଙ୍କ ଲଙ୍କା ଅଭିଯାନ ବିବରଣୀ ଶୁଣି, ମହେନ୍ଦ୍ର ପର୍ବତ ଶୃଙ୍ଗରେ ବସି ପରମପ୍ରୀତି ଲାଭ କଲେ । ତାହା ମହେନ୍ଦ୍ରଗିରିର ହନୁମାନ ଖୋଲ ଦର୍ଶନ କଲେହିଁ ଉପଲବ୍ଧ ହେବ ।

ବାଲ୍ମୀକିଙ୍କୁ ସମର୍ଥନ କରି ଭାରତର ବିଭିନ୍ନ ଭାଷାରେ ଅନେକ ରାମାୟଣ ସୃଷ୍ଟି ହୋଇଅଛି । ସେମାନଙ୍କ ମଧ୍ୟରେ ବିଭିନ୍ନ ପ୍ରସଙ୍ଗନେଇ ଯେତେ ମତଭେଦ ରହୁନା କାହିଁକି, ପରଶୁରାମଙ୍କ ମହେନ୍ଦ୍ର ଅବସ୍ଥାନ ଓ ହନୁମାନଙ୍କ ଲଙ୍କା ଗମନକାଳୀନ ବିବରଣୀରେ ପ୍ରାୟତଃ ସାମଞ୍ଜସ୍ୟ ଦେଖାଯାଏ । ସପ୍ତଚିରଞ୍ଜୀବୀଙ୍କ ମଧ୍ୟରୁ ମହାବୀର ପର୍ଶୁରାମ ଓ ମହାବୀର ହନୁମାନହିଁ ତ୍ରେତୟା ଯୁଗର ସର୍ବଶ୍ରେଷ୍ଠ ବୀରରୂପେ ସ୍ୱୀକୃତ । ଏ ପର୍ଯ୍ୟାୟରେ ତତ୍ତ୍ୱଦର୍ଶିନୀ—ତ୍ରିପୁର ରହସ୍ୟ ଅନ୍ତର୍ଗତ ହାରିତୋକ୍ତ ହେମ ଚୂଡ଼ାମଣି ଉପାଖ୍ୟାନମ୍ ପ୍ରଣିଧାନଯୋଗ୍ୟ ।

### ତତ୍ତ୍ୱଦର୍ଶିନୀ—ହେମଚୂଡ଼ାମଣି ଉପାଖ୍ୟାନମ୍ (୯)

ଶ୍ରୀ ରାମଚନ୍ଦ୍ର ପର୍ଶୁରାମଙ୍କର ଗର୍ବ ଖର୍ବ କରିବା ପରେ ପର୍ଶୁରାମଙ୍କ ସହ ମହର୍ଷି ସମ୍ବର୍ତ୍ତ (ଅବଧୂତ)ଙ୍କ ସାକ୍ଷାତ ହେଲା ଓ ତାଙ୍କର କ୍ରୋଧ ଶାନ୍ତ ହେଲା । ପର୍ଶୁରାମ ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ସତ୍ୟ ଓ ତତ୍ତ୍ୱଜିଜ୍ଞାସା କରନ୍ତେ, ସେଥିଲାଗି ସେ ପର୍ଶୁରାମଙ୍କୁ ଅତ୍ରି ମହର୍ଷିଙ୍କ ପୁତ୍ର ଦତ୍ତାତ୍ରେୟଙ୍କ ନିକଟକୁ ପ୍ରେରଣ କଲେ । ଦତ୍ତାତ୍ରେୟ ପର୍ଶୁରାମଙ୍କୁ ବୁଝାଇଲେ ଯେ ପରାଶକ୍ତିଙ୍କ କୃପାବିନା ସତ୍ସଙ୍ଗ ଦୁର୍ଲଭ । ସାଂସାରିକ ମୋହ ଜୀବକୁ ସର୍ପ ରୂପରେ ଦଂଶନ କରେ । ଏହି ମୋହରୁ ନିବୃତ୍ତି ପାଇଁ ସ୍ୱବିଚାର ଆବଶ୍ୟକ ।

---

(୮) ବାଲ୍ମୀକି ରାମାୟଣ ମୂଳ : ଅଷ୍ଟପଞ୍ଚାଶ ସର୍ଗ
(୯) ହେମଚୂଡ଼ାମଣି ଉପାଖ୍ୟାନମ୍ -- ହାରିତ ମହର୍ଷି

ଅବସ୍ଥାରେ ଦ୍ୱାରା ରାକ୍ଷସ ସ୍ୱଭାବ ଜାଗ୍ରତ ହୁଏ । ସ୍ୱଭାବରେ ଦେବତ୍ୱର ପ୍ରତୀକ । ଅବସ୍ଥାରେ ରାମଚନ୍ଦ୍ରଙ୍କୁ ମାୟାମୃଗ ପଛରେ ଧାବମାନ କରାଇଥିଲା । ଦତ୍ତାତ୍ରେୟଙ୍କ ଉପଦେଶ ପରେ ପରଶୁରାମ ବ୍ରହ୍ମାନନ୍ଦ ଲାଭ କରି, ମହେନ୍ଦ୍ରଗିରିରେ ଗୋଟିଏ ମନ୍ୱନ୍ତର କାଳ ପାଇଁ ଆସ୍ଥାନ ସ୍ଥିର କରିଛନ୍ତି । ଆଗାମୀ ମନ୍ୱନ୍ତରରେ ସେ ସପ୍ତର୍ଷିମଣ୍ଡଳରେ ସ୍ଥାନ ପାଇବେ ବୋଲି ମାର୍କଣ୍ଡେୟ ପୁରାଣ, ପଦ୍ମପୁରାଣ, ବ୍ରହ୍ମପୁରାଣ ଓ ବ୍ରହ୍ମାଣ୍ଡପୁରାଣରେ ବର୍ଣ୍ଣିତ । (୧୦) ଆଧ୍ୟାତ୍ମ ରାମାୟଣରେ ମଧ୍ୟ ଏହା ସୂଚିତ ହୋଇଛି ।

**ଆଧ୍ୟାତ୍ମ ରାମାୟଣ :**

ମହର୍ଷି ଶ୍ରୀକୃଷ୍ଣ ଦ୍ୱୈପାୟନ (ବେଦବ୍ୟାସ)ଙ୍କ ରଚିତ ଆଧ୍ୟାତ୍ମ ରାମାୟଣ ଏକ ତତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ । ଏଥିରେ ଅବତାରଣା କରାଯାଇଥିବା ଆଧ୍ୟାତ୍ମିକ ତତ୍ତ୍ୱ ଅନ୍ୟ କୌଣସି ରାମାୟଣରେ ନାହିଁ । କିଷ୍କିନ୍ଧ୍ୟା କାଣ୍ଡ ସପ୍ତମ ସର୍ଗରେ କୃଷ୍ଣଦ୍ୱୈପାୟନ ଉଲ୍ଲେଖ କରିଛନ୍ତି । (୧୧)

ତତୋଽତି ରାଘବେଣୋକ୍ତଃ ପରିକ୍ରମ୍ୟ ପ୍ରଣମ୍ୟ ତମ୍
ପୂଜିତୋ ପ୍ରଦକ୍ଷିଣତୋ ମହେନ୍ଦ୍ରାଚଳ ମଗମାତ୍ ॥ ୫୦ ॥

ଅର୍ଥାତ୍, ରାମଚନ୍ଦ୍ରଙ୍କ ଦ୍ୱାରା ପରାଜିତ ହେବାପରେ, ପରଶୁରାମ ତାଙ୍କଠାରୁ ତଥାସ୍ତୁ ବର ପାଇ, ତାଙ୍କୁ ପ୍ରଦକ୍ଷିଣ ଓ ପ୍ରଣାମ କରି, ତାଙ୍କର ଆଜ୍ଞାରେ ମହେନ୍ଦ୍ର ପର୍ବତକୁ ଗମନ କଲେ । (୧୨) ହନୁମାନଙ୍କ ସମୁଦ୍ରାତିକ୍ରମ ଓ ଲଙ୍କାରେ ସୀତାଠାବ ପ୍ରସଙ୍ଗରେ କବି ଲେଖିଛନ୍ତି—

ଗଚ୍ଛନ୍ତଂ ରାମ କାର୍ଯ୍ୟାର୍ଥଂ ବାୟୁସ୍ତ୍ୱ ମନୁଗଚ୍ଛତୁ ॥ ୨୬ ॥
ଇତ୍ୟାଶୀର୍ଭିଃ ସମାମନ୍ତ୍ୟ ବିସୃଷ୍ଟଃ ପ୍ରବଧାଧିପୈଃ ॥ ୨୭ ॥
ମହେନ୍ଦ୍ରାଦ୍ରି ଶିରେ ଗତ୍ୱା ବଭୂବାଭୁତ ଦର୍ଶନଃ ॥ ୨୮ ॥

ଅର୍ଥାତ୍, ବାନର ଯୂଥପତିମାନେ ଆଶୀର୍ବାଦ କଲେ—ହେ ବାୟୁକୁମାର ! ରାମଙ୍କ କାର୍ଯ୍ୟରେ ଯାଉଅଛ, ତୁମକୁ ବାୟୁ ଅନୁଗମନ କରନ୍ତୁ । ତା ପରେ ବଦାୟ

---

(୧୦) ହେମଚୂଡ଼ା ଉପାଖ୍ୟାନମ୍ ଅନୁବାଦକ-(ତେଲୁଗୁ ଭାଷାରେ) ପୁରାଣାଚାର୍ଯ୍ୟ ପଣ୍ଡିତ ଶ୍ରୀ ରାମମୂର୍ତ୍ତି ଶର୍ମା

(୧୧) ଆଧ୍ୟାତ୍ମ ରାମାୟଣ : ଅନୁବାଦକ ଶ୍ରୀ କାଶୀନାଥ ଦାସ, ପୃ-୭୮

(୧୨) Ibid

ଉଅନ୍ତେ ହନୁମାନ ମହେନ୍ଦ୍ର ଗିରି ଶିଖରକୁ ଉଠି ଏକ ଅଦ୍ଭୁତ ରୂପ ଧାରଣ କଲେ ଓ ଦକ୍ଷିଣ ଦଗେ ଗମନ କଲେ ।

ମୂଳ ରାମାୟଣରେ ବର୍ଣ୍ଣିତ ହନୁମାନ ଲମ୍ଫ ପ୍ରଦାନ ବିଷୟ ଏଠାରେ ନଥିଲେ ମଧ୍ୟ, ମହେନ୍ଦ୍ର ଗିରିରୁ ସେ ଲଙ୍କା ଅଭିଯାନ କରିବା ସୁସ୍ପଷ୍ଟ । ରାମାୟଣ ଯୁଗପରେ ମହାଭାରତ ଯୁଗରେ ମଧ୍ୟ ମହେନ୍ଦ୍ରର ପ୍ରାଧାନ୍ୟ ସ୍ୱୀକୃତ ହୋଇଛି ।

**ମହାଭାରତ :**

ମହାଭାରତ ଭାରତୀୟ ଇତିହାସ ଓ ଭୂଗୋଳର ଏକ ମୂର୍ତ୍ତିମନ୍ତ ମୁକୁର । ମହାଭାରତ ରଚନା କାଳରେ ଏହା ଏକମାତ୍ର ମୌଳିକ ପୁରାଣ ଥିଲା । ମହାଭାରତରେ ଭାରତବର୍ଷ ସମେତ ପୃଥିବୀର ସମସ୍ତ ତୀର୍ଥର ବର୍ଣ୍ଣନା ରହିଛି । ଏହି ମହତ୍ତ୍ୱ ଗ୍ରନ୍ଥ ଅବଲମ୍ବନରେ ପରବର୍ତ୍ତୀ ଅନେକ ଐତିହାସିକ ତଥ୍ୟ ସ୍ଥିର କରାଯାଇଛି । ମହେନ୍ଦ୍ର ଗିରି ପରିପ୍ରେକ୍ଷୀରେ ବିଚାର କଲେ ଏହା ପର୍ଶୁରାମଙ୍କ ନିବାସ ସ୍ଥଳ ବୋଲି ବୁଝାଯିବ । ଯଥା—

ରହସ୍ୟଂ ଶ୍ରୁତ୍ୱ୍ୟଂ ରାଜନ୍ ଦେବାନାମିତନଃ ଶ୍ରୁତମ୍,
ତତ୍ତେ'ତେ କଥୟିଷ୍ୟାମି ନମସ୍କୃତ୍ୟ ସ୍ୱୟମ୍ଭୁବେ । ୩ ।
ତ୍ରିଃ ସପ୍ତକୃତ୍ୱଃ ପୃଥିବୀଂ କୃତ୍ୱା ନିଃକ୍ଷତ୍ରିୟାଂ ପୁରା,
ଜମଦଗ୍ନେ। ସୁତସ୍ତେପେ ମହେନ୍ଦ୍ରେ ପର୍ବତୋତ୍ତମେ । ୪ ।
ତଦାନ କ୍ଷତ୍ରିୟେ ଲୋକେ ଭାର୍ଗବେଣ କୃତେଯତ
ବ୍ରାହ୍ମଣାନ୍ କ୍ଷତ୍ରିୟା ରାଜନ୍ ସୁଧାଧନୋ ଅଭିଚକ୍ରମୁଃ ॥ ୫ ॥

ଅର୍ଥାତ୍, ଜନ୍ମେଜୟଙ୍କ ପ୍ରଶ୍ନ ଉତ୍ତରରେ ବୈଶମ୍ପାୟନ କହନ୍ତି— ହେ ମହାରାଜ ! ଦେବଗଣଙ୍କ ଠାରୁ ଶୁଣିଥିବା ଏକ ରହସ୍ୟପୂର୍ଣ୍ଣ କଥା ସ୍ୱୟମ୍ଭୁଙ୍କ ନିକଟରେ ପ୍ରାର୍ଥନା ପୂର୍ବକ କହିବି ଶୁଣନ୍ତୁ । (୧୩) ପୂର୍ବକାଳରେ ଭାର୍ଗବଙ୍କ ଦ୍ୱାରା ସମସ୍ତ ଅଞ୍ଚଳ ନିଃକ୍ଷତ୍ର ହୋଇଥିଲା । ପର୍ଶୁରାମ ସମସ୍ତ କ୍ଷତ୍ରିୟ ରାଜାଙ୍କୁ ପରାଜୟ କରି ଏହି ଅଞ୍ଚଳରେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । କ୍ଷତ୍ରିୟ ସଂହାର ପରେ ସେ ମହେନ୍ଦ୍ରରେ ଅବସ୍ଥାନ କରନ୍ତି । ଦ୍ୱାପର ଯୁଗରେ ମହେନ୍ଦ୍ର ଗିରି ଏକ ଧନୁର୍ବେଦ ଶିକ୍ଷାକେନ୍ଦ୍ର ଥିଲା ଓ ଏଠାକୁ ସମସ୍ତ ଯୋଦ୍ଧାଙ୍କର, ମହର୍ଷିଙ୍କ ଆଗମନ ଘଟିଥିଲା । ଏ ସମ୍ପର୍କରେ ମହାଭାରତ କହେ— (୧୪)

---

(୧୩) ମହାଭାରତମ୍—ଆଦ୍ୟପର୍ବ ଚତୁଃଷଷ୍ଠିତମ ଅଧ୍ୟାୟ-ପୃ-୮୧ (ଗୀତା ପ୍ରେସ୍)
(୧୪) Ibid—ଆଦ୍ୟପର୍ବ—ଏକୋନବିଂଶତ୍ୟଧିକ ଶତତମ ଅଧ୍ୟାୟ

ସ ରାମସ୍ୟ ଧନୁର୍ବେଦଂ ଦ୍ରବ୍ୟାନ୍ୟସ୍ତ୍ରାଣି ଚୈବହି ।
ଶୁଶ୍ରୁବାଂଶ୍ଚେଷ୍ଟ ମନଃଶ୍ରୁତ୍ଯେ ନୀତିଶାସ୍ତ୍ରେ ତଥୈବ ଚ ॥ ୫୨ ॥
ତତଃ ସ ବୃତଭିଃ ଶିଷ୍ୟୈଃ ବୃପେ ଯୁକ୍ତୋ ମହାତପାଃ,
ବୃତ୍ତଃ ପ୍ରାସ୍ଥାନ୍ ମହାବାହୁ ମହେନ୍ଦ୍ରମ୍ ପର୍ବତୋତ୍ତମମ୍ ॥ ୫୩ ॥
ତତୋ ମହେନ୍ଦ୍ର ମାସାଦ୍ୟ ଭାରଦ୍ୱାଜୋ ମହାତପାଃ ।
ଶାନ୍ତଂ ଦାନ୍ତଂ ଅଭିନ୍ନଘ୍ନମ୍ ପଶ୍ୟଦ୍ ଭୃଗୁନନ୍ଦନମ୍ ॥ ୫୪ ॥

ଅର୍ଥାତ୍, ଜନ୍ମେଜୟଙ୍କ ପ୍ରଶ୍ନୋତ୍ତରରେ ବୈଶମ୍ପାୟନ କହନ୍ତି—ସେହି ପଶୁରାମଙ୍କର ଧନୁର୍ବେଦ ଦ୍ରବ୍ୟ ଅସ୍ତ୍ର ବିଷୟରେ ନୀତିଶାସ୍ତ୍ରରେ ମଧ୍ୟ କୁହାଯାଇଛି । ତା ପରେ ସେହି ମହାବାହୁ ମହାତପସ୍ୱୀ ଶିଷ୍ୟମାନଙ୍କ ସହିତ ମହେନ୍ଦ୍ରାଞ୍ଚଳରେ ତପସ୍ୟାରେ ନ୍ୟସ୍ତଥିଲେ । ମହାତପସ୍ୱୀ ଭରଦ୍ୱାଜ ମହେନ୍ଦ୍ରପର୍ବତକୁ ଆସିଥିଲେ ଏବଂ ଭୃଗୁନନ୍ଦନଙ୍କୁ ଦେଖିଥିଲେ । ମହେନ୍ଦ୍ରରେ ପଶୁରାମଙ୍କ ବସତି ସ୍ଥାପନ ସମ୍ପର୍କୀୟ ରାମାୟଣର ବୃତ୍ତାନ୍ତ ମହାଭାରତରେ ମଧ୍ୟ ପୁନରାବୃତ୍ତି ଘଟିଛି । କୁହାଯାଇଛି—

ଅସ୍ମିନ୍ ମହେନ୍ଦ୍ରେ ଶୈଳେନ୍ଦ୍ରେ ବସତ୍ୟମିତ ବିକ୍ରମଃ
ଏବଂ ବୈରାମଭୃତ୍ ତସ୍ୟ ଛନ୍ଦିପ୍ତୋ ଲୋକବାସିଭିଃ ॥ ୧୪ ॥

ପୁନଶ୍ଚ ଏଠାରେ ଦ୍ରୋଣଙ୍କୁ ଅସ୍ତ୍ର ଶିକ୍ଷା ଦିଆଯାଇଥିବା ପ୍ରସଙ୍ଗ ମହାଭାରତର ଏକ ଉଲ୍ଲେଖଯୋଗ୍ୟ ବିଷୟ । ମହେନ୍ଦ୍ରଗିରିର ଅନ୍ୟ ଆକର୍ଷଣୀୟ ବିଷୟ ହେଲା ଯଜ୍ଞାନୁଷ୍ଠାନ । ମହେନ୍ଦ୍ରର ପବିତ୍ରତା ସମ୍ପର୍କରେ କୁହାଯାଇଛି । (୧୫)

"ଅଗସ୍ତ୍ୟ ପର୍ବତୋରମ୍ୟଃ ପୁଣ୍ୟୋ ଗିରିବର ଶିବଃ ॥ ୨୧ ॥
ମହେନ୍ଦ୍ରୋ ନାମୋ କୌରବ୍ୟ ଭାର୍ଗବସ୍ୟ ମହାତ୍ମନଃ ।
ଅଯ୍ଜତ ତତ୍ର କୌନ୍ତେୟ ପୂର୍ବମେବ ପିତାମହଃ ॥ ୨୨ ॥
ତେଷୁ ନ୍ୟାନ ପୁଣ୍ୟାନ ଦକ୍ଷ ତୀର୍ଥାନୀ ମେ ଶୃଣୁ ।
ସଂଗତଃ ପର୍ବତାଂ ଶ୍ଚୈବ ପୁଣ୍ୟାନ୍ୟାସ୍ତୁ ତନାନ ଚ ॥ ୨୮ ॥

ପୂର୍ବକାଳରେ ବ୍ରହ୍ମାଙ୍କର ଏକ ଯଜ୍ଞସ୍ଥଳ ଥିଲା । ପ୍ରାଚୀତୀର୍ଥ ବର୍ଣ୍ଣନାରେ ମଧ୍ୟ ଏହି ମହେନ୍ଦ୍ରପର୍ବତର ସ୍ଥାନ ଉର୍ଦ୍ଧାରିତ । (୧୬)

ବାଜପେୟୋ ମବାପ୍ନୋତି ଦେବୈଃ ସର୍ବୈଶ୍ଚ ପୂଜ୍ୟତେ ।
ତତୋ ମହେନ୍ଦ୍ର ମାସାଦ୍ୟ ଜାମଦଗ୍ନ୍ୟ ନଷୋବିତମ୍ ॥ ୧୬ ॥

---

(୧୫) ଶ୍ରୀମନ୍ ମହାଭାରତମ୍—ଆଦିପର୍ବ ୧୨୧/୨୨
(୧୬) ଶ୍ରୀମନ୍ ମହାଭାରତମ୍—ପୃ. ୮୪୨/୨୨-୨୮

ଅର୍ଥାତ୍, ପୁଲସ୍ତ୍ୟ କହନ୍ତି, ସମସ୍ତ ପ୍ରକାର ଦେବତାଙ୍କ ଦ୍ୱାରା ପୂଜିତ ଏବଂ ବାଜପେୟ ପ୍ରଭୃତି ଯଜ୍ଞାନୁଷ୍ଠାନମାନଙ୍କ ଦ୍ୱାରା ମହେନ୍ଦ୍ର ଶିଖର ଦେଶ ସୁଶୋଭିତ ଅଟେ । ଅର୍ଜୁନଙ୍କ ତୀର୍ଥାଟନ ଓ ବନ ଭ୍ରମଣ ପ୍ରସଙ୍ଗରେ ଉକ୍ତ ଅଛି । (୧୭)

ମହେନ୍ଦ୍ର ପର୍ବତଂ ଦୃଷ୍ଟ୍ୱା ତାପସୈ ରୁପ ଶୋଭିତମ୍
× × ×
ରକ୍ଷସାଧିପତିଶ୍ଚୈବ ମହେନ୍ଦ୍ର ଗନ୍ଧମାର୍ଦନଃ
ସହଯକ୍ଷୈଃ ସଗନ୍ଧର୍ବୈଃ ସହସର୍ବୈ ନିଶାଚରୈଃ ॥

ଅର୍ଥାତ୍, ରାକ୍ଷସମାନଙ୍କର ଅଧିପତି କୁବେର ଯକ୍ଷ, ଗନ୍ଧର୍ବ ଏବଂ ନିଶାଚରମାନଙ୍କ ସହିତ ମହେନ୍ଦ୍ର ଏବଂ ଗନ୍ଧମାର୍ଦନ ପର୍ବତରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ଏହା ତପସ୍ୟାର ସ୍ଥଳ ରୂପେ ଖ୍ୟାତି ଅର୍ଜନ କରିଛି । ଉକ୍ତ ସଭାରେ କୁବେର ପର୍ଶୁରାମଙ୍କୁ ଉପାସନା କରିଥିଲେ । (୧୮) ଏଠାରେ ଯୁଧିଷ୍ଠିର ପର୍ଶୁରାମଙ୍କୁ ଦର୍ଶନ କରିଥିଲେ ଓ ଭ୍ରାତାମାନଙ୍କ ସହିତ ପର୍ଶୁରାମଙ୍କୁ ପୂଜା କରିଥିଲେ । ଏହା ବୈବସ୍ୱତ ମନୁଙ୍କର ତପସ୍ୟାର ସ୍ଥଳ ଅଟେ । ଉକ୍ତ ଅଛି — (୧୯)

ଅର୍ଚୟିତ୍ୱା ଜାମଦଗ୍ନ୍ୟଂସ ପୂଜିତ ସ୍ତେନ ଚୋଦିତଃ
ମହେନ୍ଦ୍ର ଉଷ୍ୟତାଂ ରାତ୍ରିଂ ପ୍ରୟଯୌ ଦକ୍ଷିଣାମୁଖୌ ॥ (ବନପର୍ବ)

ବାସ୍ତବିକ, ମହାଭାରତରେ ମହେନ୍ଦ୍ରଗିରିକୁ ଏତେ ଗୁରୁତ୍ୱ ଦିଆଯାଇଛି ଯେ ତାହା ପାଣ୍ଡବମାନଙ୍କ ବିହାର ସ୍ଥଳ ହୋଇଯାଇଛି । ଯଥାର୍ଥରେ ଏହି ମହେନ୍ଦ୍ରଗିରିରେ ହିଁ, ମହାଭାରତର ସାମରିକ ଆୟୋଜନ ହୋଇଥିଲା । ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଆଦି ମହାବୀର ସମସ୍ତେ ପର୍ଶୁରାମଙ୍କ ଶିଷ୍ୟ ଅଟନ୍ତି । ଏମାନେ ପ୍ରକାରାନ୍ତରେ ପର୍ଶୁରାମଙ୍କ ଶକ୍ତି ଆହରଣ ପୂର୍ବକ ବଳୀୟାନ ଅଟନ୍ତି । ନିଜେ ପର୍ଶୁରାମ ମହାଦେବ ଶିବଙ୍କ ଶିଷ୍ୟତ୍ୱ ଗ୍ରହଣ କରି ବଳୀୟାନ । ଏହା ବ୍ରହ୍ମ ବୈବର୍ତ୍ତ ପୁରାଣରେ ପ୍ରମାଣିତ ।

## ବ୍ରହ୍ମବୈବର୍ତ୍ତ ପୁରାଣ

ବ୍ରହ୍ମବୈବର୍ତ୍ତ ପୁରାଣ, ପୁରାଣମାନଙ୍କ ମଧ୍ୟରେ ରାଜସ ପୁରାଣ ରୂପେ ପରିଚିତ ଯେହେତୁ ଏହା ବ୍ରହ୍ମାଙ୍କ ଉପରେ ଆଧାରିତ (ବିଷ୍ଣୁ ସାତ୍ତ୍ୱିକ, ଶିବ ତାମସିକ) ।

---

(୧୭) ଶ୍ରୀମନ୍ ମହାଭାରତମ୍ — ଅଦି ପର୍ବ

(୧୮) Ibid— ସଭାପର୍ବ

(୧୯) Ibid— ବନପର୍ବ

ରାଜର୍ଷିକ ସତ୍ତ୍ୱାଧାରଣ କରି ମହାବୀର ପରଶୁରାମ ସମଗ୍ର ପୃଥିବୀକୁ ଜୟ କରିଥିଲେ । କାର୍ତ୍ତବୀର୍ଯ୍ୟ ଜମଦଗ୍ନିଙ୍କୁ ହତ୍ୟା କରିବା ପରେ ପର୍ଶୁରାମ ଜମଦଗ୍ନି ଆଶ୍ରମରୁ ଶିବଲୋକକୁ (ହିମାଳୟ) ଯାଇ ଶିବଙ୍କଠାରୁ କବଚ ପ୍ରାପ୍ତ ହୋଇ କାର୍ତ୍ତିବୀର୍ଯ୍ୟ ସହସ୍ରାର୍ଜୁନଙ୍କୁ ବଧ କରିଥିଲେ । ଇତିମଧ୍ୟରେ ଗଣେଶଙ୍କ ସହ ସଂଘର୍ଷ ହେବା ଫଳରେ ପରଶୁରାମଙ୍କ ପରଶୁ ଆଘାତରେ ଗଣେଶଙ୍କ ଏକ ଦନ୍ତ ଭଗ୍ନ ଘଟିବାରୁ ଅନୁତପ୍ତ ହୋଇଛନ୍ତି । ଶେଷ୍ଟ୍ର ଗଣେଶଙ୍କୁ ସ୍ତୁତିପାଠ ପୂର୍ବକ ସନ୍ତୁଷ୍ଟ କରିବାପରେ ସେ ମହେନ୍ଦ୍ରାଚଳକୁ ଫେରିଥିଲେ । ତାଙ୍କର ଅନ୍ତିମ ସମୟ ମହେନ୍ଦ୍ରଗିରିରେ ଅତିବାହିତ କରିଛନ୍ତି । (୨୦)

ତତ୍କାଳୀନ ରାଜନୈତିକ ପରିସ୍ଥିତିରେ ପ୍ରାକୃତିକ ପରିବେଶର ପ୍ରଭାବ ବର୍ଣ୍ଣିତ ମତ୍ସ୍ୟପୁରାଣର ଅବଦାନ ଦୃଷ୍ଟିରୁ ମତ୍ସ୍ୟାବତାର ଠାରୁ ପର୍ଶୁରାମ ଅବତାର ଯାଏଁ ମହେନ୍ଦ୍ରର ଭୂମିକା ଯଥାର୍ଥରେ ବର୍ଣ୍ଣର ଯୋଗ୍ୟ ।

**ମତ୍ସ୍ୟ ପୁରାଣ :**

ଇତିହାସର ଆଦିମ ଅବସ୍ଥା ବିଗ୍ରହ ଜମନ୍ତେ ମତ୍ସ୍ୟ ପୁରାଣ ହିଁ ସର୍ବାଗ୍ରେ ବର୍ଣ୍ଣନୀୟ । (୨୧) ବାୟୁ ଓ ବ୍ରହ୍ମାଣ୍ଡ ପୁରାଣ ରଚିତ ହେବା ପରେ ଖ୍ରୀଷ୍ଟାବ୍ଦ ୩ୟ ଶତାବ୍ଦୀର ମଧ୍ୟଭାଗରେ ଓ ଏହି ଶତାବ୍ଦୀର ଶେଷ ଭାଗକୁ ମତ୍ସ୍ୟ ପୁରାଣ ରଚିତ ହୋଇଥିଲା । (୨୨)

ମହେନ୍ଦ୍ରଗିରି କୁଳ ପର୍ବତରେ ଯେଉଁ ଆଦିବାସୀ ଶ୍ରେଣୀର ଭୌମ ଓ ପୁଳିନ୍ଦ ଜାତି ଆଗନ୍ତୁକ ଆର୍ଯ୍ୟମାନଙ୍କ ସହିତ ବାସକଲେ ସେମାନଙ୍କୁ 'ଗୁହକ ବା ଗୁହ୍ୟକ' କୁହାଯାଇଥିଲା । ଡ଼କ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ମାହିଷ ନାମକ ଜାତି ଗୁହକମାନଙ୍କ ଶାଖା ଅଟନ୍ତି । ବିଷ୍ଣୁପୁରାଣରେ ମଧ୍ୟ ଏହା ସମର୍ଥିତ । ମତ୍ସ୍ୟ ଓ ବାୟୁପୁରାଣ ଅନୁସାରେ ଏମାନେ ଦକ୍ଷିଣାପଥର ଅଧିବାସୀ ଏବଂ ଏକ ନିର୍ଦ୍ଦିଷ୍ଟ ରାଜବଂଶଜ । (୨୩) ପିତୃ ତର୍ପଣ ପାଇଁ ମହେନ୍ଦ୍ରାଚଳ ଗୋଟିଏ ପୁଣ୍ୟ କ୍ଷେତ୍ରରୂପେ ପରିଚିତ ଥିବା ମତ୍ସ୍ୟ ପୁରାଣରୁ ସୁସ୍ପଷ୍ଟ । ତାହା ବାୟୁପୁରାଣରେ ମଧ୍ୟ ସମର୍ଥିତ । (୨୪)

---

(୨୦) ବ୍ରହ୍ମବୈବର୍ତ୍ତ ପୁରାଣ ଗଣେଶ ଖଣ୍ଡ ଅ ୪୧, ପୃ ୫୦-୫୨

(୨୧) ମତ୍ସ୍ୟ ପୁରାଣ ଓ ମତ୍ସ୍ୟ ପୁରାଣାଙ୍କ-ପୃ ୨୧୨, ଅ. ୫୩

(୨୨) ସଂସ୍କୃତ ସାହିତ୍ୟର ଇତିହାସ—ପଣ୍ଡିତ ପ୍ରମୋଦ କୁମାର ମିଶ୍ର, ପୃ ୨୪

(୨୩) ଓଡ଼ିଶାର ଇତିହାସ—ଡ଼କ୍ଟର ସତ୍ୟନାରାୟଣ ରାଜଗୁରୁ, ପୃ ୬୦

(୨୪) ମତ୍ସ୍ୟ ପୁରାଣ—୨୨/୪୪

ଅତଏବ ମତ୍ସ୍ୟ ପୁରାଣରୁ ଏହି ପ୍ରମାଣ ମିଳେ ଯେ ମହେନ୍ଦ୍ରାଚଳ 'ଗୁହ' ଶବର ଓ 'ପୁଳିନ୍ଦ' ଶବରମାନଙ୍କର ବାସସ୍ଥାନ ଥିଲା । ବର୍ତ୍ତମାନ ଏ ଅଞ୍ଚଳରେ ବାସ କରୁଥିବା ଜାରା ଶବର ସେହି ପୁଳିନ୍ଦମାନଙ୍କ ବଂଶଧର ଅଟନ୍ତି । ମହେନ୍ଦ୍ର ପର୍ବତରୁ ନିର୍ଗତ ମହେନ୍ଦ୍ରତନୟା ନଦୀ କୂଳେକୂଳେ ଯେଉଁ ଆଦିମ ଅଧିବାସୀ ଶବର ଅଛନ୍ତି ସେମାନେ ନିଜକୁ ଜାରା ଶବର ବୋଲି ପରିଚୟ ଦିଅନ୍ତି ।

ମତ୍ସ୍ୟ ପୁରାଣ ଓ ବାୟୁ ପୁରାଣ ଉଭୟେ ସପ୍ତକୁଳାଚଳକୁ ମର୍ଯ୍ୟାଦା ଦିଅନ୍ତି ତେବେ ବାୟୁପୁରାଣରେ କିଛିତ ସ୍ୱାତନ୍ତ୍ର୍ୟ ରହିଛି ।

## ବାୟୁ ପୁରାଣ :

ବାୟୁପୁରାଣକୁ ଭିତ୍ତିକରି ମଧ୍ୟ ମହେନ୍ଦ୍ରାଞ୍ଚଳ ଆଦିବାସୀ ସଭ୍ୟତାର କେନ୍ଦ୍ରସ୍ଥଳ ବୋଲି ପ୍ରମାଣ କରାଯାଇପାରେ । ଏହାର ମାହାତ୍ମ୍ୟ ବର୍ଣ୍ଣାଇ କୁହାଯାଇଛି ।

ମହେନ୍ଦ୍ର ପର୍ବତେ ରମ୍ୟେ ପୁଣ୍ୟେ ଶକ୍ର ନିଷେବିତମ୍
ତସ୍ମାତ୍ତୁଷ୍ୟ ଭବେତ୍ ପ୍ରୀତଃ ଶ୍ରାଦ୍ଧଥୈବ ମହାଫଳମ୍ ।
ବିଲ୍ୱାଖ୍ୟଃ ଶିଖରେ ଯୁକ୍ତା ଦିବ୍ୟଂ ଚକ୍ଷୁଃ ପ୍ରବର୍ତ୍ତିତେ ।
ଅଦୃଶ୍ୟଶ୍ଚୈବ ଭୂତାନାଂ ଦେବାନ୍ ଚରତେ ମସ୍ତମ୍ ॥
ସପ୍ତ ଗୋଦାବରେ ଶ୍ଚୈବ ଗୋକର୍ଣ୍ଣେ ଚ ତପୋବନେ
ଅଶ୍ୱମେଧ ଫଳଂ ତସ୍ମ ସ୍ନାତ୍ୱା ଚ ଲଭତେନରଃ ॥ (୧୫)

ଅର୍ଥାତ୍, ପୂର୍ବେ ମହେନ୍ଦ୍ର ପର୍ବତ ଉପରେ ଗୋଟିଏ ପବିତ୍ର ବିଲ୍ୱ ବୃକ୍ଷ ଥିଲା; ପୁଣି ତାହା ପିତୃଶ୍ରାଦ୍ଧ ସକାଶେ ଏକ ଉତ୍କୃଷ୍ଟ ସ୍ଥଳୀ ଅଟେ । ମାନବ ଏଠାରେ ମୋକ୍ଷ ପ୍ରାପ୍ତ ହୁଅନ୍ତି । ସପ୍ତଗୋଦାବରୀ ଓ ଗୋକର୍ଣ୍ଣ ତୀର୍ଥରେ ସ୍ନାନ ଓ ଅଶ୍ୱମେଧ ଯଜ୍ଞର ଫଳ, ଏଠାରେ ସ୍ନାନ କଲେ ପ୍ରାପ୍ତ ହୁଏ । ଦିବ୍ୟଚକ୍ଷୁ ପ୍ରାପ୍ତ ପାଇଁ ଏହି ସ୍ଥଳ ଶ୍ରେଷ୍ଠ ପ୍ରତିପାଦିତ । (୧୬) ପୁନଶ୍ଚ ଏଠାର ଜନପଦ ବିଷୟରେ କୁହାଯାଇଛି ।

"କଳିଙ୍ଗା ମହିଷାଶ୍ଚୈବ ମହେନ୍ଦ୍ର ନିଳୟାଶ୍ଚ ଯେ
ଏତାନ୍ ଜନପଦାନ୍ ସର୍ବାନ୍ ପାଳୟିଷ୍ୟତି ବୈ ଗୁହାଃ" ॥

'ଗୁହ', 'ଗୁହ୍ୟକ', ମହିଷ ଓ ମହେନ୍ଦ୍ର ନିଳୟ ସମ୍ପର୍କେ ସବିସ୍ତୃତ ବିବରଣୀ ପାଇଁ ଗୁହକ ରାଜାଙ୍କ ସମୟର ଜନପଦମାନଙ୍କର ସୃଷ୍ଟି, ମହେନ୍ଦ୍ର ପରିପ୍ରେକ୍ଷୀରେ ଜାଣିବା ପାଇଁ ମାର୍କଣ୍ଡେୟ ପୁରାଣ ଅନୁଧ୍ୟାନ ଆବଶ୍ୟକ ।

---

(୧୫) ବାୟୁ ପୁରାଣ ୭୨/୧୨/୧୮
(୧୬) —ଏକକ—

## ମାର୍କଣ୍ଡେୟ ପୁରାଣ :

ମାର୍କଣ୍ଡେୟ ପୁରାଣ ଭାରତବର୍ଷ ଉପଦ୍ୱୀପର ଉପସ୍ଥିତିକୁ କଚ୍ଛପ ଆକାର ବୋଲି ବର୍ଣ୍ଣନା କରେ । (୨୭) ଏ ପୁରାଣରେ ବର୍ଣ୍ଣିତ ମଧ୍ୟଦେଶ ଲଙ୍କା ଓ ମହେନ୍ଦ୍ର ମଧ୍ୟରେ ଅବସ୍ଥିତ । ଏହା ଆବୁଲ ଫଜଲଙ୍କ ଦ୍ୱାରା ସମର୍ଥିତ । ଏହି ପୁରାଣ ଅନୁଯାୟୀ ଦ୍ୱୀପମାନେ ସମୁଦ୍ରଠାରୁ ବିଚ୍ଛିନ୍ନ । ଏହି ପୁରାଣ ବାୟୁ ପୁରାଣ ଭଳି କୁଳାଚଳମାନଙ୍କୁ ସ୍ୱତନ୍ତ୍ର ଆସନ ଦିଆଯାଇଛି । (୨୮)

ମହେନ୍ଦ୍ରୋ ମଳୟଃ ସହ୍ୟଃ ଶୁକ୍ତିମାନୃକ୍ଷ ପର୍ବତଃ ।
ବିନ୍ଧ୍ୟଶ୍ଚ ପାରିଯାତ୍ରଶ୍ଚ ସପ୍ତୈବାତ୍ର କୁଳାଚଳା । (୨୯)

ଅନ୍ୟାନ୍ୟ ପୁରାଣ, ଯଥା—ବାୟୁ, ମତ୍ସ୍ୟ, ବ୍ରହ୍ମାଣ୍ଡ ପୁରାଣ ସମେତ ମାର୍କଣ୍ଡେୟ ପୁରାଣମାନଙ୍କରେ ପୃଥିବୀ ତଥା ଭାରତର ଭୌଗୋଳିକ ସ୍ଥିତି ଓ ତତ୍‌ସମ୍ପର୍କୀୟ ଜ୍ଞାନ ବିସ୍ତୃତ ଭାବେ ବର୍ଣ୍ଣିତ ଯାହା ପାଶ୍ଚାତ୍ୟ ଭୂଗୋଳବିତ୍‌ଙ୍କ ଦ୍ୱାରା ସ୍ୱୀକୃତ । (୩୦) ପୃଥିବୀର ଜନପଦମାନଙ୍କର ବିବରଣୀ ମତ୍ସ୍ୟ, ବାୟୁ, ମାର୍କଣ୍ଡେୟ ଓ ବ୍ରହ୍ମାଣ୍ଡ ପୁରାଣରେ ପ୍ରାୟତଃ ସମାନ । ଏହି ମାର୍କଣ୍ଡେୟ ପୁରାଣକୁ ଭିତ୍ତିକରି ପୃଥିବୀର ଭୂଗୋଳ ସୃଷ୍ଟି ହୋଇଥିବା କମ୍ ଗୌରବର କଥା ନୁହଁ । (୩୧)

ବର୍ତ୍ତମାନ ସପ୍ତମ ବୈବସ୍ୱତ ମନ୍ୱନ୍ତରର ମହର୍ଷି ହେଲେ କଶ୍ୟପ, ଅତ୍ରୀ, ଭରଦ୍ୱାଜ, ବିଶ୍ୱାମିତ୍ର, ଗୌତମ, ଜମଦଗ୍ନି, ବଶିଷ୍ଠ । (୩୨) ବାୟୁ, ବରାହ, ବାମନ, ସ୍କନ୍ଦ ଇତ୍ୟାଦି ସମସ୍ତ ପୁରାଣରେ ମଧ୍ୟ ଏହା ସ୍ୱୀକୃତ । ଆଗାମୀ ଅଷ୍ଟମ ମନ୍ୱନ୍ତର ବା ସାବର୍ଣ୍ଣୀ ମନ୍ୱନ୍ତର ପ୍ରବେଶ ହେବାଯାଏ ପର୍ଶୁରାମ ମହେନ୍ଦ୍ର ପର୍ବତରେ ତପସ୍ୟାରତ ଥିବେ । ତପସ୍ୱୀ ହେତୁ ସେ ରାମ, କୃଷ୍ଣଙ୍କ ଭଳି ପୂଜା ପାଆନ୍ତି ନାହିଁ । ଆଗାମୀ ମନ୍ୱନ୍ତରରେ ସେ ଅନ୍ୟାନ୍ୟ ଦେବତାଙ୍କ ଭଳି ପୂଜାପାଇବେ ଏବଂ ସପ୍ତର୍ଷି ମଣ୍ଡଳରେ ସ୍ଥାନ ଲଭ

---

(୨୭) Geography of Puranas : S. M. Ali, P. 132.

(୨୮) Historical Tradition of India : F. E. Pargitor.

(୨୯) Geography of Puranas with reference to Markandaya Purana : S. M. Ali

(୩୦) Historical Tradition of India : F. E. Pargitor.

(୩୧) Geography of Puranas : S. M. Ali.

(୩୨) ମାର୍କଣ୍ଡେୟ ପୁରାଣ, ଅ. ୭୨, ପୃ. ୨୨୮

କରିବେ । ଉକ୍ତ ସପ୍ତର୍ଷି ମଣ୍ଡଳରେ ପର୍ଶୁରାମଙ୍କ ସହ ବ୍ୟାସ, ଗାଳବ, କୃପାଚାର୍ଯ୍ୟ, ଋଷ୍ୟଶୃଙ୍ଗ, ଦ୍ରୋଣ ଓ ଦୀପ୍ତିମାନ ମଧ୍ୟ ସ୍ଥାନ ପାଇବେ । ମାର୍କଣ୍ଡେୟ ପୁରାଣ କହେ—

ରାମୋ, ବ୍ୟାସ, ଗାଲବଶ୍ଚ, କୃପାଚାର୍ଯ୍ୟ
ଋଷ୍ୟଶୃଙ୍ଗ ତଥା ଦ୍ରୋଣ ତତ୍ର ସପ୍ତର୍ଷୟୋଦ୍ଭବ । (୩୩)

ସର୍ବୋପରି ବର୍ତ୍ତମାନ ମହେନ୍ଦ୍ରରେ ତପସ୍ୟାରତ ପର୍ଶୁରାମଙ୍କ ଭବିଷ୍ୟତ ସମ୍ପର୍କରେ ବ୍ରହ୍ମପୁରାଣରୁ ସୂଚନା ମିଳେ ।

## ବ୍ରହ୍ମ ପୁରାଣମ୍ :

ବ୍ରହ୍ମପୁରାଣରେ ସୃଷ୍ଟିକ୍ରମଠାରୁ ଆରମ୍ଭ କରି ବଂଶ ବର୍ଣ୍ଣନା, କର୍ତ୍ତବ୍ୟ ବର୍ଣ୍ଣନା ଓ ତୀର୍ଥ ବର୍ଣ୍ଣନାଦି ସହ ମହେନ୍ଦ୍ରଗିରି ସମ୍ପର୍କରେ ବି ଉଲ୍ଲେଖ ଅଛି । ଜମ୍ବୁଦ୍ୱୀପ ଓ ଭାରତ ବର୍ଣ୍ଣନାରେ ବିଷ୍ଣୁ, ମାର୍କଣ୍ଡେୟ, ବାୟୁ, ବ୍ରହ୍ମାଣ୍ଡ ଓ ଅନ୍ୟାନ୍ୟ ଅଷ୍ଟାଦଶ ପୁରାଣ ମହାଭାରତ ଓ ରାମାୟଣ ଆଦି ଗ୍ରନ୍ଥରେ ଯାହା ରହିଛି, ସେସବୁ ବ୍ରହ୍ମ ପୁରାଣରେ ସମର୍ଥିତ । (୩୪)

ସକଳ ତୀର୍ଥ ବର୍ଣ୍ଣନାରେ ଏହାକୁ ହରଙ୍କ ତୀର୍ଥଭାବରେ ବର୍ଣ୍ଣନା କରିଛନ୍ତି । ମହେନ୍ଦ୍ରରୁ ନିର୍ଗତ ନଦୀସମୂହ ପୁଣ୍ୟତୋୟା ଓ ସ୍ୱତନ୍ତ୍ର ମର୍ଯ୍ୟାଦା ସମ୍ପନ୍ନା । ଏହି ସୂଚନା ପୂର୍ବକ ବ୍ରହ୍ମ ପୁରାଣ କହେ—

"ତ୍ରିଶୂଳଧାରଂ ମହେନ୍ଦ୍ରଂ ଦେବସ୍ଥାନମ୍ କୁଣାଳସ୍ୟମ୍" । (୩୫) ବ୍ରହ୍ମ ପୁରାଣକୁ ଆଦି ପୁରାଣ କୁହାଯାଏ । ତେଣୁ ଏହି ଆଦି ଗ୍ରନ୍ଥ ଯେଉଁ ପ୍ରମାଣ ଦିଏ ତାହାହିଁ ଅନ୍ୟାନ୍ୟ ପୁରାଣ ଓ ଭୂଗୋଳ ଶାସ୍ତ୍ରରେ ପରିଦୃଷ୍ଟ । ଏହି ପରିପ୍ରେକ୍ଷୀରେ ଶ୍ରୀହରିଙ୍କ ପୁରାଣ ବିଗ୍ରହଧାରୀ ପୁରାଣମସ୍ୟ ସ୍ୱରୂପ ଜାଣିବା ପାଇଁ ପଦ୍ମପୁରାଣ ଆଲୋଚନାର ଆବଶ୍ୟକତା ରହିଛି ।

## ପଦ୍ମ ପୁରାଣ :

ପଦ୍ମପୁରାଣର ସ୍ୱର୍ଗ ଖଣ୍ଡରେ ସୃଷ୍ଟିର କ୍ରମକୋଶ, ଜମ୍ବୁଦ୍ୱୀପରେ ଭାରତ ବର୍ଷର ସ୍ଥାନ ଓ ବଶିଷ୍ଠଙ୍କ ଦ୍ୱାରା ପୁଷ୍କର ତୀର୍ଥର ବର୍ଣ୍ଣନା ସହ ଭାରତବର୍ଷର ସପ୍ତ-

---

(୩୩) ମାର୍କଣ୍ଡେୟ ପୁରାଣ ଟୀକା : ଡକ୍ଟର ରାମକୃଷ୍ଣ ଉପାଧ୍ୟାୟ, ପୃ ୨୫୭
(୩୪) ବ୍ରହ୍ମପୁରାଣମ୍ : ଏକୋନବିଂଶତି ଅଧ୍ୟାୟ, ପୃ ୧୪୦
(୩୫) ବ୍ରହ୍ମପୁରାଣମ୍ : ଶ୍ଲୋକ-୧୮/୪୭/୦୭୨

କୁଳାଚଳର ବର୍ଣ୍ଣନା ରହିଛି । (୩୬) ଏହି କୁଳପର୍ବତକୁ କେନ୍ଦ୍ର କରି ଅନ୍ୟାନ୍ୟ ସହ୍ୟାଦ୍ରି ପର୍ବତ ଏବଂ ସେହି ପର୍ବତମାଳାରୁ ନିର୍ଗତ ପୁଣ୍ୟତୋୟା ନଦୀମାନଙ୍କର ମଧ୍ୟ ଉଲ୍ଲେଖ ରହିଛି । ତନ୍ମଧ୍ୟରେ ଉତ୍କଳ, କୋଶଳ, କଳିଙ୍ଗ ଦେଶମାନଙ୍କର ପ୍ରାଧାନ୍ୟ ମଧ୍ୟ ରହିଛି । ତତ୍ସଙ୍ଗେ ସଙ୍ଗେ ନଦନଦୀ, ଜନପଦମାନଙ୍କ ସହ ପୁଳିନ୍ଦ ଜନପଦର ମଧ୍ୟ ଉଲ୍ଲେଖ ଅଛି । ଏଥିରେ ତୀର୍ଥାଟନ ଉପରେ ଗୁରୁତ୍ୱ ଦିଆଯିବା ସଙ୍ଗେ ସଙ୍ଗେ ସମସ୍ତ ପୁରାଣର ବିରାଟ ଶ୍ରୀହରିଙ୍କ ଅବୟବ ରୂପେ ବର୍ଣ୍ଣନା ଦିଆଯାଇଛି । (୩୭) ଏ ପର୍ଯ୍ୟାନ୍ତରେ ପୃଥିବୀର ପ୍ରାକୃତିକ ପରିସ୍ଥିତି ଜାଣିବା ପାଇଁ ସ୍କନ୍ଦପୁରାଣର ଆବଶ୍ୟକତା ରହିଛି ।

## ସ୍କନ୍ଦ ପୁରାଣ :

ଏହି ପୁରାଣରେ ଧ୍ୟାନ, ଯଜ୍ଞ, ଜ୍ଞାନ ଯଜ୍ଞ ଓ ଅଗ୍ନି ଯଜ୍ଞ ଦ୍ୱାରା କିପରି ଶିବ ପ୍ରାପ୍ତି ହେବ, ତାର ଉପାୟ କୁହାଯାଇଛି । ଏଥିରେ ମଧ୍ୟ ସକଳ ତୀର୍ଥ ବୃତ୍ତାନ୍ତ, ମନ୍ଦିର-ମାଳା, ବିଷୟ ବର୍ଣ୍ଣିତ ଓ ଭୌଗୋଳିକ ବିବରଣୀ ସହ ଇତିହାସର ଅବତାରଣ ଚମତ୍କାର ଭାବରେ ଉପସ୍ଥାପିତ । ବିଶେଷତଃ ଦକ୍ଷିଣ ଭାରତର ହିନ୍ଦୁଧର୍ମ କେନ୍ଦ୍ର ଓ ତୀର୍ଥକ୍ଷେତ୍ର ସଙ୍ଗେ ସଙ୍ଗେ 'ଉତ୍କଳ ଖଣ୍ଡ'ରେ ଉତ୍କଳର ପ୍ରତ୍ୟେକ ଅଂଶର ଭଗବତ୍ ପୀଠର ବର୍ଣ୍ଣନା ମାନ ମିଳେ । ଭୁବନେଶ୍ୱର ଶୈବ କ୍ଷେତ୍ର, ପୁରୁଷୋତ୍ତମକ୍ଷେତ୍ର (ଶ୍ରୀଜଗନ୍ନାଥ) ବିଶେଷ କରି ବ୍ରହ୍ମୋତ୍ତର ଖଣ୍ଡରେ ଅନ୍ୟ ଅଞ୍ଚଳର ବିବରଣୀ ପ୍ରଦତ୍ତ ହୋଇଛି । ବୈଷ୍ଣବ କ୍ଷେତ୍ର ଓ ଶୈବ କ୍ଷେତ୍ରର ପ୍ରତୀକ ଏହି ମହେନ୍ଦ୍ରଗିରି ପର୍ଣ୍ଣବ୍ରମ କ୍ଷେତ୍ର ହିସାବରେ ଶ୍ରୀକ୍ଷେତ୍ରର ଏକ ଉତାଂଶ ହିସାବରେ ସବୁଜ ନୀଳ କନ୍ଦରରେ ନୀଳମାଧବଙ୍କ ବୋଲି କୁହାଯାଇଛି । ଏହି ଗ୍ରନ୍ଥ ଭାରତର ସାମାଜିକ, ଆଧ୍ୟାତ୍ମିକ ଓ ରାଜନୈତିକ ପରମ୍ପରାର ଦିଗ୍‌ଦର୍ଶନ ରୂପେ ପ୍ରତୀୟମାନ । ଏ କ୍ଷେତ୍ରରେ ବରାହ ପୁରାଣର ଅବଦାନ କମ୍ ନୁହେଁ ।

---

(୩୬) ସଂକ୍ଷିପ୍ତ ପଦ୍ମପୁରାଣ : ସ୍ୱର୍ଗକାଣ୍ଡ-ପୃ ୨୨୧

(୩୭) ପଦ୍ମପୁରାଣମ୍ : ଶ୍ରୀହରିଙ୍କ ବିରାଟ ବର୍ଣ୍ଣନା । ପୁରାଣ୍‌ ରେହଧ୍ୟାରୀ ଶ୍ରୀହରି । (୧)ଶ୍ରୀହରିଙ୍କ ମସ୍ତକ—ବ୍ରହ୍ମ ପୁରାଣ, (୨) ହୃଦୟ—ପଦ୍ମ ପୁରାଣ, (୩) ଦକ୍ଷିଣ ଭୁଜ—ବିଷ୍ଣୁ ପୁରାଣ, (୪) ବାମ ଭୁଜ—ଶିବ ପୁରାଣ, (୫) ଉରୁଯୁଗଳ—ଶ୍ରୀମଦ୍ ଭାଗବତ, (୬) ନାଭି—ନାରଦୀୟ ପୁରାଣ, (୭) ଦକ୍ଷିଣଚରଣ—ମାର୍କଣ୍ଡେୟ ପୁରାଣ (୮) ବାମଚରଣ—ଅଗ୍ନି ପୁରାଣ, (୯) ଦକ୍ଷିଣ ଅଣ୍ଟୁ—ଭବିଷ୍ୟ ପୁରାଣ, (୧୦) ବାମ ଅଣ୍ଟୁ—ବ୍ରହ୍ମବୈବର୍ତ୍ତ, (୧୧) ଦକ୍ଷିଣ ଗୋଇଠି—ଲିଙ୍ଗ ପୁରାଣ, (୧୨) ବାମ ଗୋଇଠି—ବରାହ ପୁରାଣ, (୧୩) ରୋମ—ସ୍କନ୍ଦ ପୁରାଣ, (୧୪) ଚର୍ମ—ବାମନ ପୁରାଣ, (୧୫) ପିଠି—କୂର୍ମ ପୁରାଣ, (୧୬) ମେଦ—ମତ୍ସ୍ୟ ପୁରାଣ, (୧୭) ମଜ୍ଜା—ଗରୁଡ଼ ପୁରାଣ, (୧୮) ଅସ୍ଥି—ବ୍ରହ୍ମାଣ୍ଡ ପୁରାଣ ।

**ବରାହ ପୁରାଣ :**

ବିଷ୍ଣୁ ବରାହ ରୂପଧାରଣ କରି ପୃଥିବୀ ମାତାଙ୍କୁ ଏହି ପୁରାଣ ଶୁଣାଉଥିଲେ । ବିଷ୍ଣୁଙ୍କର ଅସୀମ ମହିମା ଏଥିରେ ବର୍ଣ୍ଣିତ । ଏଥିରେ ସମସ୍ତ ତୀର୍ଥମାନଙ୍କର ବର୍ଣ୍ଣନା ସହିତ ବୈଚିତ୍ର୍ୟ ବର୍ଣ୍ଣନା ଦେଖିବାକୁ ମିଳେ । (୩୮) ଅଷ୍ଟାଦଶ ପୁରାଣରେ ଯାହା ଭୌଗୋଳିକ ବର୍ଣ୍ଣନା ଦିଆଯାଇଛି ତାହା ଏଥିରେ ମିଳେ । ଭାରତୀୟ ସଂସ୍କୃତିରେ ଗଙ୍ଗା, ଯମୁନା, ସରଯୂ, ନର୍ମଦା, ଗୋଦାବରୀ, ସିନ୍ଧୁ, ସରସ୍ୱତୀ ତଥା କାବେରୀ ଇତ୍ୟାଦିର ଅସୀମ ମହିମାଦି ସହିତ ସୁ-ପ୍ରସିଦ୍ଧ ସପ୍ତକୁଳାଚଳରୁ ପ୍ରବାହିତ ନଦୀମାନଙ୍କ ପ୍ରାଧାନ୍ୟ ଦର୍ଶା-ଯାଇଛି । ସପ୍ତକୁଳାଚଳ ବ୍ୟତୀତ ଅନ୍ୟାନ୍ୟ (୩୯) ଶ୍ରେଷ୍ଠ ଶ୍ରେଷ୍ଠ ପର୍ବତର ବର୍ଣ୍ଣନା ଦିଆଯାଇଛି । ଏସବୁ ପର୍ବତରୁ ପ୍ରବାହିତ ନଦୀମାନଙ୍କର ପବିତ୍ରତା ସମ୍ପର୍କରେ ମଧ୍ୟ ଉଲ୍ଲେଖ କରାଯାଇଛି । (୪୦) ସପ୍ତକୁଳାଚଳ ନଦୀ ବ୍ୟତୀତ ମହେନ୍ଦ୍ରାଚଳରୁ ପ୍ରବାହିତ ନଦୀର ବର୍ଣ୍ଣନା ଦିଆଯାଇଛି ।

ବରାହ ପୁରାଣ ମତାନୁସାରେ ଗୋକର୍ଣ୍ଣ ତୀର୍ଥ ୩ ଭାଗରେ ବିଭକ୍ତ । (୧) ଉତ୍ତର ଗୋକର୍ଣ୍ଣ । (୨) ଦକ୍ଷିଣ ଗୋକର୍ଣ୍ଣ (୩) ଶୃଙ୍ଗେଶ୍ୱର । ଏ ସମସ୍ତ ହିମାଳୟରେ ଅବସ୍ଥିତ । (୪୧) ଗୋକର୍ଣ୍ଣେଶ୍ୱର ବିରାଜିତ ମହେନ୍ଦ୍ରଗିରି ଯଥାର୍ଥରେ ଅନ୍ୟତମ ଗୋକର୍ଣ୍ଣ ତୀର୍ଥର ପ୍ରତୀକ । ଏତଦ୍ ବ୍ୟତୀତ ବୈତରଣୀ ତଟରେ ମଧ୍ୟ ଗୋକର୍ଣ୍ଣ ତୀର୍ଥ ରହିଛି । ସେହି ସ୍ଥାନରେ କି ପାଣ୍ଡବମାନେ ସ୍ନାନ କରି ଉତ୍କଳରେ ପହଞ୍ଚିଥିଲେ । ଏ ପ୍ରସଙ୍ଗ ବାମନ ପୁରାଣ ବିଷ୍ଣୁଙ୍କର ମହିମା କୀର୍ତ୍ତନରେ ପ୍ରାଞ୍ଜଳ ବୋଧହୁଏ ।

**ବାମନ ପୁରାଣ :**

ବାମନ ଅବତାର ବିଷ୍ଣୁଙ୍କର ଅବତାରମାନଙ୍କ ମଧ୍ୟରେ ଅନ୍ୟତମ । ଏହାର ଅବତାରଣାହିଁ ବାମନ ପୁରାଣ ଅଟେ । ଏଥିରେ ଈଶ୍ୱର ସୃଷ୍ଟି ବିଷୟ ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ପୃଥିବୀରେ ମାନବର କର୍ତ୍ତବ୍ୟ, ଯଜ୍ଞ, ଭାରତର ଭୌଗୋଳିକ ପରିସ୍ଥିତି, ମନ୍ୱନ୍ତର ଇତ୍ୟାଦି ବର୍ଣ୍ଣନା ଅନ୍ୟାନ୍ୟ ପୁରାଣ ଭଳି ମିଳେ । (୪୨) ଭଗବାନଙ୍କ

---

(୩୮) Geography of Puranas ; Page 6 with reference Scanda Purana

(୩୯) ବରାହ ପୁରାଣଙ୍କ : ପୃ ୧୫୨-୧୫୩

(୪୦) Ibid ପରିଶିଷ୍ଟ ଦ୍ରଷ୍ଟବ୍ୟ

(୪୧) ଗୋକର୍ଣ୍ଣ ମାହାତ୍ମ୍ୟ : ବରାହ ପୁରାଣଙ୍କ, ପୃ ୩୭୫-୩୯୯

(୪୨) ବାମନ ପୁରାଣ : ୧୩/୨୩-୩୩

ଅବତାର ଓ ତାଙ୍କ ସ୍ୱରୂପ କପରି ଭାବରେ ସାରା ବିଶ୍ୱରେ ବ୍ୟାପ୍ତ ସେ ବିଷୟ ବର୍ଣ୍ଣନା କରି ଭଗବାନ କହନ୍ତି (୪୩) ମୋର ପ୍ରଥମ ବିଶାଳ ମତ୍ସ୍ୟ ରୂପ ମାନସ ସରୋବରରେ ସ୍ଥିତ । ଯାହାର ସ୍ପର୍ଶ କଲା ମାତ୍ରେ ସମସ୍ତ ପାପ ବିନାଶ କରେ । ମୋର କୂର୍ମ ଅବତାର କୌଶିକୀ ନଦୀରେ ବିଦ୍ୟମାନ । ହସ୍ତିନାରେ ଗୋବିନ୍ଦ, କାଳିନ୍ଦୀରେ ତ୍ରିବିକ୍ରମ × × କେଦାର ତୀର୍ଥରେ ମାଧବ । ବଦରିକାଶ୍ରମରେ ନାରାୟଣ × × କୁରୁକ୍ଷେତ୍ରରେ କୁରୁଧ୍ୱଜ, କୃତଶୌଚରେ ନୃସିଂହ, ଗୋକର୍ଣ୍ଣରେ ବିଶ୍ୱକର୍ମା × × ନୈମିଷାରେ ପୀତବାସ, × × × ହିମାଳୟରେ ଶୂଳବାହୁ × × ପବିତ୍ର ମହେନ୍ଦ୍ର ପର୍ବତ ଦକ୍ଷିଣ ଭାଗରେ ଅର୍ଦ୍ଧନାରୀଶ୍ୱର ରୂପ ଓ ମହେନ୍ଦ୍ର ପର୍ବତ ଉପରେ ଉତ୍ତର ଭାଗରେ ସୋମପୀଥି ଗୋପାଳ ବିଦ୍ୟମାନ । (୪୪)

ବାମନ ପୁରାଣରେ କୁହାଯାଇଛି—

ଅର୍ଦ୍ଧନାରୀଶ୍ୱରଂ ପୁଣ୍ୟଂ ମହେନ୍ଦ୍ର ଦକ୍ଷିଣେ ଗିରୌ ।
ଗୋପାଳ ମୂର୍ଦ୍ଧରେ ନିତ୍ୟଂ ମହେନ୍ଦ୍ର ସୋମପୀଥିନମ୍ ॥ ୧୧ ॥

× × ×

ସୈହାଦ୍ରି ପର୍ବତ ଉପରେ ବୈକୁଣ୍ଠ, ପାରିଯାତ୍ରରେ ଅପରାଜିତା, ବିନ୍ଧ୍ୟ ପାଦରେ ସଦାଶିବ ରୂପ, × × × ଇତ୍ୟାଦି ଇତ୍ୟାଦି ବିସ୍ତୃତ ଭାବେ ବର୍ଣ୍ଣିତ ।

ଅର୍ଦ୍ଧନାରୀଶ୍ୱର ଓ ଗୋପାଳ ଏକାଧାରରେ ଅବତାର ଧାରଣ କରିବା ପବିତ୍ର ମହେନ୍ଦ୍ରଗିରି ପ୍ରତି ଗୌରବର ବିଷୟ । ଏହି ପୁରାଣ ସପ୍ତକୁଳାଚଳ ପର୍ବତମାନଙ୍କରେ ଭଗବାନଙ୍କ ସ୍ୱରୂପ ବିଦ୍ୟମାନ ଥିବା ପ୍ରମାଣ ଯୋଗାଏ । ଏହିଭଳି ପବିତ୍ର ତୀର୍ଥରେ ମହାବୀର ପର୍ଶୁରାମଙ୍କ ସ୍ଥିତି ସମ୍ପର୍କରେ ବ୍ରହ୍ମାଣ୍ଡ ପୁରାଣ ଅଧ୍ୟୟନ ଆବଶ୍ୟକ ।

## ବ୍ରହ୍ମାଣ୍ଡ ପୁରାଣ :

ବିଷ୍ଣୁ ପୁରାଣ, ରାମାୟଣ, ମହାଭାରତ ଇତ୍ୟାଦିରେ ପର୍ଶୁରାମଙ୍କ ବିଷୟ ଯାହା ବର୍ଣ୍ଣନା ଦିଆଯାଇଛି ବ୍ରହ୍ମାଣ୍ଡ ପୁରାଣ ମଧ୍ୟ ତାହାକୁ ସମର୍ଥନ ଜଣାଇଛି । ଏହି ପୁରାଣ କହେ । (୪୫)

---

(୪୩) —ଏଜନ—୧୩/୨୩-୩୩
(୪୪) ଶ୍ରୀଶୁକସାଗର : ସ୍କନ୍ଦ ୫ ଅଧ୍ୟାୟ ୧୯, ପୃ ୧୧୮
(୪୫) ବ୍ରହ୍ମାଣ୍ଡ ମହାପୁରାଣମ୍ : ପ୍ରଥମ ଖଣ୍ଡ ଅଧ୍ୟାୟ ୧୮, ଶ୍ଳୋକ ୮୧, ପୃ ୬୧ ଅଧ୍ୟାୟ ୪୬/୪୭

ଭଣ୍ଡନାମକ ଜଣେ ଅସୁରକୁ ବଧ କରିବା ପାଇଁ ମହାମାୟୀ ଦେବୀ ମହେନ୍ଦ୍ର ପର୍ବତରେ ଏକ ଅଗ୍ନି ପ୍ରାଚୀର ସୃଷ୍ଟି କରିଥିବା ବିଷୟ ଏହି ପୁରାଣର ବୈଶିଷ୍ଟ୍ୟ । କାମଗୃହିଣୀ ନାମକ ଦେବୀ ମହେନ୍ଦ୍ରର ଅଧିଷ୍ଠାତ୍ରୀ ଥିଲେ । ଏହା ମତ୍ସ୍ୟ ପୁରାଣକୁ ଭିତ୍ତି କରି ପଣ୍ଡିତମାନେ ମତ ଦିଅନ୍ତି । (୪୬) ଏହି ବ୍ରହ୍ମାଣ୍ଡ ପୁରାଣର ବିଷୟବସ୍ତୁ ସହିତ ବାୟୁ ପୁରାଣର ସାମଞ୍ଜସ୍ୟ ରହିଛି । ଯାହିଁରେ ମହେନ୍ଦ୍ରରେ ତାର ଚତୁଃପାର୍ଶ୍ୱରେ ଗୋଟିଏ ଜନପଦ ଖ୍ୟାତି ଅର୍ଜନ କରିଥିଲା । ଶବର ସଂସ୍କୃତିରେ ଏହାର ବିବରଣୀ ଦିଆଯାଇଛି । ପର୍ଶୁରାମଙ୍କ ମହେନ୍ଦ୍ରରେ ତପଶ୍ଚରଣ ଓ ସାଧନ ପୁଣି ଆଶ୍ରମ ସ୍ଥାପନର ସଙ୍କେତ ଅଦ୍ୟାପି ମହେନ୍ଦ୍ରର ପରିଚୟ ମନ୍ତ୍ର । ପବିତ୍ର ଜଳ ସପ୍ତମୀରେ ଏହି ପର୍ଶୁରାମ କୁଣ୍ଡରେ ସ୍ନାନଯୋଗ (ଭିଡ଼) ପଡେ । ବର୍ତ୍ତମାନ ୯ ଗୋଟି କୁଣ୍ଡ ରହିଛି । ଦୁଇଟି କୁଣ୍ଡକୁ ଘେରି ଦେଇ ଜଳସେଚନ ପ୍ରକଳ୍ପର ବନ୍ଧ ବନ୍ଧାଯାଇଛି । ଏଠାକାର ଦେବୀ ମାହାତ୍ମ୍ୟ ପାଇଁ କୂର୍ମ ପୁରାଣ ଦ୍ରଷ୍ଟବ୍ୟ ।

## କୂର୍ମ ପୁରାଣ :

ବିଷ୍ଣୁ ଭଗବାନ କୂର୍ମ ଅବତାର ଧାରଣ କରି ଲକ୍ଷ୍ମୀଙ୍କ ନିର୍ଦ୍ଦେଶରେ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ ଯାହା ଉପଦେଶ ଦେଇଥିଲେ ତାହା କୂର୍ମ ପୁରାଣାକାରରେ ଉପସ୍ଥାପିତ । ଏଥିରେ ସମସ୍ତ ସ୍ଥାନରେ ଶିବଙ୍କୁ ମୁଖ୍ୟ ଦେବତା ରୂପରେ ଗ୍ରହଣ କରାଯାଇଥିଲେ ମଧ ସ୍ପଷ୍ଟ ଉଲ୍ଲେଖ ଅଛି କି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର କୌଣସି ପ୍ରକାରେ ଭିନ୍ନ ନୁହନ୍ତି । ପ୍ରତ୍ୟେକ ଏକ ଏକ ବ୍ରହ୍ମର ପ୍ରତୀକ ଅଟନ୍ତି । ଏଥିରେ ଶକ୍ତି ପୂଜା ଉପରେ ବିଶେଷ ପ୍ରାଧାନ୍ୟ ଦିଆଯାଇଛି । କୂର୍ମ ପୁରାଣ ଅନୁଯାୟୀ (୪୭) ଭାରତର ସପ୍ତକୁଳାଚଳ ହିମାଳୟ ସହିତ କୂର୍ମାକାରରେ ମେରୁ ସହିତ ବିସ୍ତାରିତ ହୋଇଛି ଓ ଭାରତବର୍ଷର ଜନପଦ ଏହି ସପ୍ତକୁଳାଚଳକୁ ପରିବେଷ୍ଟିତ କରି ରହିଛି । ଏହି ବିଷୟ ବ୍ରହ୍ମାଣ୍ଡ ଅ ୩/୪୯, ଶ୍ରୀମଦ୍ ଭାଗବତ ୫ମ ୧୬-୨୦, ବାମନ ଅ ୧୩, ଅନ୍ୟାନ୍ୟ ପୁରାଣ ଅଷ୍ଟାଦଶ ପୁରାଣରେ ସ୍ୱୀକାର କରାଯାଇଛି । ଏଣୁ ଜନପଦଗୁଡ଼ିକ କୂର୍ମ ସଂସ୍ଥାନ ନାମରେ ଖ୍ୟାତ ।

ଦେବୀ ମାହାତ୍ମ୍ୟ ଓ ଦୁର୍ଗାଦେବୀ ସହସ୍ର ନାମ ସ୍ତୋତ୍ର (୧)ରେ କୂର୍ମ ପୁରାଣ କହେ—

---

(୪୬) ଓଡ଼ିଶାର ଦେବଦେବୀ : ଶୈବପୀଠ ମହେନ୍ଦ୍ରଗିରି

(୪୭) କୂର୍ମ ପୁରାଣ : ପୂର୍ବାର୍ଦ୍ଧ ୨ୟ ଖଣ୍ଡ, ୪୭ ଅଧ୍ୟାୟ

ଦୀକ୍ଷା ବିଦ୍ୟାଧରୀ ଦୀପ୍ତା ମହେନ୍ଦ୍ରବିନିପାତିନୀ
ସର୍ବାଣି ଶାସ୍ତ୍ରିନୀ ବିଶ୍ୱା ସର୍ବସିଦ୍ଧି ପ୍ରଦାୟିନୀ । ୧୦୭ ।
ମହେନ୍ଦ୍ରୋପେନ୍ଦ୍ର ଭଗିନୀ ଭକ୍ତଗମ୍ୟ ପରାତ୍ପରା
ଜ୍ଞାନଜ୍ଞେୟା ଜଗଦାତୀତା ବେଦାନ୍ତ ବିଷୟା ପତିଃ । ୧୧୦ ।
ହେ ଦେବୀ ଦୀକ୍ଷେ ବିଦ୍ୟାଧରୀ ଦୀପ୍ତା
ମହେନ୍ଦ୍ର ବିନିପାତିନୀ, ସର୍ବାଣି ଶାସ୍ତ୍ରିନୀ । ୧୧୭ ।

ଅର୍ଥାତ୍, ସମସ୍ତଙ୍କ ଠାରୁ ଶକ୍ତିଶାଳିନୀ ସୁରକ୍ଷାକାରିଣୀ ଆପଣ । ଏସବୁ ଆପଣଙ୍କର ଶୁଭନାମ ଅଟେ । ହେ ଦେବୀ ଏହି ତ୍ରିଲୋକରେ ଆପଣ ଜ୍ୱାଳମାଳା ସହିତାଙ୍ଗ, ଦେବାଦେବୀ, ମନୋମୟୀ, ମହାଭଗବତୀ, ଭର୍ଗା ବାସୁଦେବ, ସମୁଦ୍ରା, ମହେନ୍ଦ୍ର ଓ ଉପେନ୍ଦ୍ରଙ୍କ ଭଗିନୀ । ଭକ୍ତଦ୍ୱାରା ଜାଣିବାଯୋଗ୍ୟ × × × ଏସବୁ ଆପଣଙ୍କର ପବିତ୍ର ନାମ ଅଟେ (୪୮) (ମହେନ୍ଦ୍ର ପରମ ଐଶ୍ୱର୍ଯ୍ୟଶାଳୀ) । ଯଥାର୍ଥରେ ଗିରିମାନଙ୍କ ମଧ୍ୟରେ ମହେନ୍ଦ୍ରଗିରି ହେଉଛି କୁଳପର୍ବତମାନଙ୍କ ଶିରୋମଣି । ପର୍ବତାଦି ସଂଜ୍ଞା ବର୍ଣ୍ଣନାରେ ଜମ୍ବୁଦ୍ୱୀପ, ସପ୍ତଦ୍ୱୀପ, ସପ୍ତସାଗରାଦି ବର୍ଣ୍ଣନା ମାର୍କଣ୍ଡେୟ ପୁରାଣ ଅନୁରୂପ । (୪୯)

**ଶ୍ରୀମଦ୍ ଭାଗବତ ମହାପୁରାଣମ୍ :**

ଅଷ୍ଟାଦଶ ମହାପୁରାଣ ତଥା ଉପପୁରାଣ ମଧ୍ୟରେ 'ଭାଗବତ ମହାପୁରାଣମ୍' ଅନ୍ୟତମ । ଏହା ସଂସ୍କୃତ ସାହିତ୍ୟର ଏକ ଅନୁପମ ରତ୍ନ ଓ ସର୍ବଜନାଦୃତ । "ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିମ୍", ଏଥିରୁ ପ୍ରାଞ୍ଜଳ ଯେ ବ୍ୟାସଦେବ ଏଥିର ରଚୟିତା । ବ୍ୟାସଦେବ ବେଦକୁ ଚାରି ଭାଗରେ ବିଭକ୍ତ କଲାପରେ ପଞ୍ଚମ ବେଦ ରୂପେ ଭାଗବତକୁ ରଚନା କଲେ । ଶୁକ-ପରୀକ୍ଷିତଙ୍କ ଉକ୍ତି ପ୍ରତ୍ୟୁକ୍ତି ମାଧ୍ୟମରେ ଏହା ବର୍ଣ୍ଣିତ । ଭାରତୀୟଙ୍କ ଅତି ପ୍ରଚଳନାନୁଯାୟୀ ଆଜକୁ ୫୦୦୦ ବର୍ଷ ପୂର୍ବେ ଏହା ପ୍ରଣୀତ । ଅଷ୍ଟାଦଶ ପୁରାଣ ମଧ୍ୟରେ ପଞ୍ଚମ ସ୍ଥାନରେ ଭାଗବତକୁ ରଖାଗଲେ ମଧ୍ୟ କେତେକ ପଣ୍ଡିତ ଦେବୀ ଭାଗବତକୁ ସେହି ସ୍ଥାନରେ ଅବସ୍ଥାପିତ କରିଥାଆନ୍ତି । ତାତ୍ତ୍ୱିକ ଦୃଷ୍ଟିରୁ ମହାକାଶରେ ବାମାଙ୍ଗ ଓ ଦକ୍ଷିଣାଙ୍ଗ ସଦୃଶ (୫୦) ଯଥା—

(୪୮) କୂର୍ମ ପୁରାଣ : ପୃ ୨୫୭
(୪୯) ପୁରାଣ ବିମର୍ଷ : ପୃ ୩୭
Geography of Puranas : Page 32
(୫୦) ଶ୍ରୀମଦ୍ ଭାଗବତ ମହାପୁରାଣମ : କଲ୍ୟାଣ ୬୩, ପୁରାଣ କଥାଙ୍କ ପୃ ୧୮୧

"ଭଗବତଃ' 'ଭଗବତ୍ୟାଃ' ବା ଇଦଂ ଭାଗବତମ୍"

ଏହି ନିରୁକ୍ତିରୁ ଭାଗବତନାମ ଭଗବାନ ବା ଭାଗବତମ୍‌ଙ୍କ ଭାଗବତ୍ତାରେ ତଣତାର୍ଥ ହୁଏ । ଏଣୁ ଏହି ଦୁଇଟି ମହିମା ପାଇଁ ପ୍ରତ୍ୟେକ ବିଷୟରେ ଗୋଟିଏ ଲେଖାଏଁ ମହାପୁରାଣ ରଚନା କରିଛନ୍ତି ।

ଶ୍ରୀମଦ୍ ଭାଗବତ ବୈଷ୍ଣବ ଶାସ୍ତ୍ର ନାମରେ ଅଭିହିତ ହେଲେହେଁ ପ୍ରଭୁପାଦ ଭକ୍ତିବେଦାନ୍ତ ସ୍ୱାମୀ କହନ୍ତି—"The science of God is greater than all other sciences, and this spiritual techonology is rationally and authoritatively explained 18,000 verses of Srimad Bhagabatam, India's sublime contribution of culture philosophy, politics, sociology, religion and love".

ଏଥିରେ ସୃଷ୍ଟି, ଅବତାର, ଅବଧୂତ ଇତିହାସ କଥନ ଓ ଅନ୍ୟାନ୍ୟ ଉପାଖ୍ୟାନ ସହ ୧୨ ଗୋଟି ବିଭାଗରେ ବିଷୟବସ୍ତୁ ଉପସ୍ଥାପନ କରାଯାଇଛି । ଶଂସିତ ମହେନ୍ଦ୍ରଗିରି ପ୍ରସଙ୍ଗରେ ଭାଗବତକାରଙ୍କ ବର୍ଣ୍ଣନାନୁଯାୟୀ ଏହା ଏକ ତୀର୍ଥକ୍ଷେତ୍ର ଓ ପୁଣ୍ୟ କ୍ଷେତ୍ର । ନାରଦ ଯୁଧିଷ୍ଠିରଙ୍କୁ କହନ୍ତି—(୫୧)

ନାରାୟଣ ଶ୍ରମୋ ନନ୍ଦା ସୀତାରାମା ଶ୍ରମାଦୟଃ
ସର୍ବେ କୁଳାଚଳା ରାଜନ୍ ମହେନ୍ଦ୍ର ମଳୟାଦୟଃ ॥ ୩୨ ॥
ଏତେ ପୁଣ୍ୟତମା ଦେଶା ହରେରର୍ଚ୍ଚା ଶ୍ରିତାଶ୍ଚଯେ
ଏତାନ୍ ଦେଶାନ୍ ନିଷେବେତ ଶ୍ରେୟସ୍କାମୋହ୍ୟ ଭୀକ୍ଷ୍ଣଶଃ ॥
ଧର୍ମୋ ହ୍ୟତ୍ରେହିତଃ ପୁଂସାଂ ସହସ୍ରାଧି ଫଳୋଦୟଃ ॥ ୩୩ ॥

ଅର୍ଥାତ୍, ପୁଷ୍କର ଆଦି ସରୋବର ସିଦ୍ଧପୁରୁଷଙ୍କ ଦ୍ୱାରା ସେବିତ କ୍ଷେତ୍ର, କୁରୁକ୍ଷେତ୍ର, ଗୟା, ପ୍ରୟାଗ, ପୁଲହାଶ୍ରମ (ଶାଳଗ୍ରାମ କ୍ଷେତ୍ର) ନୈମିଷାରଣ୍ୟ, ଫାଲଗୁନ କ୍ଷେତ୍ର, ସେତୁବନ୍ଧ, ପ୍ରଭାସ, ଦ୍ୱାରକା, କାଶୀ, ମଥୁରା, ପମ୍ପାସରୋବର, ବିନ୍ଦୁସରୋବର, ବଦ୍ରିକାଶ୍ରମ, ଅଲକାନନ୍ଦା, ଭଗବାନ ସୀତା ରାମଙ୍କ ଆଶ୍ରମ, ଅଯୋଧ୍ୟା, ଜମ୍ବୁକୁଟାଦି, ମହେନ୍ଦ୍ରରୁ ମଳୟ ଆଦି ସପ୍ତକୁଳାଚଳ ପୁଣି ଯେଉଁ ସ୍ଥାନମାନଙ୍କରେ ଭଗବାନଙ୍କ ଅର୍ଚ୍ଚାବତାର ବିଦ୍ୟମାନ, ସେହି ସ୍ଥାନ ଅତ୍ୟନ୍ତ ପବିତ୍ର ଅଟେ । କଲ୍ୟାଣକାମୀ ପୁରୁଷଙ୍କୁ ବାରମ୍ବାର ଏସବୁ ସ୍ଥାନରେ ସେବନ (ସେବନ = ଦର୍ଶନ, + ସ୍ପର୍ଶନ + ମଜ୍ଜନ (ସ୍ନାନ-

---

(୫୧) ଶ୍ରୀମଦ୍ ଭାଗବତମ୍ : ଗୀତାପ୍ରେସ, ପ୍ରଥମ ଖଣ୍ଡ ସପ୍ତମସ୍କନ୍ଧ ୧୪ ଅଧ୍ୟାୟ ୩୨/୩୩

ପାନ) କରିବା ଉଚିତ । ଏହି ସ୍ଥାନମାନଙ୍କରେ ମନୁଷ୍ୟ ଯେଉଁ ପୁଣ୍ୟକର୍ମ କରେ ତାହା ଅନ୍ୟ ସ୍ଥାନମାନଙ୍କ ଅପେକ୍ଷା ହଜାରେ ଗୁଣରେ ପୁଣ୍ୟଫଳ ମିଳିଥାଏ । (୫୨)

ଏତଦ୍ ବ୍ୟତୀତ ପର୍ଶୁରାମଙ୍କ ସମ୍ବନ୍ଧରେ ଭାଗବତରେ ବର୍ଣ୍ଣିତ ଅବଧୂତ ଆଖ୍ୟାନ ଓ ପର୍ଶୁରାମ—ଦତ୍ତାତ୍ରେୟ ସଂପର୍କ "ପର୍ଶୁରାମ ସାଧନା ପୀଠ ପ୍ରସଙ୍ଗରେ ସ୍ୱତନ୍ତ୍ର ଭାବେ ବର୍ଣ୍ଣିତ । ଭାଗବତରେ ପ୍ରଦତ୍ତ ମହେନ୍ଦ୍ରାଶ୍ରମ ଓ ଅଶ୍ୱମେଧ ଯଜ୍ଞାନୁଷ୍ଠାନ ଇତ୍ୟାଦି ବର୍ଣ୍ଣନା ଯଥାସ୍ଥାନରେ ପ୍ରଦତ୍ତ ହୋଇଛି । (୫୩)

ଦେବୀ ଭାଗବତ ପୁରାଣରେ ନବରାତ୍ର ବା 'ନବାହ୍ନ-ଯଜ୍ଞ'ରେ ଯେଉଁ ଫଳ ମିଳେ ତାହା ମହାନ୍ ତପ, ବ୍ରତ, ତୀର୍ଥ, ଦାନ, ହବନ ଓ ଯଜ୍ଞରେ ସେହିଫଳ ମିଳେ ବୋଲି ଦର୍ଶାଇ ଦିଆଯାଇଛି । ଦେବୀ ଭାଗବତ ପୁରାଣରେ ସ୍ଥାନେ ସ୍ଥାନେ ଦେବୀଙ୍କ ବିଭିନ୍ନ ରୂପ ଏବଂ ତାଙ୍କ ଆରାଧନା ବିଷୟ ବର୍ଣ୍ଣିତ । (୩) ଯଥା—ଦୁର୍ଗା, ରାଧା, ଲକ୍ଷ୍ମୀ, ସରସ୍ୱତୀ ଓ ସାବିତ୍ରୀଙ୍କ ପ୍ରାଧାନ୍ୟ ଦିଆଯାଏ । ଅନ୍ୟାନ୍ୟ ରୂପ ମଧ୍ୟରେ ଗଙ୍ଗା, ତୁଳସୀ, ଷଷ୍ଠୀ, ମଙ୍ଗଳ ଚଣ୍ଡିକା, କାଳୀ, ସ୍ୱାହା, ସ୍ୱଧା, ପୁଷ୍ଟି, ତୁଷ୍ଟି ସଂପତ୍ତିଙ୍କ ପ୍ରାଧାନ୍ୟ ଦିଆଯାଇଛି । ଏ ସନ୍ଦର୍ଭରେ ବ୍ରହ୍ମାଣ୍ଡ ପୁରାଣରେ ଦେବୀଙ୍କ ମହେନ୍ଦ୍ର ଚତୁର୍ଦ୍ଦିଗରେ ଅଗ୍ନିପ୍ରାଚୀର ସୃଷ୍ଟି ଓ 'ଭଣ୍ଡ' ଅସୁରର ଉପାଖ୍ୟାନ ବର୍ଣ୍ଣିତ ବିଷୟ ବିଚାର୍ଯ୍ୟ । (୫୪) ବାମନ ପୁରାଣରେ ବର୍ଣ୍ଣିତ 'ଅର୍ଦ୍ଧନାରୀଶ୍ୱର' ରୂପ ମହେନ୍ଦ୍ର ସଂପର୍କିତ ଏହି ଉଭୟ ଭାଗବତର ତତ୍ତ୍ୱ ଉପରେ ହିଁ ସନ୍ନିବେଶିତ । ହରି-ହରଙ୍କ ସମାବେଶ, ନାରାୟଣ-ନାରାୟଣୀଙ୍କ ଭାବ ମୂର୍ତ୍ତି, ଭୈରବୀଙ୍କ ସ୍ଥିତି ଓ ପରିଶେଷରେ ଅର୍ଦ୍ଧନାରୀଶ୍ୱରଙ୍କ ରୂପ—ଏ ସମସ୍ତ ଯେ ସେହି ଶିବ-ଶକ୍ତି ଓ ବୈଷ୍ଣବ-ବୈଷ୍ଣବୀ ରୂପ; ପୁରାଣମାନଙ୍କରେ ପ୍ରଦତ୍ତ । ଏ ପରିସ୍ଥିତିରେ ବିଷ୍ଣୁ ପୁରାଣ, ନାରଦ ପୁରାଣ, ବରାହ ପୁରାଣ ସାମାନ୍ୟ ଆଲୋଚନାର ବିଷୟ ଯେହେତୁ ମହେନ୍ଦ୍ରାଚଳ ଉପରୋକ୍ତ ସମସ୍ତ ତତ୍ତ୍ୱ ସହିତ ସଂପୃକ୍ତ ।

**ବିଷ୍ଣୁ ପୁରାଣ :**

ଏହି ପୁରାଣ ବୈଷ୍ଣବ ଭକ୍ତ କଥା, ଶ୍ରାଦ୍ଧକଳ୍ପ ଓ ବର୍ଣ୍ଣାଶ୍ରମ ଧର୍ମ ବିଷୟରେ ବିସ୍ତୃତ ବିବରଣୀ ଦେଇଥାଏ । ଅବତାରବାଦରେ ପର୍ଶୁରାମାବତାର ଗୃହୀତ । ଏକଥା ସ୍ପଷ୍ଟ ଯେକୌଣସି ପ୍ରୟୋଜନ ନଥାଇ କରୁଣାମୟ ସର୍ବଶକ୍ତିମାନ୍ ପରମାତ୍ମା ଅବତୀର୍ଣ୍ଣ

---

(୫୨) ଶ୍ରୀମଦ୍ ଭାଗବତମ୍ : ଏକାଦଶ ଅଧ୍ୟାୟ ।

(୫୩) ଶ୍ରୀମଦ୍ ଭାଗବତ ମହାପୁରାଣମ୍ : ବ୍ୟାଖ୍ୟା କଲ୍ୟାଣ ୬୩, ପୃ ୧୮୧

(୫୪) ଦେବୀ ଭାଗବତ ପୁରାଣ : ବ୍ୟାଖ୍ୟା Ibid, ପୃ ୧୯୨

ହୁଅନ୍ତି ନାହିଁ । ଧର୍ମ ସଂରକ୍ଷଣ, ସାଧୁ ପରିତ୍ରାଣ, ଦୁଷ୍ଟ ବିନାଶ ସକଳ ଜୀବଙ୍କୁ ଅନୁଗ୍ରହ ପୂର୍ବକ ଯୁଗେ ଯୁଗେ କୃପା କରିଆସନ୍ତି । ଅବତାର ଚରିତ ଅନନ୍ତ ଅଟେ । ଏଠାରେ ବିଷ୍ଣୁ ପୁରାଣରେ ଅନ୍ୟାନ୍ୟ ବିଷୟ ଯାହା ଅନ୍ୟାନ୍ୟ ମହାପୁରାଣରେ ସାଦୃଶ୍ୟ ପରିଲକ୍ଷିତ ତାକୁ ବାଦଦେଇ ଏହି ତୀର୍ଥକ୍ଷେତ୍ରରେ ମନ୍ଦିର ନିର୍ମାଣକାଳୀନ ନିର୍ମାଣଶୈଳୀ ଓ ବିଷ୍ଣୁ ପୁରାଣାନୁଯାୟୀ ସ୍ୱୀକୃତ କ ନୁହ 'ବାସ୍ତୁ ଶାସ୍ତ୍ର' ଓ ଶିଳ୍ପଶାସ୍ତ୍ର ବିଷୟରେ କିଞ୍ଚିତ୍ ଆଲୋକପାତ କରାଗଲା । (୫୫)

ନିବାସ ସ୍ଥାନଙ୍କୁ ବାସ୍ତୁ କୁହାଯାଏ । ତତ୍ ସମ୍ବନ୍ଧୀୟ ଶାସ୍ତ୍ର ବାସ୍ତୁ ଶାସ୍ତ୍ର ଅଟେ । ନଗର ନିର୍ମାଣ ଓ ତତ୍ ସମ୍ବନ୍ଧୀୟ କୂପ-ତଡ଼ାଗ-ଉଦ୍ୟାନ ଇତ୍ୟାଦି ତିଆରି କରିବା ବାସ୍ତୁ ଶାସ୍ତ୍ରର ଅନ୍ତର୍ଭୁକ୍ତ । ଏହାକୁ ସ୍ଥାପତ୍ୟ କଳା କୁହାଯାଏ । ଋକ୍ ବେଦ ଓ ଅଥର୍ବ ବେଦରେ ଏହାର ଉଲ୍ଲେଖ ଅଛି । ବାସ୍ତୁଶାସ୍ତ୍ର ଜ୍ଞାନ ଜିଜ୍ଞାସୁ ସେଗୁଡ଼ିକରେ ମନୋନିବେଶ କରିବେ କିନ୍ତୁ ମହେନ୍ଦ୍ରଗିରିର ସ୍ଥାପତ୍ୟ ସମ୍ପର୍କେ ଅନ୍ୟାନ୍ୟ ପୁରାଣ (ଲିଙ୍ଗ ପୁରାଣ)ର ଉତ୍ତରଭାଗରେ ବର୍ଣ୍ଣନା କରାଯାଇଛି । ମତ୍ସ୍ୟ ପୁରାଣରେ ପ୍ରଦତ୍ତ ଏହି ସ୍ଥାପତ୍ୟ କଳାର ଉପଦେଷ୍ଟାଙ୍କ ତାଲିକା ଅନୁଯାୟୀ ଏମାନେ ଭୃଗୁ,ଅତ୍ରି, ବଶିଷ୍ଠ,ବିଶ୍ୱକର୍ମା, ମୟ, ନାରଦ, ନଗ୍ନଜିତ୍, ଭଗବାନ ଶଙ୍କର, ଇନ୍ଦ୍ର, ବ୍ରହ୍ମା, କୁମାର, ନନ୍ଦୀଶ୍ୱର, ଶୌନକ, ଗର୍ଗ, ବାସୁଦେବ, ଅନିରୁଦ୍ଧ, ଶୁକ୍ର ତଥା ବୃହସ୍ପତି । ଦେବତାମାନଙ୍କ ମଧ୍ୟରେ ଶିଳ୍ପୀ ହେଲେ 'ବିଶ୍ୱକର୍ମା' ଓ ଦାନବମାନଙ୍କ ମଧ୍ୟରେ ମୟ । ଏଣୁ କୁହାଯାଇଛି ବିଶ୍ୱକର୍ମା ଶିଳ୍ପମ୍ ତଥା ମୟ ଶିଳ୍ପମ୍ । (୫୬)

ଏଠାରେ କହିବା ବାହୁଲ୍ୟ ଯେ ପାଣ୍ଡବମାନଙ୍କ ପାତକ ନାଶନ ଯଜ୍ଞରେ ଉପରୋକ୍ତ ସମସ୍ତେ ନିର୍ଦ୍ଦେଶକ ଥିଲେ । ମହେନ୍ଦ୍ରଗିରିରେ ଏମାନେ ଉପସ୍ଥିତ କରିଥିବା ମର୍ତ୍ତ୍ୟରେ ବୈକୁଣ୍ଠ ଅବତରଣ ତାହା ଏକ ଲୋମହର୍ଷକୋଣ ଅନୁଭୂତ । ତନ୍ମଧ୍ୟରେ ବିଶ୍ୱକର୍ମା ବି ଥିଲେ । ପୁରାଣରେ କୁହାଯାଇଛି—ବିଶ୍ୱକର୍ମାହିଁ ସମସ୍ତ ଶିଳ୍ପ ଶାସ୍ତ୍ର ତଥା କଳାର ଆଚାର୍ଯ୍ୟ । (୫୭)

---

(୫୫) ବିଷ୍ଣୁ ପୁରାଣମ୍ : ବ୍ୟାଖ୍ୟା କଲ୍ୟାଣ ପୁରାଣ କଥାଙ୍କ, ପୃ ୧୫୯

(୫୬) ବାସ୍ତୁ ଶାସ୍ତ୍ର, ଶିଳ୍ପଶାସ୍ତ୍ର : Ibid

(i) "ବିଶ୍ୱକର୍ମା ପ୍ରଭାବସ୍ୟ ପୁତ୍ରଃ ଶିଳ୍ପୀ ପ୍ରଜାପତିଃ ।"

(୫୭) ପ୍ରସାଦ ଭବନୋଦ୍ୟାନ ପ୍ରତିମାଭୂଷଣାଦିଷୁ । ତଡ଼ାଗାରାମ କୂପେଷୁ ସ୍ମୃତଃ ସୋଽମର ବର୍ଦ୍ଧକିଃ ॥

(ମତ୍ସ୍ୟ ୫/୨୭-୨୮, ବିଷ୍ଣୁ ପୁରାଣ ୧/୧୫/୧୨୮-୨୫, ବ୍ରହ୍ମ ପୁରାଣ ୧/୧୫୭-୧୫୯, ବାୟୁ ପୁରାଣ ୨/୫/୨୮-୩୦, ବ୍ରହ୍ମବୈବର୍ତ୍ତ ଶ୍ରୀକୃଷ୍ଣ ଜନ୍ମଖଣ୍ଡ ଅ ୧୪ ସମସ୍ତ ସ୍ଥାନରେ ଗୋଟିଏ ଶ୍ଳୋକର ସାମଞ୍ଜସ୍ୟ ରହିଛି)

**ଲିଙ୍ଗ ପୁରାଣ :**

ଏଥିରେ ଶିବଙ୍କର ଶକ୍ତି ଓ ମାହାତ୍ମ୍ୟ ବର୍ଣ୍ଣିତ ଏବଂ ମନ୍ଦିର ନିର୍ମାଣରେ ଶିଳ୍ପ ଶାସ୍ତ୍ରର ପ୍ରମାଣ ପ୍ରଦତ୍ତ । ବିଶେଷକରି ଶିବାଳୟ ନିର୍ମାଣ, ଲିଙ୍ଗପ୍ରତିଷ୍ଠା, ପ୍ରତିମା ନିର୍ମାଣାଦି ବିଷୟ ବର୍ଣ୍ଣିତ । ଏ ସମ୍ବନ୍ଧରେ ଅଗ୍ନି ଓ ମତ୍ସ୍ୟ ପୁରାଣ ମଧ୍ୟ ଆଲୋକପାତ କରିଛି । ତାହା—

ତସ୍ମାତ୍ ସର୍ବପ୍ରଯତ୍ନେନ ଭକ୍ତ୍ୟା ଭକ୍ତୈଃ ଶିବାଳୟମ୍
କର୍ତ୍ତବ୍ୟଂ ସର୍ବ ଯତ୍ନେନ ଧର୍ମ କାମାର୍ଥ ସିଦ୍ଧୟେ ॥ ୭ ॥
କେଶରଂ (ବେଶରଂ) ନାଗରଂ ବାପି ଦ୍ରାବିଡ଼ଂ ବା ତଥାପରମ୍
କୃତ୍ୱା ରୁଦ୍ରାଳୟଂ ଭକ୍ତ୍ୟା ଶିବଲୋକେ ମହୀୟତେ ॥ ୭ ॥ (୫୮)

× × ×

ମହେନ୍ଦ୍ର ପର୍ବତାକାରୈ ର୍ବିମାନୈ ର୍ବର୍ଣ୍ଣ ସଂଯୁତୈଃ
ଗତ୍ୱା ଶିବପୁରଂ ଦିବ୍ୟଂ ଭୁକ୍ତ୍ୱାଭୋଗାନ୍ ଯଥେପ୍ସିତାନ ॥ ୯ ॥
ରୁଦ୍ରଲୋକ ମନୁପ୍ରାପ୍ୟ ରୁଦ୍ରୈଃ ସାର୍ଦ୍ଧଂ ପ୍ରମୋଦତେ,
ମହେନ୍ଦ୍ର ଶୈଳ ନାମାନାଂ ପ୍ରାସାଦଂ ରୁଦ୍ର ସମ୍ମତମ୍ ॥ ୨ ॥
କୃତ୍ୱା ଯତ୍‌ଫଳ ମାପ୍ନୋତି ତତ୍‌ଫଳଂ ପ୍ରବଦାମ୍ୟହମ୍ ।
ଜ୍ଞାନଂ ବିସୃଜତମ୍ ରୁଦ୍ରୈଃ ସଂପ୍ରାପ୍ୟ ମୁନି ପୁଙ୍ଗବଃ । (୫୯)

ଶିଳ୍ପଶାସ୍ତ୍ରରେ ମଧ୍ୟ ଏହି ନୀତି ଧାର୍ଯ୍ୟ ହୋଇଛି । ଯେକୌଣସି ଗୃହ, ମନ୍ଦିର ନିର୍ମାଣ ସମୟରେ କୂର୍ମଚକ୍ରର ନକ୍ଷତ୍ର ବେଧକୁ ଲକ୍ଷ୍ୟ ରଖି ନିର୍ମାଣ କରାଯାଇଥାଏ । (କୂର୍ମପୁରାଣ ଓ ମାର୍କଣ୍ଡେୟ ପୁରାଣରେ କୂର୍ମ ସସ୍ଥାନ ପ୍ରତି ଦୃଷ୍ଟି ଦିଆଯାଇ ପାରେ । କୂର୍ମଚକ୍ର ନବ ଅଙ୍ଗରେ ୨୭ ଗୋଟି ନକ୍ଷତ୍ର ବିଶିଷ୍ଟ (କୃତ୍ତିକାରୁ ଆରମ୍ଭ କରି ଦ୍ୱିକା ପର୍ଯ୍ୟନ୍ତ) ପୃଥ୍ୱୀ କୂର୍ମ ନାମରେ ଖ୍ୟାତ । ଏହି କୂର୍ମ ଚକ୍ରରେ ଦକ୍ଷିଣ ବକ୍ଷରେ ୯/୧୦/୧୧ ନକ୍ଷତ୍ର ନିର୍ଦ୍ଧାରିତ ଓ ତତ୍ ସଲଗ୍ନ ଭୂଖଣ୍ଡ ଏହି ପ୍ରକାର—

"ଦକ୍ଷିଣୋଽବନ୍ତୀ ମହେନ୍ଦ୍ରୋ ମଳୟ ରୁଷ୍ୟମୂଳକାଃ ।
ଚିତ୍ରକୂଟ ମହାରଣ୍ୟ କାଞ୍ଚି ସିହଳ କୋଙ୍କଣଃ" (୬୦)

(୫୮) ଲିଙ୍ଗ ପୁରାଣମ୍—ମହର୍ଷି ବେଦବ୍ୟାସ ପ୍ରଣୀତମ୍ : ଶ୍ରୀଜୀବାନନ୍ଦ ଭଟ୍ଟାଚାର୍ଯ୍ୟ (କଲିକତା) ପୃ ୪୦୮ ଠାରୁ ୪୧୦

(୫୯) Ibid

(୬୦) ବୃହତ୍ ଶିଳ୍ପଶାସ୍ତ୍ର—ଲେଖକ ଜ୍ୟୋ : ପ : ସିଦ୍ଧାନ୍ତ, ପୃ-୮୮
ଶ୍ରୀ ଦୟାନିଧି ଖଡ଼ିରତ୍ନ ବିଦ୍ୟାଭୂଷଣ ।

ଯଥାର୍ଥରେ ମହେନ୍ଦ୍ରଗିରିର ରୁଦ୍ରାଳୟ, ବିଷ୍ଣୁ ଆଳୟ ଓ ଅନ୍ୟାନ୍ୟ ଆଦ୍ୟମ-ଶୈଳୀର ପଞ୍ଚାକାରର ମନ୍ଦିର ସମୂହ ପୁରାଣ ଶାସ୍ତ୍ର ସମ୍ମତ ଓ ଶିଳ୍ପଶାସ୍ତ୍ର ସ୍ୱୀକୃତ । ଐତିହାସିକମାନଙ୍କ ପ୍ରବନ୍ଧ ନାଗର, ବେଶର, ଦ୍ରାବିଡ ପଦ୍ଧତି ଲିଙ୍ଗ ପୁରାଣରୁ ଯେ ଗୃହୀତ ଏହା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ସମସ୍ତ ଐତିହାସିକ ଏହି ମତ ପୋଷଣ କରନ୍ତି କି ଭାରତରେ ମନ୍ଦିର ନିର୍ମାଣର ଆରମ୍ଭମାରମ୍ଭ କାଳ ୪ର୍ଥରୁ ୫ମ ଶତାବ୍ଦୀ । ତୁଏତ ଲେକଲେଚନକୁ ଆସିବାରେ, ଏହା ସ୍ୱତଃସିଦ୍ଧ ଓ ସମସ୍ତସାପେକ୍ଷ ହୋଇଥାଇପାରେ ।

ଅଷ୍ଟାଦଶ ପୁରାଣମାନଙ୍କରେ ଶିବ ପୁରାଣ ବା ବାୟୁ ପୁରାଣ, ପୁରାଣ କ୍ରମର ୪ର୍ଥ ସ୍ଥାନରେ ପରିଦୃଷ୍ଟ ହୁଏ । ବିଷୟବସ୍ତୁ ଦୃଷ୍ଟିରୁ ଉଭୟେ ଗୁରୁତ୍ୱପୂର୍ଣ୍ଣ । ନାରଦ ବ୍ରହ୍ମାଙ୍କଠାରୁ ଶିବତତ୍ତ୍ୱ ସମ୍ପର୍କେ ଜ୍ଞାନପ୍ରାପ୍ତି ହୋଇଥିଲେ । "ପ୍ରଥମେ ବ୍ରହ୍ମ ଥିଲେ । ତାଙ୍କର କାମନା ହିଁ 'ପ୍ରକୃତି' ମାୟାରୂପରେ ବିଦ୍ୟମାନ । ବ୍ରହ୍ମରୁ ପୁରୁଷର ଆବିର୍ଭାବ । ଏହି ଦୁହିଁଙ୍କର ସଂଯୋଗର ସୃଷ୍ଟିର ଉତ୍ପତ୍ତି । ପୁରୁଷ ନାରାୟଣ ଓ ପ୍ରକୃତି ନାରାୟଣୀ ରୂପେ ପରିଚିତ । ପ୍ରକୃତିରୁ ମହତତତ୍ତ୍ୱ (ବୁଦ୍ଧି) ସେଥିରୁ ଅହଂକାର । ସେଥିରୁ ପଞ୍ଚତନ୍ମାତ୍ର (ରୂପ, ରସ, ଗନ୍ଧ, ସ୍ପର୍ଶ, ଶବ୍ଦ) ପଞ୍ଚତନ୍ମାତ୍ରରୁ ପଞ୍ଚଭୂତ (ପୃଥ୍ୱୀ, ଜଳ, ତେଜ, ବାୟୁ ଓ ଆକାଶ) ପଞ୍ଚଭୂତରୁ ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ପଞ୍ଚ କର୍ମେନ୍ଦ୍ରିୟ ଉତ୍ପନ୍ନ । ତତ୍ପରେ ବିଷ୍ଣୁଙ୍କ ଦ୍ୱାରା ବ୍ରହ୍ମାଙ୍କ ସଙ୍ଗୁଷ୍ଟରୁ ଚବିଶତତ୍ତ୍ୱ ସମ୍ବନ୍ଧୀୟ ବିଷୟବସ୍ତୁ ଉପରେ ଦୃଷ୍ଟି ଦିଆଯାଇ-ପାରେ । ଉଭୟଙ୍କ ସଂଘର୍ଷରେ ଜ୍ୟୋତିର୍ଲିଙ୍ଗର ଆବିର୍ଭାବ ଓ ବ୍ରହ୍ମାଙ୍କର ହଂସ ରୂପ ଧାରଣ କରି ଊର୍ଦ୍ଧ୍ୱରେ ଓ ବିଷ୍ଣୁ ବରାହ ରୂପ ଧାରଣ କରି ଅଧଃରେ ହଜାରେ ବର୍ଷ ପର୍ଯ୍ୟନ୍ତ 'ଜ୍ୟୋତିର୍ଲିଙ୍ଗ' ବିଷୟରେ ଅନୁସନ୍ଧାନ କରିଥିଲେ ମାତ୍ର ଆଭାସ ପ୍ରାପ୍ତ ନହେଲେ ପ୍ରଣାମପୂର୍ବକ ଏତିକି ପ୍ରାପ୍ତ ହେଲେ ଯେ ସେ ପଞ୍ଚମୁଖୀ ଶିବ ଥିଲେ । ସେ ବ୍ରହ୍ମାଙ୍କୁ ସୃଷ୍ଟି ଓ ବିଷ୍ଣୁଙ୍କୁ ପାଳନ କରିବା ନିର୍ଦ୍ଦେଶ ପ୍ରଦାନ କରିଥିଲେ । ତା ପରେ ବ୍ରହ୍ମାଣ୍ଡ ସୃଷ୍ଟି, ଋଷି ଆଦିଙ୍କ ସୃଷ୍ଟି ଇତ୍ୟାଦି ବର୍ଣ୍ଣିତ । ଶିବ ପୁରାଣରେ ପ୍ରକୃତିସ୍ୱରୂପା ଭଗବତୀ ଓ ଶିବ ପୂଜା ବିଷୟ ବର୍ଣ୍ଣିତ । (୭୧)

ଏହି ଶୈବ କ୍ଷେତ୍ର ଓ ଶାକ୍ତପୀଠ, ବୈଷ୍ଣବ ପୀଠ ମହେନ୍ଦ୍ରଗିରି—ଏସବୁ ପୁରାଣସମ୍ମତ ବିଷୟବସ୍ତୁର ସମାହାର—ଏହା ନିଃସନ୍ଦେହ ।

**ଅଗ୍ନିପୁରାଣ :**

ପୁରାଣର ପଞ୍ଚଲକ୍ଷଣ ନଥିଲେ ତାହା ପୁରାଣ ପଦବାଚ୍ୟ ହେବନାହିଁ । ଏତଦ୍ ବ୍ୟତୀତ ଅନ୍ୟାନ୍ୟ ଆଖ୍ୟାନ ଓ ସଂସ୍କାରମୂଳକ ଗୀତଗୀତ ଓ ପଦ୍ଧତିରେ ପରିପୂର୍ଣ୍ଣ ଏହି

(୭୧) ଶିବ ପୁରାଣ—କଲ୍ୟାଣ ପୁରାଣ କଥାଙ୍କ ବର୍ଷ ୬୩, ପୃ-୧୬୪

ଅଗ୍ନି ପୁରାଣ ପୁରାଣମାନଙ୍କରେ ଅମୂଲ୍ୟ ରତ୍ନ । ଅତଏବ ଅଗ୍ନି ପୁରାଣକୁ ବିଶ୍ୱକୋଷ କୁହାଯାଏ । ସମଗ୍ର ସୃଷ୍ଟିର କାରଣ ଭଗବାନ ବିଷ୍ଣୁ ଅଟନ୍ତି । ଏଣୁ ଏହି ପୁରାଣରେ ସମସ୍ତ ଅବତାରର ସଂକ୍ଷିପ୍ତ ପରିଚୟ ମିଳେ । ଏତଦ୍ ବ୍ୟତୀତ ମନ୍ଦିର ନିର୍ମାଣ ପଦ୍ଧତି (ଶିଳ୍ପକଳା) ଏଥିରେ ପ୍ରଦତ୍ତ ହୋଇଛି ଏବଂ ମନ୍ଦିର ନିର୍ମାଣ କଲେ କି ଫଳ ମିଳିଥାଏ ତାହା ବର୍ଣ୍ଣନା କରାଯାଇଛି । ପୁନଶ୍ଚ, ବିଭିନ୍ନ ଶ୍ରେଣୀର ମନ୍ଦିର ଓ ସେଗୁଡ଼ିକର ପଞ୍ଚଭେଦ ଦର୍ଶା ଯାଇଛି । ଯଥା—୧. ଏକାୟତନ ୨. ଦ୍ୟାୟତନ ୩. ପଞ୍ଚାୟତନ ୪ ଅଷ୍ଟାୟତନ ୫ ଶୋଡ଼ଷାୟତନ । ମନ୍ଦିର ଜୀର୍ଣ୍ଣୋଦ୍ଧାର କଲେ ଦୁଇଗୁଣ ଫଳ ମିଳିବା ଓ ପୃଣ୍ୟାର୍ଜନ ପାଇଁ 'ବାସ୍ତୁ ବିଜ୍ଞାନ' ଅବଲମ୍ବନରେ ଶୃଙ୍ଖଳିତ ମନ୍ଦିର ଓ ବାସଭବନ ଇତ୍ୟାଦି ନିର୍ମାଣ ପଦ୍ଧତି ବର୍ଣ୍ଣିତ । ମତ୍ସ୍ୟ ପୁରାଣରେ ମଧ୍ୟ ଏହା ମିଳେ ।

ଏଥିର ବିଶେଷତ୍ୱ ହେଲା ପର୍ଶୁରାମଙ୍କ ମହେନ୍ଦ୍ର ଆସନର ମହତ୍ତ୍ୱ । ପର୍ଶୁରାମ ଅବତାରର ଉଦ୍ଦେଶ୍ୟ ବର୍ଣ୍ଣନା ସହି (ପର୍ଶୁରାମ ସାଧନା ପୀଠ ପ୍ରସଙ୍ଗରେ ଦର୍ଶାଇ ଦିଆଯାଇଛି) କାର୍ତ୍ତବୀର୍ଯ୍ୟ ନିଧନ ପରେ ମହେନ୍ଦ୍ରଗିରିରେ ସ୍ଥାୟୀ ରହଣି ପ୍ରମାଣ ଦିଆଯାଇଛି । ଅଗ୍ନି ପୁରାଣରେ ଅଗ୍ନିଦେବ କହନ୍ତି—ମନୁ ଆଦି ମହର୍ଷି ଯେଉଁ ଅନୁଷ୍ଠାନ କରି ମୋକ୍ଷପ୍ରାପ୍ତି କରିସାରିଛନ୍ତି; ତାହା ପ୍ରତ୍ୟେକେ ଜାଣିବା ଉଚିତ । ସେହି ଗୂଢ଼ତତ୍ତ୍ୱ ବରୁଣ ଦେବତା ପୁଷ୍କରଙ୍କୁ ଉପଦେଶ ଦେଇଥିଲେ । ପୁଷ୍କର ତାହା ପର୍ଶୁରାମଙ୍କୁ ବିସ୍ତାରିତ ଭାବେ ବୁଝାଇ ଅଛନ୍ତି । (୭୨) ଏହି ପୁରାଣରେ ଏକଶତ ଏକାବନ ଅଧ୍ୟାୟ ଠାରୁ ଏକଶତ ଅଠସ୍ତରି ଅଧ୍ୟାୟ ଯାଏ ଏହି ଉପଦେଶରେ ହିଁ ଭରପୂର । ଏହା ହିନ୍ଦୁଧର୍ମର ସିଦ୍ଧାନ୍ତର ଅର୍ଥାତ୍ ହିନ୍ଦୁ ବିଶ୍ୱର 'ବିଶ୍ୱକୋଷ' କହିବା ଯଥାର୍ଥତା ରହିଛି । ଏଥିରେ (୧) ବର୍ଣ୍ଣାଶ୍ରମ ବ୍ୟବସ୍ଥା ଓ ସେମାନଙ୍କ ଆଚରଣ (୨) ଗୃହସ୍ଥର ଜୀବିକା, ବ୍ରହ୍ମଚାରୀର ଧର୍ମ, ବିବାହ ଆଚରଣ, ଦ୍ରବ୍ୟ ଶୁଦ୍ଧି, ମରଣାଶୌଚ, ପିଣ୍ଡଦାନ, ଦାହସଂସ୍କାର, ଗର୍ଭସ୍ରାବ ଜନିତ ଅଶୌଚ, ଅସ୍ପୃଶ୍ୟ ଆଦିର ଶୁଦ୍ଧି, ବାନପ୍ରସ୍ଥ ଓ ସନ୍ୟାସୀ ଆଶ୍ରମ ଧର୍ମ, ଧର୍ମଶାସ୍ତ୍ରର ଉପଦେଶ, ଶ୍ରାଦ୍ଧ କଳ୍ପ, ନବଗ୍ରହ ସମ୍ବନ୍ଧୀୟ ହବନର ବର୍ଣ୍ଣନା, ବର୍ଣ୍ଣାଶ୍ରମ ଯାହାକି ଭାରତୀୟ ସଂସ୍କୃତିର ମୂଳପିଣ୍ଡ ।

**ନାରଦ ପୁରାଣ :**

ଏଥିରେ ଗରୁଡ଼ ପୁରାଣ ସାଦୃଶ୍ୟ ପରିଲକ୍ଷିତ ହୁଏ । ତାହା ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଜ୍ୟୋତିଷ ସିଦ୍ଧାନ୍ତ ତଥା ମାନବ ଜୀବନରେ ସଫଳତା ପାଇଁ ସକାମ ସାଧନା ଓ ଅନ୍ତଃକରଣରେ ଶୁଦ୍ଧି ଓ ଭକ୍ତି ଉଦ୍ରେକ ହେବାରୁ ଭଗବତ୍ ପ୍ରାପ୍ତି

---

(୭୨) ଅଗ୍ନିପୁରାଣ—୪ର୍ଥ ଅଧ୍ୟାୟ ଓ ୧୫୧ ଅଧ୍ୟାୟରୁ ୧୭୮ ଅଧ୍ୟାୟ ଯାଏ ।
କଲ୍ୟାଣ— ଅଗ୍ନିପୁରାଣଙ୍କ-୧୯୭୦, ପୃ ୨୭୫

ବିଷୟ ବର୍ଣ୍ଣିତ । (୭୩) ସାଧନୋପଯୋଗୀ ପରିବେଶ ପାଇଁ ମହେନ୍ଦ୍ରଗିରି ଭଲ ସ୍ଥାନ ନିରୂପଣର ଆବଶ୍ୟକତା ମନେହୁଏ । ବିଶେଷକରି ପିତୃ ଶ୍ରାଦ୍ଧ ପାଇଁ ଶ୍ରେଷ୍ଠ ସ୍ଥଳ । ନାରଦ ପୁରାଣରେ ବର୍ଣ୍ଣିତ ଅତିଥି ସେବା ଦେଖିଲେ ମନେହୁଏ ମହେନ୍ଦ୍ରଗିରିରେ ମହାବୀର ପର୍ଶୁରାମଙ୍କ ଅତିଥି ସେବା ହିଁ ନାରଦ ପୁରାଣର ଉପଜୀବ୍ୟ । ପୁରାଣ କହେ—

ଅତିଥିର୍ଯସ୍ୟ ଭଗ୍ନାଶୋ ଗୃହାତ୍ ପ୍ରତିନିବର୍ତ୍ତତେ ।
ସ ତସ୍ମୈ ଦୁଷ୍କୃତଂ ଦତ୍ତ୍ୱା ପୁଣ୍ୟ ମାଦାୟ ଗଚ୍ଛତି ।
(ନାରଦ ପୁରାଣ ୨୭/୭୨)

**ଗରୁଡ ପୁରାଣ :**

ଏଥିରେ ବୈଷ୍ଣବ ଆଚାର, ଶ୍ରାଦ୍ଧ, ବ୍ରତ, ପ୍ରାୟଶ୍ଚିତ୍ତ ଇତ୍ୟାଦି ସହ ପଞ୍ଚଦେବତା ପୂଜା ସହ ଅନ୍ୟାନ୍ୟ ପୁରାଣର ଲକ୍ଷଣଜନିତ ସମସ୍ତ ବିଷୟ ପ୍ରଦତ୍ତ । ଏଥିରେ ଅଗ୍ନି ପୁରାଣରେ ଅଧିକାଂଶ ବିଷୟବସ୍ତୁର ସାମଞ୍ଜସ୍ୟ ରହିଛି । ବିଶେଷକରି ଗରୁଡ଼ ପୁରାଣରୁ ଗାରୁଡ଼ି ବିଦ୍ୟାର ସୃଷ୍ଟି ହୋଇଛି । ଏଥିରେ ଥିବା ମନ୍ତ୍ର—'ପକ୍ଷୀ ଓ ସ୍ୱାହା ।' (୭୪)

ମହେନ୍ଦ୍ରଗିରିର ଶବର ଓ ଚତୁଃପାର୍ଶ୍ୱସ୍ଥ ଗ୍ରାମମାନଙ୍କରେ ଯେଉଁ ଗାରୁଡ଼ି ମନ୍ତ୍ରର ପ୍ରଭାବ ପରିଲକ୍ଷିତ ହୁଏ ତାହା ଗରୁଡ ପୁରାଣର ହିଁ ଦୃଷ୍ଟାନ୍ତ ।

ପୁନଶ୍ଚ ଏଥିରେ ବର୍ଣ୍ଣିତ ଚବିଶ ଅବତାର ଭାଗବତରେ ମଧ୍ୟ ବର୍ଣ୍ଣିତ । କାଶ୍ୟପ-ତକ୍ଷକ ସମ୍ବାଦ ମହାଭାରତରେ ମଧ୍ୟ ପରିଦୃଷ୍ଟ । ଗୟାସୁରକୁ ବିଷ୍ଣୁଙ୍କ ଦ୍ୱାରା ଗଦାରେ ପ୍ରହାର ଓ ବଧ "ଗୟାର ନାମ ଗଦାଧର", ପିଣ୍ଡ ଦାନ ଉଦ୍ଦେଶ୍ୟରେ ଗୟା ଶରୀର ଉତ୍ସର୍ଗ ହେତୁ ପୃଥିବୀର ନାମ 'ଗୟାପୁରୀ' କିପରି ହେଲା ତାହା ଏହି ପୁରାଣରେ ବର୍ଣ୍ଣିତ । ଏଥିରେ ପ୍ରେତକଳ୍ପର କଥା ଓ ସାଧନା ବିଷୟରେ ବର୍ଣ୍ଣିତ । ସର୍ବୋପରି ବାକ୍ ସଂଯମଜନିତ ମୌନ ଉପାସନାର ମହତ୍ତ୍ୱ ଓ ଗୁରୁତ୍ୱ ସନ୍ନିବେଶିତ ।

ବାସ୍ତବିକ୍ ମୌନ ଉପାସନାହିଁ ହନୁମାନ ସାଧନା ଓ ପର୍ଶୁରାମ ସାଧନାର ଜ୍ୱଳନ୍ତ ନିଦର୍ଶନ । ଅନ୍ୟାନ୍ୟ ପୁରାଣ, ମହାପୁରାଣ ଓ ଉପପୁରାଣରେ ଏହାର ବିଶ୍ଳେଷଣାତ୍ମକ ରୂପ ପରିଦୃଷ୍ଟ ।

**ଭବିଷ୍ୟ ପୁରାଣମ୍ :**

କଳିଯୁଗର ବିଷୟ ବର୍ଣ୍ଣନା ନିମିତ୍ତ ଏହି ପୁରାଣ ପ୍ରଥମ ଓ ପ୍ରସିଦ୍ଧ ପୁରାଣ ଅଟେ । ଏଥିରେ ଭବିଷ୍ୟତ ଘଟଣାବଳୀର ବିବରଣୀ ଦେଖିବାକୁ ମିଳେ । ଏହା

(୭୩) ନାରଦ ପୁରାଣ—କଲ୍ୟାଣ ଅଙ୍କ ୭୩, ପୃ ୨୦୧
(୭୪) ଗରୁଡ ପୁରାଣ—କଲ୍ୟାଣ ଅଙ୍କ ୭୩, ପୃ ୩୦୩

ନାରଦ ପୁରାଣ ଉତ୍ତର ଖଣ୍ଡରେ ବର୍ଣ୍ଣିତ । ଏଥିରେ ତୀର୍ଥଯାତ୍ରା ପ୍ରସଙ୍ଗ ତଥା ମହେନ୍ଦ୍ରର ସ୍ଥିତିର ସୂଚନା ପ୍ରଦତ୍ତ । ବିକ୍ରମାଦିତ୍ୟଙ୍କ ଦେହତ୍ୟାଗ ପରେ ଭାରତ ୧୮ ଭାଗରେ ବିଭକ୍ତ ହେବା ବିଷୟ ଏଥିରେ ବର୍ଣ୍ଣିତ । (୭୫)

ପଶ୍ଚିମେ ସିନ୍ଧୁ ନଦ୍ୟାଂତେ ସେତୁବନ୍ଧେହି ଦକ୍ଷିଣେ,
ଉତ୍ତରେ ବଦରୀ ସ୍ଥାନେ ପୂର୍ବେ ଚ କପିଲାନ୍ତକେ ।। ୧୦ ।।

ଅଷ୍ଟାଦଶୈବ ରାଷ୍ଟ୍ରାଣି ତେଷାଂ ମଧ୍ୟେ ବଭୁବରେ
ଇନ୍ଦ୍ରପ୍ରସ୍ଥଂ ଚ ପାଞ୍ଚାଳ କୁରୁକ୍ଷେତ୍ରଂ ଚ କପିଲାମ୍ ।। ୧୧ ।।

ଅନ୍ତର୍ବେଦୀ ବ୍ରଜଶ୍ଚୈ ବାଜମେର ମରୁଧନ୍ ଚ
ଗୌର୍ଜରଂ ଚ ମହାରାଷ୍ଟ୍ରଂ ଦ୍ରାବିଡ଼ଂ ଚ କଳିଙ୍ଗକମ୍ ।। ୧୨ ।।

ଅବନ୍ତ୍ୟଂ ଶ୍ଚୈ ଭୂପବଙ୍ଗ ଗୌଡ଼ ମାଗଧ ମେବ ଚ
କୌଶଲ୍ୟଂ ଚ ତଥାଜ୍ଞେୟଂ ତେଷାଂରାଜା ପୃଥକ୍ ପୃଥକ୍ ।। ୧୩ ।।

କଳିଙ୍ଗର ଗୌରବରୁ ମହେନ୍ଦ୍ରର ଗୌରବ ଭାବେ ପ୍ରକାରାନ୍ତରେ ଜଣାଯାଏ । ଯେହେତୁ ପର୍ଶୁରାମଙ୍କ ସହ ମହେନ୍ଦ୍ରଗିରି ସଂଶ୍ଳିଷ୍ଟ । ଏହି ସୃଷ୍ଟି ପ୍ରସଙ୍ଗ ନିମିତ୍ତ କଳ୍କି ପୁରାଣ ଆଲୋଚନ କରିବା ବିଧେୟ ।

**କଳ୍କି ପୁରାଣମ୍ :**

କଳ୍କି ପୁରାଣରେ, ସମସ୍ତ ପୁରାଣରେ ଥିବା ଅବତାରବାଦକୁ ବିଶ୍ଳେଷଣ କରି ଭବିଷ୍ୟତର ଅବତାର ବିଷୟ ବର୍ଣ୍ଣନା ପୂର୍ବକ ନୃସିଂହ ଅବତାର ପରେ ପୃଥିବୀରେ ପର୍ଶୁରାମଙ୍କ ଅବତାର ଯେ କ୍ଷତ୍ରିୟ ନିଧନ ପାଇଁ ଉଦ୍ଦିଷ୍ଟ ଥିଲା ତାହାର ସ୍ପଷ୍ଟ ଉଲ୍ଲେଖ ରହିଛି । (୭୬)

ଅବତାର ଷୋଡଶମେ ପଶ୍ୟନ୍ ବ୍ରହ୍ମଦ୍ରୁହୋ ନପାନ
ତ୍ରିସପ୍ତ କୃତ୍ୱଃ କୁପିତୋ ନିଃକ୍ଷେତ୍ରୋ ମକରୋନ୍ ମହୀମ ।। ୫୫ ।।

× × × ଚତୁର୍ଦ୍ଦଶରେ ନରସିଂହ ଅବତାର, ପଞ୍ଚଦଶରେ ବାମନ, ତା ପରେ ପର୍ଶୁରାମଙ୍କ ଆବିର୍ଭାବ, ରାମ, କୃଷ୍ଣ, ବୌଦ୍ଧାବତାର ଓ ପରେ କଳ୍କିର ଆଗମନ ଏହି ପୁରାଣରେ ପରିଦୃଷ୍ଟ । କଳ୍କି ଭଗବାନଙ୍କ ଜନ୍ମବିବରଣୀ ପ୍ରସଙ୍ଗ ସରିବା ପରେ କଳ୍କି ନିଜ ପିତାଙ୍କୁ ଜିଜ୍ଞାସା କରିଛନ୍ତି ।

---

(୭୫) ଭବିଷ୍ୟ ପୁରାଣମ୍ ଦ୍ରଷ୍ଟବ୍ୟ
(୭୬) କଳ୍କି ପୁରାଣ—୨ୟ ଅଧ୍ୟାୟ, ପୃ-୪୮

ଯେଉଁ ବ୍ରାହ୍ମଣ ସଂପୂର୍ଣ୍ଣ ବିଶ୍ୱର ଉଦ୍ଧାର କର୍ତ୍ତା, ଭଗବାନ ବିଷ୍ଣୁଙ୍କ ଉପାସନା କରନ୍ତି, ଯିଏ ଲୋକର କାମନା ପୂର୍ଣ୍ଣକାରୀ--ସେହିଭଳି ବ୍ରାହ୍ମଣ କାହାନ୍ତି ? ତାର ଉତ୍ତରରେ ପିତା କହନ୍ତି—ଧର୍ମଘାତୀ ଓ ବ୍ରାହ୍ମଣଙ୍କ ଧ୍ୱଂସକ ମହାବଳୀ କଳିଙ୍କ ଦ୍ୱାରା ପୀଡ଼ିତ ହୋଇ ବିପ୍ରଗଣ ଅନ୍ୟଦେଶକୁ ଚାଲିଗଲେ । ସ୍ୱଳ୍ପ ତପକାରୀ ବ୍ରାହ୍ମଣମାନେ ଏହି କଳିକାଳରେ ରହିଛନ୍ତି । ଏମାନେ ସମସ୍ତେ ଶିଶ୍ନୋଦର ଧର୍ମୀ ହୋଇ ଧର୍ମ ଓ କର୍ମରୁ ବିରତ ହୋଇଥିଲେ । ପାପଯୁକ୍ତ ଦୁରାଚାରୀ ଏବଂ ତେଜରହିତ ବ୍ରାହ୍ମଣ ଏହି କଳିକାଳରେ ଆତ୍ମରକ୍ଷାରେ ଆସକ୍ତ ଏବଂ ଶୂଦ୍ରଙ୍କର ସେବକ । (୬୭)

ପିତାଙ୍କ ବଚନ ଶୁଣି କଲ୍‌କି ଭଗବାନ କଳିକୁ ନଷ୍ଟ କରିବାପାଇଁ ନିଶ୍ଚୟ କଲେ । ବ୍ରାହ୍ମଣମାନେ ତାଙ୍କ ବାଣୀଦ୍ୱାରା ତାଙ୍କର ଉପନୟନ କଲେ । ତା ପରେ କଲ୍‌କି ଭଗବାନ ଗୁରୁକୁଳରେ ନିବାସ କରିବାପାଇଁ ବାହାରିଲେ । (୬୮)

ଭଗବାନ୍ କଲ୍‌କିଙ୍କୁ ଗୁରୁକୁଳବାସ ପାଇଁ ଯିବାଦେଖି ମହେନ୍ଦ୍ର ପର୍ବତ ନିବାସୀ ପର୍ଶୁରାମ ତାଙ୍କୁ କହିଲେ ମୁଁ ଭୃଗୁବଂଶରେ ଜାତ ମହର୍ଷି ଜମଦଗ୍ନିଙ୍କ ପୁତ୍ର ପର୍ଶୁରାମ । ବେଦବେଦାଙ୍ଗର ତତ୍ତ୍ୱକୁ ଜାଣିବା ବ୍ୟକ୍ତି । ମୁଁ ଏହି ପୃଥିବୀକୁ କ୍ଷତ୍ରିୟ ବିହୀନ କରି ବ୍ରାହ୍ମଣଙ୍କୁ ଦକ୍ଷିଣା ସ୍ୱରୂପ ଦେଇଦେଲି । ବର୍ତ୍ତମାନ୍ ତୁମେ ମତେ ଧର୍ମ ରକ୍ଷାର୍ଥେ ଗୁରୁରୂପେ ଗ୍ରହଣ କର । ମୁଁ ତୁମକୁ ଶିକ୍ଷା ଦେବି । ହେ ଦ୍ୱିଜୋତ୍ତମ ମୁଁ ଏହି ପର୍ବତରେ ତପସ୍ୟା କରିବାପାଇଁ ଆସିଅଛି ତୁ ଏଠାରେ ବେଦାଧ୍ୟୟନ କର । ଏହା ଶୁଣି ଭଗବାନ କଲ୍‌କି ଆନନ୍ଦରେ ସହିତ ପର୍ଶୁରାମଙ୍କୁ ପ୍ରଣାମ କଲେ ଓ ବେଦାଧ୍ୟୟନ କରିବାକୁ ଲାଗିଲେ ।

---

(୬୭) କଲ୍‌କି ପୁରାଣ—୨ୟ ଅଧ୍ୟାୟ, ପୃ-୨୬୨ ଶ୍ଳୋକ ୪୫

"ତତୋବସ୍ତୁ ଗୁରୁକୁଲେ ଯାନ୍ତଂ କଲ୍‌କି ନିରୀକ୍ଷସଃ,
ମହେନ୍ଦ୍ରାଦ୍ରି ସ୍ଥିତୋ ରାମଃ ସମାନୀୟ ଶ୍ରମ ପ୍ରଭୂଃ ।

ଭୃଗୁବଂଶ ସମୁତ୍ପନ୍ନଂ ଜାମଦଗ୍ନ୍ୟ ମହାପ୍ରଭୁମ୍
ବେଦ ବେଦାଙ୍ଗ ତତ୍ତ୍ୱଜ୍ଞ ଧନୁର୍ବେଦ ବିଶାରଦମ୍ ।

କୃତ୍ୱା ନିଃକ୍ଷତ୍ରିୟାଂ ପୃଥ୍ୱୀଂ ଦତ୍ତ୍ୱା ବିପ୍ରାୟ ଦକ୍ଷିଣାମ୍
ମହେନ୍ଦ୍ରାଦ୍ରୌ ତପସ୍ତପ୍ତୁମାଗତୋହଂ ଦ୍ୱିଜାତ୍ମଜ ।

ତ୍ୱଂ ପଠାତ୍ର ନିଜ ବେଦ ଯଚ୍ଚାନ୍ୟଚ୍ଛାସ୍ତ୍ର ମୁତ୍ତମମ୍ ।
ଇତି ତଦ୍ ବଚ ଆଶ୍ରିତ୍ୟ ସଂପ୍ରହୃଷ୍ଟ ତନୁରୁହଃ । ୧ ।

(୬୮) କଲ୍‌କି ପୁରାଣ, ୩ୟ ଅଧ୍ୟାୟ, Ibid

ବିଦ୍ୟାଧ୍ୟୟନ ପରେ କଲ୍କି ଭଗବାନ ଯେତେବେଳେ ପରଶୁରାମଙ୍କୁ ଦକ୍ଷିଣା ଦେବାପାଇଁ ଇଚ୍ଛା କଲେ ସେତେବେଳେ ସେ ପରଶୁରାମଙ୍କୁ ହିଁ ପ୍ରଶ୍ନ କରିଥିଲେ ଯେ ସେ କେଉଁ ଦକ୍ଷିଣାରେ ସନ୍ତୁଷ୍ଟ ହେବେ ? ସେତେବେଳେ ମହାବୀର ପରଶୁରାମ ସୂଚନା ଦେଲେ କଳିକାଳକୁ ନାଶ କରିବା ନିମନ୍ତେ ବ୍ରହ୍ମା ହରଙ୍କ ନିକଟରେ ନିବେଦନ କରିଥିଲେ । ଆପଣ ହିଁ ସେହି ବିଷ୍ଣୁ (ହରି) ଯେ କି ସମ୍ଭଳ ଗ୍ରାମରେ ଅବତରଣ କରିଛନ୍ତି । ଆପଣ ମୋଠାରୁ ବିଦ୍ୟା, ଶଙ୍କରଙ୍କ ଠାରୁ ଶାସ୍ତ୍ର ଓ ବେଦମୟ ଶୁକ ତଥା ସିଂହଳ ଦେଶର ପଦ୍ମା ନାମକ ରାଣୀଙ୍କୁ ପ୍ରାପ୍ତ ପୂର୍ବକ ଏହି ଭୂମଣ୍ଡଳରେ ଧର୍ମସ୍ଥାପନ କରନ୍ତୁ ।

ତଦନୁଯାୟୀ କଲ୍କି ଭଗବାନ ଶଙ୍କରଙ୍କୁ ସନ୍ତୁଷ୍ଟ କରିବାପାଇଁ ପ୍ରସ୍ତୁତ ହେଲେ ।

ଭବିଷ୍ୟ ପୁରାଣ, ଭାଗବତ, ଅଗ୍ନିପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ମହାଭାରତ ଇତ୍ୟାଦିରେ କଲ୍କିଙ୍କ ଆବିର୍ଭାବ ସ୍ୱୀକାର କରାଯାଇଛି । ଗରୁଡ଼ ପୁରାଣରେ ସମ୍ଭଳ ଗ୍ରାମରେ ବିଷ୍ଣୁଙ୍କ ଆବିର୍ଭାବ ସ୍ୱୀକୃତ । ଭଗବାନ ଏହି ମହେନ୍ଦ୍ରଗିରିରେ ହିଁ କଲ୍କି ଭଗବାନଙ୍କୁ ବିଦ୍ୟାଶିକ୍ଷା ଦେବା କଲ୍କି ପୁରାଣରେ ବର୍ଣ୍ଣିତ । ଏହା ସାଂପ୍ରତିକ ପରଶୁରାମଙ୍କ ମହେନ୍ଦ୍ରଗିରିରେ ଅମରତ୍ୱ ପ୍ରାପ୍ତିର ସୂଚକ ଅଟେ । 'ସମ୍ଭଳ' ଶବ୍ଦ ବିଷୟ ଉପରେ ଓ ତା'ର ଅବସ୍ଥିତି ସମ୍ବନ୍ଧରେ ବହୁ ବାଦାନୁବାଦ ଦେଖାଦେଇଛି ତଥାପି ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟ ଉତ୍କଳର ସିଦ୍ଧଯୋଗୀ ଅଚ୍ୟୁତାନନ୍ଦଙ୍କ ମାଳିକାକୁ ଭିତ୍ତିକରି ସମ୍ଭଳ ଗ୍ରାମ ଉତ୍କଳରେ ହିଁ ଅବସ୍ଥିତ ବୋଲି ଦୃଢ଼ମତ ପୋଷଣ କରିଛନ୍ତି । ଉକ୍ତ ମହାଶୟଙ୍କ ମତ ଦିଅନ୍ତି । (୭୯)

"ପୁରୁଷୋତ୍ତମ କ୍ଷେତ୍ର (ଜଗନ୍ନାଥଜୀ) ମେ ଋଷିକୁଲ୍ୟା ନାମକ ନଦୀ ହୈ । ୟହ ଗୋନ୍ଦବାନ୍ ଦେଶକ ପର୍ବତମାଲାସେ ଉତ୍ପନ୍ନ ହୋଇହୈ । ଇସି ସ୍ଥାନମେ "ମହେନ୍ଦ୍ରମାଲୀ" ନାମସେ ଏକ ପର୍ବତ ପ୍ରଖ୍ୟାତ ହୈ । ୟହ ମହେନ୍ଦ୍ର ପର୍ବତ ହୈ । ୟହ ମହେନ୍ଦ୍ରମାଲା ଓଡ଼ିଶାକେ ଉତ୍ତର ଗଞ୍ଜାମ ଜିଲ୍ଲାସେ ଗୋନ୍ଦବନ ତକ୍ ଫଇଲ୍ ହୋଇହୈ । ଭାରତ ବର୍ଷକେ ସାତ୍ କୁଲାଚଳ ମେସେ ମହେନ୍ଦ୍ର ପର୍ବତ ଭି ଏକ ହୈ ।"

କଲ୍କି ପୁରାଣରେ ଭକ୍ତିମାର୍ଗ ପ୍ରଦର୍ଶନ ନିମିତ୍ତ ବୌଦ୍ଧାବତାର ପରେ କଳିର ଅବତାରଣା ଏକ ନୂତନ ଦିଗ୍‌ଦର୍ଶନ ହୋଇପାରେ । ଏହି ପୁରାଣରୁ ଶିକ୍ଷା ମିଳେ

---

(୭୯) କଲ୍କି ପୁରାଣ ୧୯୦୩ ପ୍ରକାଶନ ଭାରତ ଧର୍ମ ମହାମଣ୍ଡଳ, ସଂସ୍କୃତ ଭବନ, ବରେଲି, ପାଦଟୀକା—୩ୟ ଅଧ୍ୟାୟ ଦ୍ରଷ୍ଟବ୍ୟ ।

ଯେ ଭଗବାନ ମାନବକୁ ସନ୍ମାର୍ଗରେ ପରିଚାଳିତ କରିବାପାଇଁ ସତତ ଜାଗ୍ରତ— ଗୀତାବାଣୀ ସାର୍ଥକ ପ୍ରମାଣିତ ।

ଯଦାଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ,
ଅଭ୍ୟୁତ୍ଥାନ ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ । ୭ ।

ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ,
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ । ୮ । (୭୦)

ସେ ମହାଦେବଙ୍କ 'ଧର୍ମ ସଂସ୍ଥାପନା ପାଇଁ ଯେ ପରଶୁରାମ ଆବିର୍ଭୂତ, ଏହି ତଳକ ପୁରାଣ ହିଁ ଏହାର ଜ୍ୱଳନ୍ତ ପ୍ରମାଣ । ଅତଏବ ଯୁଗେ ଯୁଗେ ମହେନ୍ଦ୍ର ଶିକ୍ଷାକେନ୍ଦ୍ର ଓ ଗୁରୁକୁଳ ରୂପେ ପ୍ରଖ୍ୟାତ ।

ଏହିଭଳି ପ୍ରତ୍ୟକ୍ଷ ଭାବରେ କମ୍ବା ପରୋକ୍ଷରେ, ବିସ୍ତୃତ ଭାବେ ହେଉ କମ୍ବା କ୍ଷୀଣ ଆଭାସ ହେଉ ସମସ୍ତ ପ୍ରାଚୀନ ପୁରାଣରେ ମହେନ୍ଦ୍ରଗିରିକୁ ଉଚ୍ଚ ଆସନ ଦିଆଯାଇଛି । ଏ ସଂକ୍ରାନ୍ତରେ ପରବର୍ତ୍ତୀକାଳରେ ରଚିତ ଓଡ଼ିଆ ପୁରାଣଗୁଡ଼ିକର ଆଲୋଚନା ମଧ୍ୟ ଆବଶ୍ୟକ ।

## (ଖ) ଓଡ଼ିଆ ପୁରାଣ

**ସାରଳା ମହାଭାରତ :**

ସାରଳା ଦାସଙ୍କ ମହାଭାରତ ଓଡ଼ିଆ ଭାଷାର ପ୍ରଥମ ଉଚ୍ଚକୋଟୀର ଗ୍ରନ୍ଥ । ସୂର୍ଯ୍ୟବଂଶର ପ୍ରଥମ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ (୧୪୩୫-୬୭) ସାରଳାଙ୍କ ଆବିର୍ଭାବ ମହାଭାରତ ରଚନାପାଇଁ ଏକ ଆହ୍ୱାନ ଥିଲା । ସାରଳା ଦାସ ନିଜ ଜନ୍ମସ୍ଥାନ ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି—

ଜମ୍ବୁଦ୍ୱୀପ ଭରତଖଣ୍ଡ ମଣ୍ଡଳ ଓଡ୍ର ରାଷ୍ଟ୍ର,
ଭୁବନ ଯାଜନର ପୂର୍ବ ଦିଗେ ମହୋଦଧି ତଟ ।
ଶ୍ୱେତବାହୀ ନୀଳ ସୁନ୍ଦର ଗିରି ମଧ୍ୟ ସ୍ଥାନେ
ମହେନ୍ଦ୍ର ଚନ୍ଦ୍ରଭାଗା କୋଣାର୍କ ଈଶାନେ ।
ସେ ସୂର ବାସ ଯଂକ୍ଷେତ୍ର ସୁରବାସିନୀ
ଗିରିନାର ଅଙ୍କରେ ତହିଁରେ ମୁହିଁ ଜନମି । (୭୧)

(୭୦) ଶ୍ରୀମଦ୍ ଭଗବତ୍ ଗୀତା, ୪ର୍ଥ ଅଧ୍ୟାୟ ଶ୍ଳୋକ ୭ ଓ ୮

(୭୧) ମହାଭାରତ—ବିରାଟ ପର୍ବ ଓ ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପୃ-୧୯୬

ଝଙ୍କଡ଼ ଗ୍ରାମଟି ପ୍ରାୟ କଟକଠାରୁ ପୂର୍ବକୁ ପ୍ରାୟ ତିରିଶି ମାଇଲ ଦୂରରେ ଥିଲେ ହେଁ ବା "ମହେନ୍ଦ୍ର" ଶବ୍ଦଟି ବ୍ୟବହାର କରି କୁଳଚିତ ମହେନ୍ଦ୍ରକୁ ଲୋକଗୋଚରକୁ ଆଣିବା କମ୍ ସୌଭାଗ୍ୟର କଥା ନୁହେଁ । ଏହା ତାଙ୍କ ନିଜସ୍ୱ କୃତିତ୍ୱର ନୁହେଁ ।

ଶଂସିତ ମହେନ୍ଦ୍ରଗିରି ସମ୍ପର୍କରେ ବନ-ପର୍ବର ମୂଳଗ୍ରନ୍ଥରେ ମୁଖ୍ୟ କଥାବସ୍ତୁର ମେଳ ଅଛି । ପାଣ୍ଡବମାନଙ୍କର ତୀର୍ଥ ଭ୍ରମଣ ସମୟରେ ଯେଉଁ ସବୁ ବୃତ୍ତାନ୍ତ ମୂଳ-ମହାଭାରତରେ ଲିଖିତ ଅଛି, ସେ ଭିତରୁ ଅଧିକାଂଶ ସାରଳା ଦାସ ତ୍ୟାଗ କରିଛନ୍ତି । କିନ୍ତୁ ତା'ର ବିସ୍ତୃତ ବିବରଣୀ ମୂଳଗ୍ରନ୍ଥରେ ଅଛି । ତଥାପି ଆଦ୍ୟପର୍ବରେ ହିଡ଼ିମ୍ବିକ ବନରେ ପଞ୍ଚୁପାଣ୍ଡବ ବନବାସବେଳେ ଅର୍ଜ୍ଜୁନ ଗଣ୍ଡୀଜୀବ ନଦେଖି ଗିରିନଦୀ ନିକଟରେ ପହଞ୍ଚିଲେ । ସାରଳା ଦାସ କହନ୍ତି—

ତହୁଁ ଅର୍ଜ୍ଜୁନ ସେଠାରୁ ଅନ୍ତରରେ ଚଳି
ମହେନ୍ଦ୍ରଗିରିର ନଦୀତୀରେ ଯାଇ ମିଳି ।
× × ×
ମହେନ୍ଦ୍ରମାଳ ନାମରେ ଏକଇ ପର୍ବତ
ସେ ଗିରିର ଉପରେ ବିଜେ ବୀର ପାର୍ଥ ॥ (୭୨)

ସିଂହବଜ ଗିରିଶୃଙ୍ଗ ମହେନ୍ଦ୍ରଗିରିର ଶୃଙ୍ଗଠାରୁ ଉଚ୍ଚତାରେ ଅଳ୍ପ ଅଧିକ । ହିଡ଼ିମ୍ବିକ ବନ ସିଂହବଜର ପଶ୍ଚିମରେ ଅବସ୍ଥିତ । ମହେନ୍ଦ୍ରଗିରିର ଉତ୍ତର-ପଶ୍ଚିମ କୋଣରେ ସିଂହବଜ ପର୍ବତମାଳା ବିସ୍ତୃତ । ଅର୍ଜ୍ଜୁନ ମହେନ୍ଦ୍ରଗିରିର ଶୃଙ୍ଗରେ ଆଇ ସିଂହବଜ ପର୍ବତ ଦେଇ ପଶ୍ଚିମର ଦେବଗିରି (୭୩) ପର୍ବତକୁ ଲକ୍ଷ୍ୟ କରି ଗଣ୍ଡୀ ବଦଳରେ ଗୋବଧ କରିଥିଲେ । (୭୪) ତା'ର ଶରୀରକୁ ଶର ମୁନରେ

(୭୨) ମହାଭାରତ ଆଦ୍ୟପର୍ବ ।
(୭୩) ମହାଭାରତ—ଆଦ୍ୟପର୍ବ (ଦେବଗିରି ଶୃଙ୍ଗ ମହେନ୍ଦ୍ରର ପ୍ରାୟ ୫୦ କିଲୋମିଟର ଦୂରରେ ଅବସ୍ଥିତ । ପାରଳାଖେମୁଣ୍ଡିର ଉତ୍ତର ପଶ୍ଚିମରେ ଅଛି ।)
(୭୪) ମହାଭାରତ ଆଦ୍ୟପର୍ବ : ପୃ ୮୭-୮୮
"ଗୋମାତା ରୁଧିର ହେଲା ଯେଉଁଠାରେ ବୃଷ୍ଟି
କୋଟିଲିଙ୍ଗ ଯେନ ତହୁଁ ସୋମଲିଙ୍ଗ ପୁଟି ॥
ଯେବଣ ଠାରେ କପିଳା ରକତ ପଡ଼ିଲା
ପତଙ୍ଗେଶ୍ୱର ନାମରେ ଲିଙ୍ଗେକ ହୋଇଲା ॥
ରୁଧିର ବିନ୍ଦୁ ପଡ଼ିଣ ଥିଲା ଯେତେଦୂର
ବିନ୍ଦୁକେଶ୍ୱର ନାମ ସେ ହେଲେ ପୃଥିଭାର ॥

ଉଠାଇ ଆଣି ମାଳତୀ ଲତା ଭିତରେ ଲୁଚାଇ ଲଙ୍କାରେ ବାଘମାନଙ୍କୁ ନ କହି, ମହାଦେବଙ୍କ ଗୋବଧ କରିଥିବା ଯୋଗୁଁ ପ୍ରାୟଶ୍ଚିତ୍ତ ଲାଗି ଚଳାଇଲେ । ମହାଦେବ ଏହିଠାରେ ଭୈରବୀମୂର୍ତ୍ତି ଧାରଣ କରିଥିଲେ । ତାହା ଏଠାରେ ପୂଜିତ ।

ଅର୍ଜୁନଙ୍କ ଗୋ-ବଧର ପ୍ରାୟଶ୍ଚିତ୍ତ ଏହି ମହେନ୍ଦ୍ରଗିରିରେ ହୋଇଥିଲା । ଯଜ୍ଞ ଆରମ୍ଭ ହେଲା ହରିତ୍ମୁକ ବନରେ । ସେଠାରୁ ମହେନ୍ଦ୍ରଗିରି ଓ ମହୋଦଧିଯାଏଁ ଯଜ୍ଞାନୁଷ୍ଠାନର ସ୍ଥାନ ନିରୂପିତ ହେଲା । ଯଜ୍ଞରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ସହିତ ଅସଂଖ୍ୟ ଦେବଗଣ ଉପସ୍ଥିତ ଥିଲେ । ଏଠାରେ ଚଉଦକୋଟି ଶିବାଗଣଙ୍କୁ ଧରି କାପାଳୀ, ବିନାୟକ, ବିନାୟକ, ନନ୍ଦୀ, ମହାକାଳ, ଜୟନ୍ତ, ଅଜୟନ୍ତ, ପଥୀମଣ୍ଡଳ, ମୟୂର ବାହନରେ କାର୍ତ୍ତିକେୟ ଉପସ୍ଥିତ ହେଲେ । ତା ପରେ ସଭାରେ ଉପସ୍ଥିତ ଥିଲେ ଚଉଦକୋଟି ଚାମୁଣ୍ଡା, ଅସଂଖ୍ୟ ଯୋଗିନୀ, କାତ୍ୟାୟନୀ, କଙ୍କାଳୀ, ବେତାଳୀ, ଉଗ୍ରତାରା, ଚର୍ଚ୍ଚିକା, ଚାମୁଣ୍ଡାବୃନ୍ଦଙ୍କ ସହିତ ଚଣ୍ଡିକା, ଜଗନ୍ନାଥ, କୁବେର, ବରୁଣ, ପବନ (ଅଣଚାଶ ବାୟୁ ସହିତ) ଗରୁଡ଼ାନ, ଅଙ୍ଗାର ପନ୍ନଗ, ଚିତ୍ରସେନ, ଜୟନ୍ତ, ପ୍ରଚଣ୍ଡାବଳୀ, ଦେବଗଣ, ବିଜୟ, ମଘବା, ବାୟୁ, ବରୁଣ ସହିତ ଦିଗ୍‌ପାଳଗଣ, ତାରାଗଣ, ୨୭ ଯୋଗ, ୧୧ଶ ବରୁଣ, ଦେବଗୁରୁ ବୃହସ୍ପତି ଆଦି ତେତିଶିକୋଟି ଦେବତା, ସନକ, ସନନ୍ଦ, ବିଶ୍ୱକର୍ମା, ବିଶ୍ୱେଦେବା, ଏକ ଲକ୍ଷ ଶିଷ୍ୟଙ୍କ ସହିତ ବେଦ-ବ୍ୟାସ, ତିରିଶ ସହସ୍ର ଶିଷ୍ୟଙ୍କ ସହିତ ବଶିଷ୍ଠକ, ଅଗସ୍ତିଙ୍କ ସହିତ ଏକଲକ୍ଷ ଋଷି, ମହାସମାବେଶରେ ଲକ୍ଷ ଲକ୍ଷ ଋଷି, ଷାଠିଏ ସହସ୍ର ବାଲଖିଲ୍ୟଙ୍କ ସହିତ ମାର୍କଣ୍ଡେୟ, ଏକଲକ୍ଷ ଶିଷ୍ୟ ଘେନି ସୁମନ୍ତକ, ପରାଶର, ବିଶ୍ୱାମିତ୍ର, ଭୃଗୁ, ଭରଦ୍ୱାଜ, ଅଙ୍ଗିରା ଋଷିଙ୍କ ସହିତ ଅଶୀଏ ସହସ୍ର ଦ୍ୱିଜ, ଲୋମଶ ମୁନି, ସତ୍ୟପା, ବ୍ରହ୍ମବେତ୍ତା ନୈମିଷାରଣ୍ୟରୁ ଋଷିଗଣ ଆସି ଉପସ୍ଥିତ ଥିଲେ । ସମ୍ପୂର୍ଣ୍ଣ ଯଜ୍ଞର ଆୟୋଜନ ଭାର ନାରଦ ମହର୍ଷି ବହନ କଲେ । ମହେନ୍ଦ୍ର ଶିଖରରେ ସମସ୍ତ ଦେବଦେବୀଙ୍କ ପଦାର୍ପଣ ଏହାର ତୀର୍ଥ ମାହାତ୍ମ୍ୟକୁ ବହୁଗୁଣିତ କରିଅଛି । କବି ଗାଇଛନ୍ତି—

ହରଷ ମୁଖେ ବୋଲନ୍ତି ଧାତା ବେଦବର,  
ମହେନ୍ଦ୍ରମାଳା ନାମରେ ଶ୍ରୀ କନକେଶ୍ୱର ।  
ଶରବୀ ହାତରୁ ପୂଜା ଘେନି ରୁଦ୍ର ନିତ୍ୟ,  
ଦୁଃସହ ପାପୁଁ ତରିବେ ପାତକୀ ସମସ୍ତ ॥ (୭୫)

× × ×

(୭୫) ମହାଭାରତ : ଆଦ୍ୟପର୍ବ ପୃ ୧୯୬

ଅର୍ଜ୍ଜୁନ ପାପ ଧ୍ୱଂସନ କରି ଶଚୀନାଥ
ସ୍ୱର୍ଗ ପୁଷ୍ପ ବୃଷ୍ଟି କଲେ ଦେବେ ତାଙ୍କ ମାଥ ।।
ପଞ୍ଚ ପାଣ୍ଡବ ତହିଁରେ ପାଞ୍ଚଲିଙ୍ଗ ପୂଜି,
ମହେନ୍ଦ୍ରମାଳା ଗୋକର୍ଣ୍ଣେଶ୍ୱର ଲିଙ୍ଗ ହେଜି ।। (୭୬)

ଏଥିରୁ ପ୍ରମାଣିତ ହୁଏ ଏଠାରେ ପାଞ୍ଚ ଦେଉଳର ଯେକୌଣସି ଲିଙ୍ଗ ପୂଜା କଲେ ମଧ୍ୟ "ଗୋକର୍ଣ୍ଣେଶ୍ୱର ଲିଙ୍ଗ" ପୂଜା କରିବା ଫଳ ମିଳିଥାଏ । ପୂଜାପରେ ସମସ୍ତେ ହିଡ଼ିମ୍ବିକ ବନରୁ ମହେନ୍ଦ୍ର ଆସି ମହେନ୍ଦ୍ରଗିରିରେ ପାଞ୍ଚାଳେଶ୍ୱର ପୂଜା ଓ ପାପନାଶିନୀ କୁଣ୍ଡରେ ସ୍ନାନ ଦାନାଦି ସମାପନ କରି ମହାଦେବଙ୍କୁ ପୂଜା କରିଛନ୍ତି ଓ ମହାଦେବଙ୍କଠାରୁ ବର ପ୍ରାପ୍ତ ହୋଇଛନ୍ତି । ଗୋକର୍ଣ୍ଣେଶ୍ୱରଙ୍କ ମହିମା ଓ ମାହାତ୍ମ୍ୟ ସମ୍ପର୍କରେ ମାତାକୁନ୍ତୀ ସହଦେବଙ୍କୁ ପଚାରନ୍ତେ; ସହଦେବ ରାମାୟଣ କାଳର ଘଟଣା ବର୍ଣ୍ଣନା କରି ମହେନ୍ଦ୍ରଗିରି କପରି ମୋକ୍ଷ ପ୍ରଦାୟକ ସ୍ଥଳ ତାହା ବର୍ଣ୍ଣନା କରିଛନ୍ତି । (୭୭) ପଞ୍ଚ ପାଣ୍ଡବ ଏଠାରେ ଶାସନଟିଏ ବସାଇଥିଲେ । ବ୍ରାହ୍ମଣ ଅଭାବ ହେବା ଯୋଗୁଁ ବାଉରି ଶାସନ ବସାଇଥିବା ବିଷୟ ସାରଳା ଦାସ ବର୍ଣ୍ଣନା କରିଛନ୍ତି । ତା ପରେ

(୭୬) ମହାଭାରତ : ଆଦ୍ୟପର୍ବ ପୃ ୧୯୬

(୭୭) "ଜମଦଗ୍ନି ପର୍ବତରେ ଉଠେ ହନୁମନ୍ତ,
ଉଠନ୍ତେ ପର୍ବତଗୋଟି ହୋଇଲା ରସାଗତ ।
ତହୁଁ ବିକ୍ରମିଣ ହନୁ ଏ ମହେନ୍ଦ୍ର ଉଠି
ଲଙ୍କା ଗଡ଼କୁ ପବନ ସୁତ ଦେଲା ଦୃଷ୍ଟି ।
ବିକ୍ରମିଣ ତହୁଁ ଗଲା ଅଞ୍ଜନାର ସୁତ,
ପାଦ ଭରେ ହୋଇଲା ଏ ଗିରି ରସାଗତ ।
ଶୁଣ ସାବଧାନେ କୁନ୍ତଭୋଜର ଦୁହିତେ
ଏ ବିବର ହୋଇଲା ହନୁ ପଦା ଘାତେ ।
ମହେନ୍ଦ୍ରଗିରି ଏହାର ନାମ ଆଗୋ ମାତ
ଅମୋକ୍ଷ ଜନ ଏଠାରେ ହୁଅନ୍ତି ମୁକତ ।
ପାପ ନାଶିନୀରେ ସ୍ନାନ କଲେ ଶୁଦ୍ଧକାୟ,
ନଯାଉଇ ପାପୀ ଜନେ ନେଇ ଯମରାୟ ।
ଶତ ଶତ ଜନ୍ମର ଗୋ ପାପ ଯାଇ କ୍ଷୟ,
ମୁକତ ଗତି ଦିଅନ୍ତି ପ୍ରଭୁ ଦେବରାୟ ।
(ଆଦ୍ୟପର୍ବ ପୃ ୧୯୭)

ଧାର୍ମିକ ବନରେ ଘଟୋତ୍କଚ ଅଭିଷେକ ହୁଏ । କେତେକ ଅତିରଞ୍ଜିତ ବର୍ଣ୍ଣନା ସତ୍ତ୍ୱେ ମହେନ୍ଦ୍ରଗିରି ଏକ ଯଜ୍ଞପୀଠ, ସାଧନାକ୍ଷେତ୍ର ରୂପେ ସାରଳା ଦାସଙ୍କ ବର୍ଣ୍ଣନା ଉଲ୍ଲେଖନୀୟ । ମୂଳତଃ ଅର୍ଜୁନଙ୍କ ବନବାସ କାଳରେ, ଏହି ମହେନ୍ଦ୍ରଗିରି କିପରି ସାଂସ୍କୃତିକ କେନ୍ଦ୍ର ଥିଲା ତାର ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ଅର୍ଜୁନ ଯେଉଁ ଅଠର ଲକ୍ଷ ଗିରି ପରିଭ୍ରମଣ କରିଛନ୍ତି (୭୮) ତାର ସମସ୍ତ ଚିତ୍ର ନଦେଇ ସାରାଂଶ କେବଳ ପ୍ରସିଦ୍ଧ ପୀଠମାନଙ୍କର ବର୍ଣ୍ଣନା କରିଛନ୍ତି । ସାରଳା ଦାସ ତାଙ୍କ ମହାଭାରତରେ ସାରଳାଙ୍କ ବନ୍ଦନା ସହିତ ଚଣ୍ଡୀପୂଜା, ଚାମୁଣ୍ଡା ଇତ୍ୟାଦି ତନ୍ତ୍ର ଦେବଦେବୀଙ୍କୁ ମହେନ୍ଦ୍ରଗିରିକୁ ଓହ୍ଲାଇ ଆଣିଛନ୍ତି । (ଡନ୍ତ୍ର ପୂଜା ଓ ଶାକ୍ତପୀଠ ସ୍ୱତନ୍ତ୍ର ବିଭାଗରେ ବର୍ଣ୍ଣିତ)

ସାରଳା ଦାସ ଗୋକର୍ଣ୍ଣତୀର୍ଥ, କପିଳା ଗାଈ ବଧ ପରେ ସୃଷ୍ଟି ହେବା ବିଷୟ ବର୍ଣ୍ଣନା କରିଛନ୍ତି । (୭୯) ଭାରତ ବର୍ଷର ଅନେକ ସ୍ଥାନରେ ଗୋକର୍ଣ୍ଣେଶ୍ୱର, ଗୋକର୍ଣ୍ଣତୀର୍ଥ ପ୍ରତିଷ୍ଠା କରାଯାଇଥିଲେ ମଧ୍ୟ ତୀର୍ଥ ଭ୍ରମଣ କାଳରେ ଗୋକର୍ଣ୍ଣତୀର୍ଥ ଯାହା ମହାଦେବଙ୍କ ଦ୍ୱାରା ପ୍ରତିଷ୍ଠିତ, ତାହା ଏହି ମହେନ୍ଦ୍ରଗିରି ରୂପେହିଁ ସର୍ବାଗ୍ରେ ଗ୍ରହଣୀୟ । ପାଣ୍ଡବମାନେ ଏଠାରେ ଅନେକ ଦିନ ଅତିବାହିତ କରିଛନ୍ତି । ପର୍ଶୁରାମଙ୍କ ଚମତ୍କାର ଶକ୍ତିବଳରେ ତାଙ୍କ ଶିଷ୍ୟବର୍ଗ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ତଥା ସେମାନଙ୍କ ଶିଷ୍ୟ ପ୍ରଶିଷ୍ୟ, ସଖା ଓ ସୈନ୍ୟ ସମସ୍ତଙ୍କ ଆଗମନ ଯେ ଏକ ସାମରିକ ଆୟୋଜନର ସଙ୍କେତ ଦିଏ, ଏଥିରେ ସନ୍ଦେହ ନାହିଁ । ଅତଏବ ଏହି ମହେନ୍ଦ୍ରଗିରି ଦ୍ୱାପର ଯୁଗରେ ଆଧ୍ୟାତ୍ମିକ କେନ୍ଦ୍ର ଓ ସାମରିକ ଘାଟି ହିସାବରେ ଖ୍ୟାତି ଅର୍ଜନ କରିଥିଲା । ପଞ୍ଚପାଣ୍ଡବ ଏଠାରେ ସାଧନା କରିବା ସଙ୍କେତ, ଏଠାରେ ଥିବା ମନ୍ଦିରମାଳା ଯଥେଷ୍ଟ ପ୍ରମାଣ ଯୋଗାଇଥାଏ । ଏହା ଭୃଗୁ କ୍ଷେତ୍ର, ପର୍ଶୁରାମ କ୍ଷେତ୍ର ଇତ୍ୟାଦି ନାମରେ ତୀର୍ଥକ୍ଷେତ୍ରମାନଙ୍କରେ ପ୍ରଧାନ ଆସନ ଦାବୀ କରେ । ପାଣ୍ଡବମାନଙ୍କର ମହେନ୍ଦ୍ରଗିରିରେ ରହଣି କାଳରେ ଯେଉଁ ଲିଙ୍ଗ ପୂଜା କରୁଥିଲେ ତାହା (୧) ଧର୍ମେଶ୍ୱର, (୨) ଭୀମେଶ୍ୱର, (୩) ଅର୍ଜୁନେଶ୍ୱର, (୪) ନକୁଳେଶ୍ୱର (୫) ସହଦେବେଶ୍ୱର । କୁନ୍ତୀ ଯେଉଁ ଲିଙ୍ଗ ପୂଜା କଲେ ତାହା କୌନ୍ତେଶ୍ୱର । ଏହି ସମୟରେ ତେତିଶି କୋଟି ଦେବତା ତେତିଶି କୋଟି ଲିଙ୍ଗ ଏଠାରେ ପୂଜା କରିଥିଲେ । ଏହିଭଳି ଇନ୍ଦ୍ର ପୂଜା କରିବା ଲିଙ୍ଗ ଇନ୍ଦ୍ରେଶ୍ୱର, କୁବେର ପୂଜା କରିବା ଲିଙ୍ଗ କୁବେରେଶ୍ୱର, ବରୁଣଙ୍କ ବରୁଣେଶ୍ୱର, ଚନ୍ଦ୍ରଙ୍କର ଚନ୍ଦ୍ରେଶ୍ୱର, ବ୍ରହ୍ମାଙ୍କର ବ୍ରହ୍ମେଶ୍ୱର । ଏହିଭଳି ଅସଂଖ୍ୟ ଲିଙ୍ଗ ମହେନ୍ଦ୍ରରେ ପୂଜା ପାଇବ କଥା (ଶୁଦ୍ଧ ସଂସ୍କରଣ) ମହାଭାରତରେ ବର୍ଣ୍ଣିତ । (୮୦)

---

(୭୮) ମହାଭାରତ : ମଧ୍ୟପର୍ବ ।

(୭୯) ଶ୍ରୀ ଗୋକର୍ଣ୍ଣେଶ୍ୱର ମେଳା : ହାଡ଼ୁ ରାସ୍ତଗୁରୁ

(୮୦) ମହାଭାରତ, ଆଦିପର୍ବ : ସାରଳା ଦାସ, ପୃ ୬୨୮ ରୁ ୬୩୭
ସମ୍ପାଦନା ଡ଼. ଆର୍ତ୍ତବଲ୍ଲଭ ମହାନ୍ତି ।

ମହେନ୍ଦ୍ରର ସମସ୍ତ ଲିଙ୍ଗ ପୂଜା ସରିବା ପରେ ବ୍ୟାସଦେବଙ୍କ ଶବରମାନଙ୍କ ପ୍ରତି ପରାମର୍ଶ ଏହି ପ୍ରକାର ଥିଲି—

କୃଷ୍ଣ ବୋଇଲେ ଶୁଣ ହେ ଶବର
ପାଣି ପତ୍ର ନେଇ ପୂଜା କର ହର ।। (୮୧)

ଅଦ୍ୟାପି ଏଠାରି ଲିଙ୍ଗମାନଙ୍କୁ ଶବରମାନେହିଁ ପୂଜା କରିବା ପ୍ରାଧାନ୍ୟ ଦେଖାଯାଏ । କିଛି ଦିନ ପରେ ପାଣ୍ଡବ ପାଞ୍ଚ ଭାଇ ପୁନର୍ବାର ମହେନ୍ଦ୍ର ପର୍ବତକୁ ଆସିଛନ୍ତି । ଯୁଧିଷ୍ଠିରଙ୍କ ସମେତ ପଞ୍ଚଭ୍ରାତା ଗୋକର୍ଣ୍ଣେଶ୍ୱରଙ୍କୁ ପୂଜା କରି ଯାଇଛନ୍ତି । ଯେପରି ଶକ୍ତି ବିନା ଶିବଙ୍କର ଅସ୍ତିତ୍ୱ ତୁଚ୍ଛ, ସେହିଭଳି ମହେନ୍ଦ୍ର ବିନା ଭାରତର ଅସ୍ତିତ୍ୱ ତୁଚ୍ଛ । ସାରଳା ମହାଭାରତରେ ଏହା ପ୍ରମାଣିତ । ଅତଏବ ସାରଳାଙ୍କ ମତାନୁଯାୟୀ ଝଙ୍କଡ଼, ବିରଜା ଓ ଶ୍ରୀକ୍ଷେତ୍ର ଭଳି ଏହି ଗୋକର୍ଣ୍ଣେଶ୍ୱର ପୂଜିତ ମହେନ୍ଦ୍ରଗିରି ମଧ୍ୟ ଏକ ପ୍ରଧାନ ତୀର୍ଥକ୍ଷେତ୍ର ରୂପେ ପରିଚିତ ଥିଲା । ପୁଣି, ଏହା ନିଶ୍ଚିତ ଯେ ମୂଳ ମହାଭାରତର ବିଷୟବସ୍ତୁ ଦ୍ୱାରା ବିଭୋର ହୋଇ ସାରଳା ଏହା କଦାପି ଲେଖିନାହାନ୍ତି । ଏ ଧାରଣା ଦୂରୀକରଣ ନିମିତ୍ତ ମୂଳ ମହାଭାରତର ଆକ୍ଷରିକ ଅନୁବାଦକ କୃଷ୍ଣସିଂହଙ୍କ ମହାଭାରତ ଆଲୋଚନା କରିବା ନିତାନ୍ତ ପ୍ରୟୋଜନ ।

**କୃଷ୍ଣସିଂହ ମହାଭାରତ :**

ଗଞ୍ଜାମ ଜିଲ୍ଲାର ଧରାକୋଟର ରାଜା କୃଷ୍ଣସିଂହଙ୍କ ସଂସ୍କୃତ ମହାଭାରତର ଅନୁବାଦ, ଓଡ଼ିଆ ଭାଷାର ଏକ ପ୍ରଧାନ ଗ୍ରନ୍ଥ । ଜନପ୍ରିୟତାରେ ଏହା ସାରଳା ମହାଭାରତରେ ଠିକ୍ ପଛକୁ । (୮୨) ଏଥିରେ ସେ ଭାରତର ତୀର୍ଥମାନଙ୍କ ମଧ୍ୟରେ ମହେନ୍ଦ୍ରଗିରିକୁ ସର୍ବାଗ୍ରେ ସ୍ଥାନ ଦେବା ସ୍ୱାଭାବିକ ଯେହେତୁ ଏହା ମୂଳ ମହାଭାରତର ଅନୁବାଦ । (୮୩)

ପୁନର୍ବାର ଏଠାରେ ସୂଚନା ଦେବା ଉଚିତ ଯେ, ଅର୍ବାଚୀରେ ଶ୍ରୀରାମଚନ୍ଦ୍ର ପର୍ଶୁରାମଙ୍କ କଳାହରଣ ପରେ ପର୍ଶୁରାମ ଶକ୍ତିହୀନ ହୋଇ ଯାଆନ୍ତେ, ଦେବତାମାନଙ୍କ ଅନୁରୋଧକ୍ରମେ, ଶକ୍ତି ସଂଚୟ ନିମିତ୍ତ, ଶ୍ରୀରାମଚନ୍ଦ୍ର, ପୁନଃ ସକଳ ତୀର୍ଥ ଭ୍ରମଣ ନିମିତ୍ତ

---

(୮୧) ମହାଭାରତ : ଆଦିପର୍ବ ପୃ ୬୬୩ ଠାରୁ ପୃ ୬୬୫
ସମ୍ପାଦନା ଆର୍ତ୍ତବଲ୍ଲଭ ମହାନ୍ତି ।

(୮୨) ଓଡ଼ିଆ ସାହିତ୍ୟର ଇତିହାସ : ଡ଼. ମାୟାଧର ମାନସିଂ, ପୃ ୧୪୧

(୮୩) କୃଷ୍ଣସିଂହ ମହାଭାରତ : ପୃ ୧୧୬

ପର୍ଶୁରାମଙ୍କ ପରାମର୍ଶ ଦେଇଥିଲେ ଓ ପର୍ଶୁରାମଙ୍କ ମହେନ୍ଦ୍ର ପ୍ରେରଣ କରିଥିଲେ । ପର୍ଶୁରାମ ତାହା ପାଳନ କରି ପୁନଃ ଶକ୍ତିଶାଳୀ ହୋଇଥିଲେ । ପାଣ୍ଡବମାନଙ୍କ ଶକ୍ତି ଦୁର୍ଯ୍ୟୋଧନ ହରଣ କରିଥିବାରୁ ଶକ୍ତି ପରସ୍ପ ନମିତ୍ତ ଉପରୋକ୍ତ ପନ୍ଥା ଅନୁସରଣ କରିବା ପାଇଁ ନାରଦଙ୍କଠାରୁ ତୀର୍ଥଫଳ ବର୍ଣ୍ଣନା ପାଣ୍ଡବମାନେ ଶୁଣିଛନ୍ତି । ଏ ସମ୍ପର୍କରେ କୃଷ୍ଣସିଂହ ମହାଭାରତର କେତେକ ଉକ୍ତି ପ୍ରଣିଧାନଯୋଗ୍ୟ ।

ନାରଦଙ୍କଠାରୁ ଯୁଧିଷ୍ଠିରଙ୍କର ତୀର୍ଥଫଳ ବର୍ଣ୍ଣନା ଶ୍ରବଣରେ କବି କହନ୍ତି । (୮୪)

"ମହେନ୍ଦ୍ର ପର୍ବତରେ ରାମ ତୀର୍ଥ ଯାଇ
ସ୍ନାନ କରିଲେ ଲୋକ କୃତାର୍ଥ ହୁଅଇ ।"

ଧୌମଙ୍କର ତୀର୍ଥ ମାହାତ୍ମ୍ୟ ବର୍ଣ୍ଣନାରେ କବି କହନ୍ତି—

ମହେନ୍ଦ୍ର ପର୍ବତରେ ଭାର୍ଗବଙ୍କ ସ୍ଥାନ
ଦେଖିଲେ ଲୋକ ପାଏ ମଙ୍ଗଳ ବିଧାନ ।।
ତହିଁ ଯେ ବ୍ରହ୍ମଶାଳା ଭାଗୀରଥି ନଦୀ,
ରହିଣ ବୋହୁଛନ୍ତି ପାତାଳକୁ ଭେଦି ।

ଯୁଧିଷ୍ଠିରଙ୍କ ତୀର୍ଥଯାତ୍ରା ଅଗସ୍ତ୍ୟୋପାଖ୍ୟାନରୁ ପ୍ରମାଣିତ ହୁଏ । (୮୫)

"ଏ ବାହାରେ ଦେଖ ଅଛନ୍ତି ଭୃଗୁ ତୀର୍ଥ
ଏଥିରେ ସ୍ନାନ କଲେ ହେବଟି କୃତାର୍ଥ ।
ପୂର୍ବରେ ପର୍ଶୁରାମ ଏଥିରେ ମଜ୍ଜିଲେ
ନିଜ ତେଜ ପାଇଣ ରିପୁଙ୍କ ଗଞ୍ଜିଲେ ।"

ଯୁଧିଷ୍ଠିରଙ୍କ ତେଜ ଯେହେତୁ ଦୁର୍ଯ୍ୟୋଧନ ହରଣ କରିଛି, ମୁନି ଉପଦେଶ ଦିଅନ୍ତି—

"ତୁମ୍ଭର ତେଜ ଦୁର୍ଯ୍ୟୋଧନ ହରିଛି
ତା ଅରଜ ଏଥି ପଶି ହେ କୁନ୍ତୀ ବସ୍ରୀ ।। (୮୬)

---

(୮୪) କୃଷ୍ଣସିଂହ ମହାଭାରତ : ପୃ ୧୬୦
(୮୫) —ଏଜନ—
(୮୬) —ଏଜନ—ପୃ ୧୬୧

ପରଶୁରାମଙ୍କ ଜୀବନାଦର୍ଶ ସମ୍ପର୍କରେ କବି କହନ୍ତି—

"ତା ଦେଖି ରାମଚନ୍ଦ୍ର ମହାକୋପ ହୋଇ
ତାଙ୍କୁ ଦେଲେ ମହେନ୍ଦ୍ରଗିରିକି ପଠିଆଇ ।" (୮୭)

ଅତଏବ ଏହା ସ୍ୱତଃସିଦ୍ଧ ଯେ ଭାରତବର୍ଷର ତୀର୍ଥ ସ୍ଥାନମାନଙ୍କରେ ମହେନ୍ଦ୍ର ଶ୍ରେଷ୍ଠ ଆସନ ଦାବୀ କରେ ।

ମୂଳ ସଂସ୍କୃତ ମହାଭାରତରେ ଯେଉଁ ଅବତାରବାଦକୁ ଗ୍ରହଣ କରାଯାଇଛି, ତାହା ବରାହ, ନୃସିଂହ, ବାମନ ଓ ପରଶୁରାମ । କିନ୍ତୁ ଶାନ୍ତିପର୍ବରେ ବର୍ଣ୍ଣିତ ବିଷ୍ଣୁ (ନାରାୟଣ) ଅଂଶୀୟ, ରାମ ଓ କୃଷ୍ଣ ମିଶି ଷଡ଼ାବତାର । ପରବର୍ତ୍ତୀ କାଳରେ ହଂସ,କୂର୍ମ, ମତ୍ସ୍ୟ ଓ କଲ୍କି ଭେଦରେ ଦଶଅବତାର ଅଟନ୍ତି । ବାୟୁ ପୁରାଣ ମତରେ ଉପରୋକ୍ତ ଛଅ ଓ ଦତ୍ତାତ୍ରେୟ, ଋଷଭ, ମୋହନ ବେଦବ୍ୟାସ ଓ କଲ୍କୀ, ଏହି ଦଶାବତାର କଳ୍ପନା କରାଯାଇଛି । (୮୮) ଏହି ଅବତାରମାନଙ୍କ ସହିତ ରକ୍ତପାତ ଓ ରକ୍ତାକ୍ତ ସମରରେ ଲିପ୍ତ ହୁଅନ୍ତି ମହାବୀର ପରଶୁରାମ ।

ସାରଳା ମହାଭାରତର ବିଷୟବସ୍ତୁ ସହିତ ଅନ୍ୟାନ୍ୟ ମହାଭାରତ ଲକ୍ଷ୍ୟ କରାଯାଏ । ପରଶୁରାମଙ୍କ ସମ୍ପର୍କରେ ସାରଳା ମହାଭାରତର ବର୍ଣ୍ଣନା ଏହିପରି—

ଏହି ରୂପେ ପରଶୁରାମ ଏକାଦିକ୍ରମେ ଏକବିଂଶବାର ପୃଥିବୀକୁ ନିଃକ୍ଷତ୍ରିୟ କରି ସମନ୍ତ ପଞ୍ଚକ ନାମକ ପାଞ୍ଚଗୋଟି ରକ୍ତମୟ ହ୍ରଦ ନିର୍ମାଣ କରିଥିଲେ । ସେହି ହ୍ରଦରେ ପିତୃଗଣଙ୍କର ତର୍ପଣ କରି ତାହାଙ୍କ ପିତାମହ ଋଚିକଙ୍କୁ ସନ୍ତୁଷ୍ଟ କରିଥିଲେ । ସେତେବେଳେ ଋଚିକ ତାଙ୍କୁ ସ୍ୱଦେହରେ ଦର୍ଶନ ଦେଇ କ୍ଷତ୍ରିୟ ବଧ ନ କରିବା ପାଇଁ ବୁଝାଇଥିଲେ । ପରଶୁରାମ ଯଜ୍ଞ ସମ୍ପାଦନା କରି ଦେବେନ୍ଦ୍ରଙ୍କୁ ତୁଷ୍ଟି ସାଧନପୂର୍ବକ ଋତ୍ୱିକଗଣଙ୍କୁ ପୃଥିବୀକୁ ଦାନ କଲେ । ଏହା ବ୍ୟତୀତ ପରଶୁରାମ ଗୋଟିଏ ସ୍ୱର୍ଣ୍ଣବର୍ଣ୍ଣର ବେଦୀ ନିର୍ମାଣ କରି ମହାତ୍ମା କାଶ୍ୟପଙ୍କୁ ପ୍ରଦାନ କରିଥିଲେ । ସେ ବେଦୀର ବିସ୍ତାର ବ୍ୟାଳିଶ ହସ୍ତ ଓ ଉଚ୍ଚତା ଛତିଶ ହସ୍ତ । ବ୍ରାହ୍ମଣମାନେ ସେହି ବେଦୀକୁ ଖଣ୍ଡ ଖଣ୍ଡ କରି ପ୍ରତିଗ୍ରହ କରିଥିଲେ ବୋଲି ସେମାନେ ଖଣ୍ଡନାୟକ ନାମରେ ବିଖ୍ୟାତ ହୋଇଅଛନ୍ତି ।

(୮୭) କୃଷ୍ଣସିଂହ ମହାଭାରତ : ପୃ ୧୬୧

(୮୮) ନୃସିଂହ ଆରାଧନା : ଡ଼କ୍ଟର ସଚ୍ଚିଦାନନ୍ଦ ମହାନ୍ତି ପୃ ୧୧୮୨

କାଶ୍ୟପଙ୍କୁ ପୃଥିବୀ ଦାନ କଲାପରେ ସେ ମହେନ୍ଦ୍ର ଶୈଳ ବରକୁ ଆସି ସେଠାରେ ତୁମହାନ୍ତ୍ର ତପଶ୍ଚରଣପୂର୍ବକ ବାସ କରୁଅଛନ୍ତି । (୮୯)

ଇତଃପୂର୍ବରୁ କୁହାଯାଇଛି ଯେ ମହାଭାରତରେ ରାମାୟଣ ବୃତ୍ତାନ୍ତ ବର୍ଣ୍ଣନା ଛଳରେ ମହେନ୍ଦ୍ରଗିରିର ମହତ୍ତ୍ୱ ଓ ଗୁରୁତ୍ୱ ବର୍ଣ୍ଣନା କରାଯାଇଛି । ଅତଏବ ବିଭିନ୍ନ ରାମାୟଣମାନଙ୍କରେ ମହେନ୍ଦ୍ରକୁ କି ପ୍ରକାର ଆସନ ଦିଆଯାଇଛି ଜାଣିବା ନିତାନ୍ତ ପ୍ରୟୋଜନ ।

## ବିଭିନ୍ନ ଓଡ଼ିଆ ପୁରାଣ :

ବିଭିନ୍ନ ପୁରାଣ ତୁଳନାରେ ଓଡ଼ିଆ ଜନତା ଉପରେ ପୂର୍ଣ୍ଣ ମହାକାବ୍ୟ ରାମାୟଣ ଓ ମହାଭାରତ ଯେଉଁ ଗଭୀର ପ୍ରଭାବ ବିସ୍ତାର କରିଆସିଛି, ତାହା ଆଜି ପ୍ରତ୍ୟେକ ଗାଁଗହଳରେ ମଧ୍ୟ ଅନୁଭୂତ । ତିନି ପ୍ରକାର ମହାଭାରତ ଓ ପଚିଶ ପ୍ରକାର ବିଭିନ୍ନ ରାମାୟଣ ଓଡ଼ିଆରେ ଦେଖାଯାଏ । ଅଧ୍ୟାତ୍ମ ରାମାୟଣ ମଧ୍ୟ ତିନି ଜଣ ବିଭିନ୍ନ ଲେଖକଙ୍କ ଅଛି । (୯୦)

## ବିବିଧ ଓଡ଼ିଆ ରାମାୟଣ :

ଏହି ସମସ୍ତ ରାମାୟଣମାନଙ୍କରେ ବାଲ୍ମୀକି ରାମାୟଣର ଅନୁବାଦହିଁ ବାଲ୍ମୀକିଙ୍କ ମତ ବୋଲି ଧରି ନିଆଯାଇପାରେ । ଯେଉଁମାନେ ବାଲ୍ମୀକିଙ୍କ ମତ ବ୍ୟତୀତ ଅନ୍ୟାନ୍ୟ ବିଷୟବସ୍ତୁ ସ୍ୱ-ଅନୁଭୂତିରୁ ଦିଅନ୍ତି, ସେମାନଙ୍କ ଲେଖାରେ ଅସଂଖ୍ୟ ତୀର୍ଥମାନଙ୍କର ବର୍ଣ୍ଣନା ଦେଖାଦେଇଛି । ତୀର୍ଥମାନଙ୍କ ବର୍ଣ୍ଣନା ପାଇଁ ସ୍କନ୍ଦ ପୁରାଣ ଯେପରି ଅମୂଲ୍ୟ ଗ୍ରନ୍ଥ, ମହାକାବ୍ୟ ରାମାୟଣ ମଧ୍ୟ ବିଭିନ୍ନ ତୀର୍ଥକ୍ଷେତ୍ର ସୂଚନା ଦେବାରେ ଅଗ୍ରଗଣ୍ୟ । ଏ ସମସ୍ତ ରାମାୟଣରେ ଶ୍ରୀରାମଙ୍କ ସହିତ ପରଶୁରାମଙ୍କ ଭେଟ ସ୍ୱୀକୃତ ହୋଇଛି । ସେହିପରି ହନୁମାନଙ୍କ ଲଙ୍କାଗମନ ମଧ୍ୟ । ଏହି ଦୁଇ ମହାବୀରଙ୍କ ସହିତ ମହେନ୍ଦ୍ରଗିରି ଯେ ନିବିଡ଼ ସମ୍ପର୍କ ସ୍ଥାପନ କରିଛି, ଏହା ସର୍ବବାଦୀସମ୍ମତ ।

## ବାଲ୍ମୀକି ରାମାୟଣ :

ଓଡ଼ିଆ ବାଲ୍ମୀକି ରାମାୟଣରେ ସଂସ୍କୃତ ରାମାୟଣରେ ସାଦୃଶ୍ୟ ପରିଲକ୍ଷିତ ହୁଏ । ପରଶୁରାମ ପ୍ରଥମେ ମହେନ୍ଦ୍ରରେ ଅବସ୍ଥାନ କରିଥିଲେ । ଏଠାରେ ସେ ଆତ୍ମ

---

(୮୯) ମହାଭାରତ : ଶ୍ରୀଗୋବିନ୍ଦଚନ୍ଦ୍ର ମହାପାତ୍ର, ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରକାଶିତ, ପୃ ୪୧୮

(୯୦) ଓଡ଼ିଆ ସାହିତ୍ୟର ଇତିହାସ : ଡ଼କ୍ଟର ମାୟାଧର ମାନସିଂହ, ପୃ ୧୪୦

ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀ ଅବସ୍ଥାରେ ଶ୍ରୀରାମଙ୍କୁ ସମସ୍ତ କଳା ପ୍ରଦାନ କରି ମହେନ୍ଦ୍ରରେ ଅମର ହୋଇ ରହିଛନ୍ତି । ଯେତିକିରେ ଯୁଗରୁ ପରଶୁରାମଙ୍କ ଅବସ୍ଥାନ ବର୍ଣ୍ଣନା ହୋଇଥିଲେ ହେଁ, ତା ପୂର୍ବରୁ ସତ୍ୟଯୁଗରେ ଏହା ·ପରଶୁରାମଙ୍କ ସାଧନାକ୍ଷେତ୍ର ଥିଲା । (୧୧) ରାମ ପରଶୁରାମ ଯୁଦ୍ଧ ଚାଲିଥିବା ସମୟରେ ନିଜେ ନିଜର ବୃତ୍ତାନ୍ତ ଦେବା ସମୟରେ କଶ୍ୟପ ମହର୍ଷିଙ୍କ ଆଦେଶକ୍ରମେ ସେ ନରହତ୍ୟା ଅପରାଧରୁ ମୁକ୍ତିଲାଭ ପାଇଁ ମହେନ୍ଦ୍ରରେ ଅବସ୍ଥାନ କରିଥିଲେ । କୁହାଯାଇଛି—

"ସମଗ୍ର ପୃଥିବୀ ଦେଲୁ କଶ୍ୟପଙ୍କ ହସ୍ତେ
ତପ କରୁଅଛୁ ରହି ମହେନ୍ଦ୍ର ପର୍ବତେ ।" (୧୨)

ବର୍ତ୍ତମାନ ହେଁ ମହେନ୍ଦ୍ରରେ ସେ ବିଚରଣ କରୁଅଛନ୍ତି । ତେଣୁ ମଧ୍ୟରାତ୍ରରେ ଏଠାରେ ଘଣ୍ଟାନାଦ ଓ ସାୟଂକାଳରେ ତର୍ପଣ ଧ୍ୱନି ଶୁଭେ ବୋଲି କିମ୍ବଦନ୍ତୀ ଅଛି । ଏହି କିମ୍ବଦନ୍ତୀ ସାଧକଙ୍କ ପ୍ରତ୍ୟକ୍ଷ ପ୍ରମାଣରୁ ସ୍ପଷ୍ଟ । ଶବର ପଲ୍ଲୀରେ ମଧ୍ୟ ପରଶୁରାମଙ୍କ ସ୍ମୃତି ଅଦ୍ୟାପି ସୁପରିଚିତ । ମହେନ୍ଦ୍ରର ଶବର ପଲ୍ଲୀମାନଙ୍କରେ ଦୁଇଟି ଲେଖାଏଁ କାଷ୍ଠ ନିର୍ମିତ ସ୍ତମ୍ଭ ପୋତି ପୂଜା କରୁଅଛନ୍ତି । ସେମାନେ ହେଲେ ରାମ୍ମା ଓ ଭୀମା; 'ରାମ୍ମା' ପରଶୁରାମଙ୍କୁ ବୁଝାଇଥାଏ ଓ ଭୀମା ଭୀମଙ୍କୁ ବୁଝାଏ । ଗବେଷକଙ୍କ ମତରେ ଭୀମାସୁର ଏଠାରେ ଅବସ୍ଥାନ କରି ଗୋଟିଏ ଶୃଙ୍ଗ ଉପାଡ଼ି ନେବା ପାଇଁ ନିଜ ଶିଙ୍ଗରେ ଶୃଙ୍ଗଟି ଟାଳିଥିଲା । ସେହି ଗର୍ତ୍ତିଦ୍ରସ୍ଥ କିମ୍ବଦନ୍ତୀର ସାକ୍ଷ୍ୟ ବହନ କରି ଅଦ୍ୟାପି ଦର୍ଶକଙ୍କ ଦୃଷ୍ଟିରେ ପଡ଼େ । ପରଶୁରାମଙ୍କ ଏହି ସାଧନାକ୍ଷେତ୍ର ସତ୍ୟ ଓ ତ୍ରେତୀୟା ଯୁଗରୁ ପୃଥିବୀରେ ପ୍ରସିଦ୍ଧି ଲାଭ କରିଛି । ଦକ୍ଷିଣ ଦିଗରେ ଯେଉଁମାନେ ସୀତା ଅନ୍ୱେଷଣରେ ଯାଇଥିଲେ, ସେମାନେ ହେଲେ, ନୀଳ—ଅଗ୍ନିପୁତ୍ର, ଜାମ୍ବୁବାନ—ବ୍ରହ୍ମାସୁତ, ହନୁ—ବାୟୁସୁତ, ଅଙ୍ଗଦ—ବାଲିସୁତ ସମେତ ଅନ୍ୟ କେତେକ ବାନର । ସମୁଦ୍ର ଲଂଘନ ସମୟର ବର୍ଣ୍ଣନାରେ କବି କହନ୍ତି—

ପୁଣି ସେ ବାନର ଶ୍ରେଷ୍ଠ ହନୁମାନ ବୀର,
କୁସୁମ ବୃକ୍ଷମାନଙ୍କୁ ବଢ଼ାଇ ଶରୀର ।
ପର୍ବତ ପରି ଆକାର କଲେ ସେ ଧାରଣ
ଦେଖିବାକୁ ଅତିକାୟ ହୋଇଲେ ଖପଣ । (୧୩)

(୧୧) ବାଲ୍ମୀକି ରାମାୟଣ : ଭଗବତପ୍ରସାଦ ଦାନ, ପୃ ୪୭ ରୁ ୧୬
(୧୨) —ଏଜନ—
(୧୩) ବାଲ୍ମୀକି ରାମାୟଣ : ଭଗବତପ୍ରସାଦ ଦାନ, ପୃ ୪୭ ରୁ ୧୬

ଲଙ୍କାରୁ ପ୍ରତ୍ୟାବର୍ତ୍ତନକାଳୀନ ବର୍ଣ୍ଣନା—

ନିର୍ଣ୍ଣୟରେ ଦେଖିକରି ମହେନ୍ଦ୍ରପର୍ବତ
ଆନନ୍ଦରେ ଘୋର ନାଦ କରି ହନୁମନ୍ତ ।
ସେହି ସଙ୍କଟରେ ରହି ଶୂନ୍ୟେ ବାରମ୍ବାର,
ଗରଜନ ମେଘପ୍ରାୟ ପବନ କୁମର ।
ସେ ଗର୍ଜନ ଶୁଣି କମ୍ପମାନ ହେଲ
ଚହିଁ ଥାଇ ବାନରଙ୍କୁ ମାରୁତ ଦେଖିଲ ।
ଏ ସମୟେ ହନୁମାନ ଆକାଶରୁ ଖସି,
ପଡ଼ିଲ ମହେନ୍ଦ୍ରଗିରି ଶିଖରରେ ଆସି ।
ଅରିଷ୍ଟ ପର୍ବତୁ ଡେଇଁ ଆସି ହନୁମାନ,
ମହେନ୍ଦ୍ର ପର୍ବତେ ପଡ଼ି ବୃକ୍ଷ କଲ ଚୂର୍ଣ୍ଣ । (୧୪)

ତେବେ ହନୁମାନଙ୍କ ଲଙ୍କାଭିଯାନ ରକେଟର ଗତି ଭଳି ଥିଲ, ଏହା ସଂସ୍କୃତ ରାମାୟଣ ପ୍ରମାଣ ଦିଏ । ଓଡ଼ିଆ କବି ମଧ୍ୟ ସେହିପଥ ଅନୁସରଣ କରିଅଛନ୍ତି । କିନ୍ତୁ ପ୍ରତ୍ୟାବର୍ତ୍ତନ କାଳରେ ସଂସ୍କୃତ ରାମାୟଣ କହେ ହନୁମାନ ସମୁଦ୍ରରେ ପଡ଼ିଛନ୍ତି ଯେପରି ରକେଟ ଫେରିବା ସମୟରେ ସମୁଦ୍ରରେ ପଡ଼େ । କିନ୍ତୁ ଏଠାରେ ବ୍ୟତିକ୍ରମ ଦେଖା ଦେଉଛୁ । ଓଡ଼ିଆ କବି ପ୍ରତ୍ୟାବର୍ତ୍ତନ କାଳରେ ମହେନ୍ଦ୍ରଗିରିରେ ହିଁ ପଦାର୍ପଣ କରାଇଛନ୍ତି ଓ ପଡ଼ିଥିବା ସ୍ଥାନର ବୃକ୍ଷରାଜି ଚୂର୍ଣ୍ଣ ହୋଇଛନ୍ତି । କିନ୍ତୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ସଂସ୍କୃତ ପୁରାଣର ବିବରଣୀ ଗ୍ରହଣୀୟ । ଓଡ଼ିଆ କବି ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବୀ କରେ । ତାହା ଅବଲୋକନ କଲେ ପ୍ରକୃତ ସ୍ୱରୂପ ଜାଣିବା ସ୍ପଷ୍ଟ ହେବ ।

## ଦାଣ୍ଡି ରାମାୟଣ :

ଦାଣ୍ଡି ରାମାୟଣ ବା ଜଗମୋହନ ରାମାୟଣରେ ବାଲ୍ମୀକି ରାମାୟଣରେ ନଥିବା ଅନେକ ବିଷୟବସ୍ତୁ ପ୍ରଦତ୍ତ । ସେଥିରୁ କେତେକ ବିଭିନ୍ନ ପୁରାଣରୁ ଗୃହୀତ । (୧୫) ବଳରାମ ଦାସ ବିଭିନ୍ନ ପ୍ରସିଦ୍ଧ କ୍ଷେତ୍ରର ବର୍ଣ୍ଣନାକ୍ରମେ କୁଳାଚଳ ମହେନ୍ଦ୍ରଗିରିକୁ ପ୍ରାଧାନ୍ୟ ଦେଲେହେଁ ପର୍ଶୁରାମ ନିବାସ ସ୍ଥଳକୁ କୈବଲ୍ୟ ସ୍ଥଳ ବୋଲି ବର୍ଣ୍ଣନା କରିଛନ୍ତି ।

---

(୧୪) ବାଲ୍ମୀକି ରାମାୟଣ : ଭଗବତପ୍ରସାଦ ଦାଜ, ପୃ ୪୭ ରୁ ୧୭
(୧୫) ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପୃ ୨୦୪

ବାଲ୍ମୀକି ରାମାୟଣର ଉତ୍ତର କାଣ୍ଡରେ ବିଶ୍ୱାମିତ୍ର ଓ ତାର ଜନ୍ମ ବଳରାମ ଦାସ ରକ୍ଷାକରି ନାହାନ୍ତି । ହନୁମାନଙ୍କ ସମୁଦ୍ର ଲଂଘନ ପ୍ରସଙ୍ଗ କିଷ୍କିନ୍ଧ୍ୟା କାଣ୍ଡରେ ନ ଦେଇ ସେ ସୁନ୍ଦର କାଣ୍ଡରେ ଦେଇଛନ୍ତି । ପ୍ରାସଙ୍ଗିକ ବାକ୍ୟ ସନ୍ଧ୍ୱେ ହନୁମାନ ମହେନ୍ଦ୍ରପର୍ବତରୁ ଲଙ୍କା ଗମନ କରିବା ବର୍ଣ୍ଣନା ଅତି ଚମତ୍କାର ହୋଇଛି—

"ଶତ ଯୁଣ ପଥ ପୁଣି ଘର ଗ୍ରାମ ନାହିଁ,
କେଉଁ ପଥରେ ଯିବ ପଥ ନ ଦିଶଇ ।
ପର୍ବତ ଉପରେ ବସିଲ ଡେ଼ଇଁଯାଇ,
ମହୀ ବୁଲୁକରି ଗିରି ଗଲ ଲେଉଟ ହୋଇ ।
ମହାତେଜ ମୂର୍ତ୍ତି ଧରି ଗଗନେ ଉଡ଼ଇ,
×　　×　　×
ପର୍ବତରେ ଯେତେ ସ୍ଥାନ ଯେତେ ଜଳ ଥଳେ,
ଗିରି ଲେଉଟ ହୁଅନ୍ତେ ସେ ଜଳକୁ ବୋହିଲେ । (୧୬)

ସେହିଭଳି ପର୍ଶୁରାମଙ୍କ ଆଗମନ କାଳର ବର୍ଣ୍ଣନା : ପର୍ଶୁରାମ କହନ୍ତି—

ଜଣସ୍ୱ ଜାଣିଲୁ ତୁମ୍ଭେ ବିଷ୍ଣୁ ଅବତାରେ
ତୁମ୍ଭ ଦର୍ଶନ ହେଲ ପିତୃଭକ୍ତ ବଳେ । (୧୭)

ଦାଣ୍ଡି ରାମାୟଣରେ କବି ଭବ ବିଭୋର ହୋଇ କ୍ଷେତ୍ର ମାହାତ୍ମ୍ୟ ବିଷୟକୁ ବହୁବାର ଆବୃତ୍ତି ଛଳରେ ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । ଏହା ଫଳରେ କବି ଏହି ମହେନ୍ଦ୍ରାଚଳକୁ ଶ୍ରୀ ପର୍ବତାଦି ଭାବରେ ମଧ୍ୟ ଦେଖିଛନ୍ତି । ଏଠାରେ ଓଡ଼ିଆ ଅଧ୍ୟାତ୍ମ ରାମାୟଣର ଦୃଷ୍ଟାନ୍ତ ମଧ୍ୟ ବିଚାର୍ଯ୍ୟ ।

**ଅଧ୍ୟାତ୍ମ ରାମାୟଣ :**

ଓଡ଼ିଆ ଅଧ୍ୟାତ୍ମିକ ରାମାୟଣଗୁଡ଼ିକ ମୂଳ ସଂସ୍କୃତ ରଚନାର ଗ୍ରନ୍ଥାରେ ରଚିତ । ତେବେ ମହେନ୍ଦ୍ର ସମ୍ପର୍କୀୟ ବର୍ଣ୍ଣନା କ୍ଷେତ୍ରରେ କେତେକ ଚମତ୍କାରିତା ଲକ୍ଷଣୀୟ । ରାମ ପର୍ଶୁରାମ ଭେଟ ବର୍ଣ୍ଣନାରେ ଉଲ୍ଲେଖ ଅଛି ।

---

(୧୬) ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପୃ ୪୦୦

(୧୭) ଦାଣ୍ଡି ରାମାୟଣ : ସୁନ୍ଦରକାଣ୍ଡ, ପୃ ୬

"ହେ ରାମ ମୋତେ କ୍ଷମାକର, ମୁଁ ଏବେ ତାରଣ ତୁମ୍ଭର ।।
× × ×
ହେ ରାମ ଅନୁଗ୍ରହ କର, ତୋ ପଦେ ମନ ମତ୍ତ ମୋର ।।
× × ×
ଶୁଣି ଶ୍ରୀ ରାମ କୋଳ କଲେ ଅସ୍ତୁ ବୋଲିଣ ବର ଦେଲେ ।
ଆନନ୍ଦ ମନେ ପର୍ଶୁରାମ ସାଷ୍ଟାଙ୍ଗ କରିଣ ପ୍ରଣାମ ।।
ରାମଙ୍କୁ ପ୍ରଦକ୍ଷିଣ କଲେ ମହେନ୍ଦ୍ର ପର୍ବତକୁ ଗଲେ । (୯୮)

ହନୁମାନଙ୍କର ମହେନ୍ଦ୍ର ପର୍ବତରୁ ଲମ୍ଫ ପ୍ରଦାନକାଳୀନ ବର୍ଣ୍ଣନାରେ କୁହାଯାଇଛି—

ମେଲାଣି ହୋଇ ଚଳିଗଲେ, ମହେନ୍ଦ୍ର ପର୍ବତେ ମିଳିଲେ ।
ହୋଇଲେ ପର୍ବତ ଆକାର ଦଶିଲେ ସୁବର୍ଣ୍ଣ ପ୍ରାକାର ।
× × ×
ଯିବା ଉଦ୍ୟମ ସନ୍ଧି କଲେ ସକଳ ନଗରେ ଦଶିଲେ । (୯୯)

ଏ ସନ୍ଦର୍ଭରେ ଅନ୍ୟାନ୍ୟ ଓଡ଼ିଆ ରାମାୟଣର ପ୍ରସଙ୍ଗ ଉଦ୍ଧରଣଯୋଗ୍ୟ ।

**ଅନ୍ୟାନ୍ୟ ଓଡ଼ିଆ ରାମାୟଣ :**

ଏହା ବ୍ୟତୀତ ବିଶ୍ୱନାଥ ଖୁଣ୍ଟିଆ (୧୮ଶ ଶତାବ୍ଦୀ)ଙ୍କ ବିଚିତ୍ର ରାମାୟଣର ହନୁମାନଙ୍କ ଲଙ୍କାଗମନ ବୃତ୍ତାନ୍ତ ଅତୀବ ଚମତ୍କାର ।

"ମହେନ୍ଦ୍ରଗିରି ଆରୋହିଲେ ହନୁ
କାୟା ବଢ଼ାଇଲେ ପବନ ସୁନୁ ।
ଆକାଶ ମାର୍ଗକୁ ଲଗିଲା ଶିର ।
ଝଟନ୍ତେ ଲମ୍ପିଗଲେ ଗିରିବର । (୧୦୦)

ସମକାଳୀନ ଅନ୍ୟତମ କବି କେଶବଚନ୍ଦ୍ର ପଟ୍ଟନାୟକଙ୍କ କେଶବ ରାମାୟଣରେ ରାମ-ପର୍ଶୁରାମ ଯୁଦ୍ଧ ଓ ପର୍ଶୁରାମଙ୍କ ବଳାହରଣ ଏବଂ ଅବଶେଷରେ ମହେନ୍ଦ୍ରଗିରିରେ ତାଙ୍କର କାଳଯାପନ ପ୍ରସଙ୍ଗ ବିଶେଷ ଉଲ୍ଲେଖଯୋଗ୍ୟ । କବିଙ୍କ ଭାଷାରେ—

---

(୯୮) ଗୋପାଳ କୃତ ଅଧ୍ୟାତ୍ମ ରାମାୟଣ : ଆଦିକାଣ୍ଡ ପୃ, ୩୧
(୯୯) ଅଧ୍ୟାତ୍ମ ରାମାୟଣ : କବି ୬ ସୂର୍ଯ୍ୟମଣି ତ୍ୟାଗି ପଟ୍ଟନାୟକ, ପୃ ୩୦
(୧୦୦) କେଶବ ରାମାୟଣ : ରାମଚନ୍ଦ୍ର ତ୍ୟାଗି ପଟ୍ଟନାୟକ, ପୃ ୧୬୮

"କର ଯୋଡ଼ି ପାଦେସଡି ସ୍ତୁତି ବଖାଣନ୍ତି,
ନମୋନମୋ ଘନଶ୍ୟାମ ପରଂବ୍ରହ୍ମ ମୂର୍ତ୍ତି ।
× × ×
ଯୋଡ଼ିକର ଛାଡ଼ିକରି ଉଚ୍ଚ ଗିରି ଡାକ,
ବୋଲେ କେଶବ ଗଲେ ସେ ମହେନ୍ଦ୍ରଗିରିକେ । (୧୦୧)

ସପ୍ତଦଶ ଶତାବ୍ଦୀର ଶେଷଭାଗର ପ୍ରତିଭା କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସକୁ ପୁରାଣ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯିବା ଅବାନ୍ତର ଭଳି ମନେ ହେଲେ ବି ବିଷୟବସ୍ତୁ ଦୃଷ୍ଟିରୁ ଏହାକୁ ରାମାୟଣଠାରୁ ଗୌଣଭାବରେ ଧରାଗଲେ ଅଯଥାର୍ଥ ହେବ । ଓଡ଼ିଆ ସାହିତ୍ୟ ଭଣ୍ଡାରର ଏହା ଏକ ଉଚ୍ଚକୋଟୀର ରାମ ସାହିତ୍ୟ । ଏଥିରେ କିନ୍ତୁ ମୂଳ ରାମାୟଣର ବର୍ଣ୍ଣନା ମୌଳିକତାର ପୃଷ୍ଠରେ ପରିମାର୍ଜିତ । କବିଙ୍କ ଭାଷାରେ ହନୁମାନଙ୍କ ମହେନ୍ଦ୍ରରୁ ଲମ୍ଫ ପ୍ରଦାନକାଳୀନ ବର୍ଣ୍ଣନା ଏହିପରି । (୧୦୨)

"ବୃକ୍ଷ ଜନ୍ମି ସ୍ଥିତି ଗିରି ଅଧୋଗତି ଭକ୍ଷଣେ
ଉଦର ଫାଟି ଯେ ବୀର ହନୁମାନ କରନ୍ତେ ଗମନ
ବିଷମ ସମସ୍ୟା ଘଟି ଯେ,
ବାହାର ବାୟୁରେ ତରୁ ସଞ୍ଚରି ଯେ ।

**ଶ୍ରୀମଦ୍ ଭାଗବତ :**

ଓଡ଼ିଆ ସାହିତ୍ୟରେ ଭକ୍ତକବି ଜଗନ୍ନାଥ ଦାସଙ୍କ ସ୍ଥାନ ଅଦ୍ୱିତୀୟ । ସାରଳା ଦାସଙ୍କ ପଛକୁ, ତାଙ୍କୁ ଓଡ଼ିଆ ଜାତିର ଅନ୍ୟତମ ନିର୍ମାତା ରୂପେ ଗ୍ରହଣ କରାଯାଇ ପାରେ । ସେ ମଧ୍ୟ ନିଜ ରଚନାରେ ମହେନ୍ଦ୍ରଗିରିକୁ ଏକ ଅଦ୍ୱିତୀୟ ସ୍ଥାନ ଦେଇଛନ୍ତି । ଭାଗବତରେ କୁହାଯାଇଛି ଯେ ପରଶୁରାମ ମାତୃହତ୍ୟା କଳାପରେ ବହୁତୀର୍ଥ ଭ୍ରମଣ କରି ଶେଷତୀର୍ଥ ମହେନ୍ଦ୍ରଗିରିରେ ପଦାର୍ପଣ କରିଛନ୍ତି । ଭାଗବତରେ ମହେନ୍ଦ୍ରଗିରି ପରଶୁରାମ କ୍ଷେତ୍ରରୂପେ ସ୍ଥାନ ପାଇବା ନିଶ୍ଚିତରେ ଏକ ଗୌରବର ବିଷୟ । ଭାଗବତ କହେ—

ଭବିଷ୍ୟ ମନ୍ୱନ୍ତର କାଳେ, ବ୍ରହ୍ମାବିହାର ଯୋଗବଳେ ।
ସିଦ୍ଧ ଗନ୍ଧର୍ବ ସ୍ତୁତି କଲେ, ମହେନ୍ଦ୍ର ପର୍ବତେ ମିଳିଲେ ।
ଏମନ୍ତ ଭୃଗୁବଂଶେ ହରି, ନରଶରୀର ଦେହଧରି ।
× × × ×

---

(୧୦୧) ବିଚିତ୍ର ରାମାୟଣ : ବିଶ୍ୱନାଥ ଖୁଣ୍ଟିଆ

(୧୦୨) ବୈଦେହୀଶ ବିଳାସ : କବିସମ୍ରାଟ ଉପେନ୍ଦ୍ରଭଞ୍ଜ (ଷୋଡଶ ଛାନ୍ଦ)

 କ୍ଷତ୍ରିୟ କର୍ମ ଏ ଶସ୍ତ୍ରଲେ    ତେଜିଲେ ତପସ୍ୟାର ବଳେ ।
ବ୍ରହ୍ମାବଚନେ ଶ୍ରଦ୍ଧା କଲେ    ମହେନ୍ଦ୍ର ପର୍ବତେ ରହିଲେ । (୧୦୩)

ମହେନ୍ଦ୍ର ପର୍ବତରେ ପବିତ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠିତ ହୋଇଥିବା ଦଶମ ସ୍କନ୍ଦରେ ବର୍ଣ୍ଣିତ ହୋଇଛି । ଏତଦ୍ ବ୍ୟତୀତ କଳିଙ୍ଗ ଆଦିବାସୀ ପୁଳିନ୍ଦମାନଙ୍କର ଏହା ବାସସ୍ଥାନ, ଏହାର ସୂଚନା ଦେଇଛନ୍ତି ।

"କିରାତ ହୂଣ ଆନ୍ଧ୍ର ଯେତେ ପୁଳିନ୍ଦ ଚଣ୍ଡାଳ ସହିତେ ।" (୧୦୪)

ପର୍ଶୁରାମଙ୍କ ସମ୍ପର୍କରେ ଉଲ୍ଲେଖ ଅଛି—ଏକବିଂଶବାର କ୍ଷତ୍ରିୟମାନଙ୍କୁ ସଂହାର କରି ସାରା ପୃଥିବୀର ବିଭିନ୍ନ ସ୍ଥାନରେ ରକ୍ତକୁଣ୍ଡ ନିର୍ମାଣ କରି ସେହି ରାଜରକ୍ତରେ ପିତୃ ତର୍ପଣ କରିଥିଲେ । (୧୦୫)

ଭୌଗୋଳିକ ପ୍ରସଙ୍ଗ ବର୍ଣ୍ଣନାରେ ଭାଗବତ କହେ—

ମହେନ୍ଦ୍ର ମେରୁ ଯେ ମନ୍ଦର    ସୁବର୍ଣ୍ଣ ଆଦି ଗିରିବର ।
× × ×
ମହୀନ୍ଦ୍ର ବିନ୍ଧ୍ୟ ଗିରିଧର    ଶକ୍ତି ମାଳ୍ୟବାନ ବାରିଧର । (୧୦୬)

ହରିଙ୍କର ପ୍ରିୟସ୍ଥଳ ବର୍ଣ୍ଣନାରେ—

ପୁଲମା ନର ନାରାୟଣ    ନନ୍ଦାସୀତସ୍ଥା ଗ୍ରାଧାଶ୍ରମ ।
ମହେନ୍ଦ୍ର ମଳୟ ପର୍ବତେ    ଏମନ୍ତ କ୍ଷେତ୍ର ଅଛି ଯେତେ ।
ଏ ସର୍ବସ୍ଥାନ ଅତିପ୍ରିୟ    ତେଣୁ ଜଗତେ ପୁଣ୍ୟମୟ । (୧୦୭)

---

(୧୦୩) ଶ୍ରୀମଦ୍ଭାଗବତ : ଭକ୍ତକବି ଜଗନ୍ନାଥ ଦାସ, ନବମ ସ୍କନ୍ଦ ।

(୧୦୪) —ଏଜନ— ୨/୪/୧୧

(୧୦୫) ସେଥିରୁ ମହେନ୍ଦ୍ରର ପାଦଦେଶରେ ନଅଗୋଟି କୁଣ୍ଡ, କୁରୁକ୍ଷେତ୍ରରେ ୫ ଗୋଟି କୁଣ୍ଡ ସୁରକ୍ଷିତ । ଅନ୍ୟଗୁଡ଼ିକ କେରଳରେ ଓ ଆମେରିକାର କାଲିଫର୍ଣ୍ଣିଆରେ ଥିବା ଜନଶ୍ରୁତି ରହିଛି ।

(୧୦୬) ଶ୍ରୀମଦ୍ ଭାଗବତ ମହାପୁରାଣ—ପଞ୍ଚମ ସ୍କନ୍ଧ, ପୃ ୫୫

(୧୦୭) —ଏଜନ—୭ମ ସ୍କନ୍ଧ

ଭାଗବତ ଏକ ଗଣତାନ୍ତ୍ରିକ ଧର୍ମ । ଏହା ମଣିଷ ମଣିଷ ଭିତରେ କୌଣସି ଭେଦ ସ୍ୱୀକାର କରେ ନାହିଁ । କାରଣ ଜୀବାତ୍ମାହିଁ ପରମାତ୍ମା । ଏ ସବୁ ମଣିଷ ଈଶ୍ୱରଙ୍କ ଅବତାର ××× । ଏହି ଧର୍ମରେ ସ୍ତ୍ରୀ, ଶୁଦ୍ର, ଚଣ୍ଡାଳ, ଯବନ, ମ୍ଳେଚ୍ଛ ଭେଦ ସ୍ୱୀକାର କରେ ନାହିଁ । (୧୦୮)

ଅନ୍ୟତମ ଭକ୍ତକବି ଦୀନକୃଷ୍ଣ ଦାସଙ୍କ 'ନାମରତ୍ନ ଗୀତା'ରେ ଉପଲବ୍ଧ ମହେନ୍ଦ୍ର ସମ୍ପର୍କୀୟ ଏକ ନୂତନ ତଥ୍ୟକୁ ଏଡ଼ାଇ ଦିଆଯାଇ ନପାରେ ।

**ନାମରତ୍ନ ଗୀତା :**

ପାଣ୍ଡବଙ୍କ ପାତକ ନାଶନ ଯଜ୍ଞରେ ସୁଧର୍ମା ସଭାକୁ କପରି ମହେନ୍ଦ୍ରଗିରି ଉପରକୁ ଅଣାଯାଇଥିଲା, ତାହାର ବିସ୍ତୃତ ବିବରଣୀ ଏହି ନାମରତ୍ନ ଗୀତାରେ ବର୍ଣ୍ଣିତ । (୧୦୯)

ଏହି ସୁଧର୍ମା ସଭାର (୧୧୦) ଚତୁର୍ଦ୍ଦିଗରେ ମେରୁ ପର୍ବତ ଚାରି ଶାଖା ଭାବରେ ବିଦ୍ୟମାନ । ଅଷ୍ଟଗିରି ପର୍ବତ ଏହାର ଚତୁର୍ଦ୍ଦିଗରେ ପରିବେଷ୍ଟିତ । ମେରୁର ଉତ୍ତର ଭାଗରେ କୈଳାସ, ପଶ୍ଚିମରେ ବିନ୍ଧ୍ୟ, ପୂର୍ବରେ ହେମଗିରି ତଥା ବାୟବ୍ୟ କୋଣରେ ଅଗ୍ନି ଏବଂ ଅଗ୍ନିକୋଣରେ ମହେନ୍ଦ୍ରଗିରି ଅବସ୍ଥିତ ।

"ମେରୁର ବାୟବ୍ୟ କୋଣ ଅଗ୍ନି ନାମେ ସାର
ଅଗ୍ନିକୋଣେ ଅଛଇ ମହେନ୍ଦ୍ର ଗିରିବର" । (୧୧୧)

---

(୧୦୮) ଭାଗବତ ସମୀକ୍ଷା : ଡକ୍ଟର ସର୍ବେଶ୍ୱର ଦାସ, ପୃ ୧୬୩

(୧୦୯) ନାମରତ୍ନ ଗୀତା : ଦୀନକୃଷ୍ଣ ଦାସ, ପୃ ୮୨

(୧୧୦) —ଏଜନ— ଶ୍ରୀହରିଙ୍କ ଆଦେଶକ୍ରମେ ବିଶ୍ୱକର୍ମା ସୁଧର୍ମା ନାମରେ ଗୋଟିଏ ସଭା ସୃଷ୍ଟି କରିଥିଲେ । କାମଧେନୁଙ୍କ ସ୍ୱଭାବରେ ଏହି ସଭା ରଚନା କରି ତେତିଶ କୋଟି ଦେବତାଙ୍କ ଅନୁରୂପ ସ୍ଥାନମାନଙ୍କରେ ସ୍ତମ୍ଭ ସ୍ୱରୂପ ନିଯୁକ୍ତ କରିଥିଲେ । ସୁଧର୍ମା ସଭା ଏକ ପବିତ୍ର ସ୍ଥାନ ଅଟେ, ଯେଉଁଠାରେ କି ବୃଦ୍ଧ ବ୍ୟକ୍ତି ନବଯୌବନ ପ୍ରାପ୍ତ ହୋଇଥାଏ । ଅବସନ୍ତରେ ମଳୟ ପବନ ବୋହୁଥାଏ । ଏଠାରେ ରୋଗ, ଶୋକ, କ୍ଷୁଧା, ତୃଷା, ପୀଡ଼ା ପ୍ରଭୃତିରୁ ମୁକ୍ତ ମିଳିଥାଏ । ଏଠାରେ ମିଥ୍ୟା ଓ ଅଧର୍ମର ସ୍ଥାନ ନାହିଁ ।

(୧୧୧) —ଏଜନ— ପୃଷ୍ଠା ୮୬

ଅତଏବ ମହେନ୍ଦ୍ରକୁ ସୁଧର୍ମା ସଭାରେ, ଶ୍ରେଷ୍ଠ ଗିରି ରୂପେ ବର୍ଣ୍ଣନା କରାଯାଇଛି ।

**ହରିବଂଶ :**

ଭକ୍ତକବି ଅଚ୍ୟୁତାନନ୍ଦ ଦାସ ହରିବଂଶରେ ମେରୁ ପର୍ବତର ଜନ୍ମ ବୃତ୍ତାନ୍ତ ବର୍ଣ୍ଣନାକ୍ରମେ ଉଲ୍ଲେଖ କରିଛନ୍ତି ଯେ ମେରୁ ସୃଷ୍ଟି ସର୍ଜନାର ଆଦ୍ୟ ଅବସ୍ଥାରେ ଲହରୀ ଘାତରେ ପୃଥିବୀ ଦୋଦୁଲ୍ୟମାନ ହେବାରୁ ବ୍ରହ୍ମା ଓଁକାର ମନ୍ତ୍ର ପାଠପୂର୍ବକ ଲୋମ ରୋପଣ କରିବାକୁ ଲାଗିଥିଲେ । ପ୍ରଥମ ଲୋମଟି ଯେଉଁଠାରେ ପୋତା ଯାଇଥିଲା ତାହା ମନ୍ଦରଗିରି ହେଲା । ଦ୍ୱିତୀୟଟିର ନାମ ପାରିଯାତ୍ର ଓ ତୃତୀୟଟିର ନାମ ମହେନ୍ଦ୍ରଗିରି ରହିଲା । (୧୧୨) କବି କହନ୍ତି—

> ପୋତିଲେ ଯେଉଁ ତୃତୀୟ ରୋମ ଦେବବର
> ମହେନ୍ଦ୍ରଗିରି ହୋଇଲା ନାମହିଁ ତାହାର ।

ମହାପୁରୁଷ ଅଚ୍ୟୁତାନନ୍ଦ ଦାସଙ୍କ 'ତତ୍ତ୍ୱ ବିନୋଦ'ର ବର୍ଣ୍ଣନାରେ ହରିବଂଶର ବିଷୟବସ୍ତୁ ସହିତ ସାମଞ୍ଜସ୍ୟ ରହିଛି । ପ୍ରଳୟ ପରେ ନୂତନ ସୃଷ୍ଟି; ଶିବଶକ୍ତିଙ୍କର ସମାହାର ଏଥିରେ ବର୍ଣ୍ଣିତ । ଗରୁଡ଼ ପୁରାଣରେ ମଧ୍ୟ ମହେନ୍ଦ୍ରର ମାହାତ୍ମ୍ୟ ବର୍ଣ୍ଣିତ ।

**ଗରୁଡ଼ ପୁରାଣ :**

> "ହୃଦୟ ପଦ୍ମ ତ୍ରିକୋଣ ହୋଇ ବିରାଜିତ,
> ତହିଁ ଅଛି ସପ୍ତକୁଳାଚଳ ଯେ ପର୍ବତ ।
> × × ×
> ସେହି ତ୍ରିକୋଣରେ ମେରୁ ପର୍ବତ ହୋଇଲା
> ତାହା ତଳେ ମହେନ୍ଦ୍ର ଯେ ଶୋଭା ପ୍ରକାଶିଲା ।" (୧୧୩)

ଓଡ଼ିଆ ବ୍ରହ୍ମାଣ୍ଡ ପୁରାଣରୁ ମଧ୍ୟ ମହେନ୍ଦ୍ରର ପ୍ରାଧାନ୍ୟ ସୁସ୍ପଷ୍ଟ ।

**ନୃସିଂହ ପୁରାଣ :**

କବି ପୀତାମ୍ବର ଦାସଙ୍କ ଜନପ୍ରିୟ ନୃସିଂହ ପୁରାଣ କୌଣସି ସଂସ୍କୃତ ପୁରାଣର ଅନୁବାଦ ନୁହେଁ; କିନ୍ତୁ ମତ୍ସ୍ୟ ପୁରାଣରେ ପ୍ରଦତ୍ତ ନୃସିଂହ ମାହାତ୍ମ୍ୟ ବର୍ଣ୍ଣନା

(୧୧୨) ହରିବଂଶ : ଭକ୍ତକବି ଅଚ୍ୟୁତାନନ୍ଦ ଦାସ, ୩ୟ ଖଣ୍ଡ, ପୃ ୧୭୨-୧୭୩
(୧୧୩) ଗରୁଡ଼ ପୁରାଣ : ପୃ ୭୨

ଦ୍ୱାରା (୧୧୪) ଲେଖକ ପ୍ରଭାବିତ ହୋଇଥିବା ସ୍ୱାଭାବିକ । କୋଟିଏ ପୁରାଣରେ ଦେଖିଲେ ମଧ୍ୟ ନୃସିଂହ ମାହାତ୍ମ୍ୟର ସମ୍ପୂର୍ଣ୍ଣ ବର୍ଣ୍ଣନା ନ ମିଳିବା ଦୃଷ୍ଟିରୁ ଲେଖକ ଏ ରଚନା ଦିଗରେ ପ୍ରୟାସୀ ହୋଇଥିବାର ସ୍ୱୀକାର କରିଛନ୍ତି । ସଂସ୍କୃତ ସାହିତ୍ୟର ଭାବଧାରା ଏଥିରେ ପଡ଼ିବା ସ୍ୱାଭାବିକ । (୧୧୫)

ଶ୍ରୀ ନୃସିଂହ ଜନ୍ମ ସତ୍ୟ ଯୁଗର ଏ ଗ୍ରନ୍ଥ
କୋଟିଏ ଗ୍ରନ୍ଥ ବାଛୁଣ ଦେଖିଲି କଂଚତ ।

ପୀତାମ୍ବର ହରିବଂଶ, ଶଙ୍କରାଚାର୍ଯ୍ୟଙ୍କ ଆନନ୍ଦଲହରୀ ପ୍ରଭୃତି ଗ୍ରନ୍ଥପ୍ରକାରେ ମହେନ୍ଦ୍ରାଦି ସପ୍ତକୁଳାଚଳ ସହ ହିମାଳୟକୁ ନେଇ ଅଷ୍ଟକୁଳାଚଳର ପରିକଳ୍ପନା କରିଛନ୍ତି ।

ସମସ୍ତ ସଂସ୍କୃତ ଓ ଓଡ଼ିଆ ପୁରାଣମାନଙ୍କରେ ଆଧ୍ୟାତ୍ମିକ ଭାବଧାରା ସହିତ ଅନ୍ୟାନ୍ୟ ଭାରତୀୟ ସାହିତ୍ୟର ସାମଞ୍ଜସ୍ୟ ଅନୁଧ୍ୟାନ କରିଯିବା ବିଧେୟ ।

---

(୧୧୪) ନୃସିଂହ ପୁରାଣ : ପୀତାମ୍ବର ଦାସ—

ବିମାନଂ ବିବିଧାକାରଂ ଭ୍ରଜମାନଂଶିବାଗ୍ନିଭିଃ ।
ମହେନ୍ଦ୍ର ବପୃଷ୍ଠଃ ସର୍ବେ ବିଚରନ୍ତି ଦିବାହ୍ନିବଃ ॥ ୬୫ ॥

ଅଥ୍ୟଦେବା ଶଶିରସ୍ଥା ସାଗରାଃ ସରିତସ୍ତ୍ୱାଃ
ହିମବାନ, ପାରିଯାତ୍ରଶ୍ଚ ଯେ ଚାନ୍ୟେ କୁଳପର୍ବତାଃ ।

ପ୍ରଭାବ—ପ୍ରଥମ ରତ୍ନାକର, ସୃଷ୍ଟି ସର୍ଜନା ।

ପ୍ରଥମ ସାଗର ସୃଷ୍ଟି ସର୍ଜନା ବୃତ୍ତାନ୍ତ । ଏ ନୃସିଂହ ପୁରାଣରେ ହୋଇଛି ଉକତ ॥

× × ×

ଏତେକହି ଅଠରୋମ ସମର୍ପିଲେ ମସ୍ତ । ସତ୍ତବୋଲି ମନେପାଞ୍ଚି ଅଇଲେଣ ଦ୍ୱିଜ ॥

× × ×

ଦଗେ ଦଗେ ଛପିବାକୁ ଦେଲେ ଏହି ନାମ । ତୃଥୀ ପୁଣ ଯାହା ଦେଇଥିଲେ ଆଠରୋମ ।

---

(୧୧୫) ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ୩ୟ ଖଣ୍ଡ ।

(ଗ) ଅନ୍ୟାନ୍ୟ ଭାଷା :

## ତେଲୁଗୁ ରାମାୟଣ ଓ ମହାଭାରତ

ଏକାଦଶ ଶତାବ୍ଦୀରେ ରାଜରାଜଦେବଙ୍କ ରାଜତ୍ୱ କାଳରେ ନନ୍ନୟ ଭଟ୍ଟାରକ ତେଲୁଗୁର ମହାକାବ୍ୟ "ଭାରତ ଗ୍ରନ୍ଥ" ରଚନା କରିଥିଲେ । (୧୧୬) ପରବର୍ତ୍ତୀ ତିନି ଶତାବ୍ଦୀରେ ଅନ୍ୟାନ୍ୟ କବିଗଣ ବାଲ୍ମୀକି ଓ ବ୍ୟାସଦେବଙ୍କ କୃତିକୁ ଭିତ୍ତିକରି ଆନ୍ଧ୍ର ବାଲ୍ମୀକି ରାମାୟଣ, ଆନ୍ଧ୍ର ମହାଭାରତମ୍ମୁ, ଭାର୍ଗବ ରାମାୟଣମ୍ମୁ, ଆନ୍ଧ୍ର ମହାଭାଗବତମ୍ମୁ ଇତ୍ୟାଦି ଗ୍ରନ୍ଥରେ ଅଭିନବ ରୂପ ପ୍ରଦାନ କରିଛନ୍ତି । ଏ ସଂପର୍କରେ ଭାର୍ଗବ ରାମାୟଣ ପ୍ରଣେତା ଟି. ଭି. ରାମଶେଷାସ୍ତ୍ରୀ କହନ୍ତି—

"ଶକାଲା ବଲଯୁମ୍ମୁ ଦାନମିଡି
ଦାକ୍ଷାନ୍ ମହେନ୍ଦ୍ରାଦପୈ ।"

ଅର୍ଥାତ୍ ଶ୍ରୀରାମଙ୍କ ସହିତ ଯୁଦ୍ଧରୁ କ୍ଷାନ୍ତ ହେବାପାଇଁ ପର୍ଶୁରାମଙ୍କୁ ବଶିଷ୍ଠ ମହର୍ଷି ଅନୁରୋଧ କରିଥିଲେ । କାରଣ କାଶ୍ୟପ ମହର୍ଷିଙ୍କୁ ସମଗ୍ର ପୃଥିବୀ ଦାନଦେଇ ତାଙ୍କୁ ମହେନ୍ଦ୍ରଗିରିରେ ନିବାସ କରିବା ପାଇଁ ନିର୍ଦ୍ଦେଶ ମିଳିଥିଲା । ସେହିପରି ତେଲୁଗୁ ମହାଭାରତରେ ମୂଳ ମହାଭାରତର ପ୍ରଭାବ ନିହିତ । ମହାଭାରତର ଏକ ଅଂଶ ପ୍ରଦତ୍ତ ହେଲା । (୧୧୭)

"ପରଶୁରାମୁଡ଼୍ ନସାଙ୍ଗୁଡ଼୍ରୈ ଇ ମାହେନ୍ଦ୍ରା ପାର୍ବାତାମାନୁଣ୍ଡି ସର୍ବଦା ତପସ୍ସୁ ଚେଇରୁଚୁନ୍ନାରୁ ଆନ ଇଟ୍ଲୁ କୃତାପାର୍ବାଣା ମୁନିନ୍ଦ୍ରୁଡ଼୍ ପର୍ଶୁରାମୁନୀ ଚରଣମ୍ମୁଲୁ ଧାମୀରନୁନାରୁ ଚେପ୍ପେ ।"

"ଅର୍ଜୁନୁଡ଼୍ ତୀର୍ଥ ଯାତ୍ରାନୁ ପୋଇଟା" ପ୍ରସଙ୍ଗରେ କୁହାଯାଇଛି, "ଆ କାଲିଙ୍ଗା ଦେଶାମୁନାକୁ ଓ୍ଵଚିନାପୁଡ୍ଡୁକୁ ଅଣ୍ଡୁନୁନୀ ଓ୍ଵେମାଡ଼ ଅଚିନା ବ୍ରାହ୍ମଣଲୁ କଦିରୁ କାଲିଙ୍ଗା ଦ୍ୱାରମୁ ଦାଗିରି ମାରଲି ଉତ୍ତରି କୁରୁଦେଶମୁନାକୁ ଓ୍ଵେଲ୍ଲେଇ । ଆନ୍ତାଟା ଅର୍ଜୁନୁଡ଼୍ କନ୍ତାମାଦି ବ୍ରାହ୍ମାଣା ତୋ ପୋଇ ତୂର୍ପୁ ସମୁଦ୍ରା ତୀର ମୁନ୍ଦୁ ପୁରୁଷୋତ୍ତମ ଦେବୁନାକୁ ନାମାସ୍କାରିଞ୍ଚି ମହେନ୍ଦ୍ରା ପାର୍ବାତାମୁ ଦୁରୁଡ଼୍ ଗୋଦାବରୀ ନାଦୀ ତୀରମୁନାକୁ ଓ୍ଵେଛେ" (୧୧୮)

( ସହଜବୋଧ ଯୋଗୁଁ ଅନୁବାଦ ଅନାବଶ୍ୟକ )

---

(୧୧୬) ଭାରତୀୟ ସାହିତ୍ୟର ଇତିହାସ : ଜାନକୀବଲ୍ଲଭ ମହାନ୍ତି, ପୃ. ୧୨୪

(୧୧୭) ଭାର୍ଗବ ରାମାୟଣ (ତେଲୁଗୁ) : ଯାଗକାଣ୍ଡ, ପୃ. ୧୨୬

(୧୧୮) ମହାଭାରତମୁ ଓ୍ଵାଚ୍ଚନା କାବ୍ୟମୁ—ଆରଣ୍ୟା ପର୍ବମୁ : ଲକ୍ଷ୍ମୀକାନ୍ତସୁଣାଶାସ୍ତ୍ରୀ

ହିନ୍ଦୀ :

ତୁଳସୀ ଦାସଙ୍କ ପ୍ରସିଦ୍ଧ ଗ୍ରନ୍ଥ ରାମଚରିତ ମାନସରେ ହନୁମାନଙ୍କ ସମୁଦ୍ର ପାରହେବା ଓ ପର୍ଶୁରାମ-ରାମଙ୍କ ସହିତ ଭେଟିବା ବିଷୟରେ ଉଲ୍ଲେଖ ଅଛି । (୧୧୯)

ଜୋ ନାଘଇ ଶତ ଯୋଜନ ସାଗର,
କରଇ ସୋ ରାମକାଜ ମତି ଆଗର ।।

ଅର୍ଥାତ୍, ଯିଏ ଶତଯୋଜନ (ଚୁରିଶତ କୋଶ ଅର୍ଥାତ୍ ଆଠଶହ ମାଇଲ) ସମୁଦ୍ର ଲଙ୍ଘନ କରିପାରେ, ସେଭଳି ବୀରହିଁ ଲଙ୍କାଗଡ଼କୁ ଗମନ କରି ପ୍ରଭୁଙ୍କ କାର୍ଯ୍ୟ କରିପାରେ । ଏଥିରୁ ପ୍ରମାଣିତ ହୁଏ, ଭୌଗୋଳିକ ସ୍ଥିତି ଅନୁଯାୟୀ ହନୁମାନ ଯେଉଁ ମହେନ୍ଦ୍ରଗିରି ଅତିକ୍ରମ କରିଥିଲେ, ତାହା ଏହି ମହେନ୍ଦ୍ରଗିରି । ଏହା ବିନ୍ଧ୍ୟାଚଳର ଦକ୍ଷିଣ ପୂର୍ବର ଦୁର୍ଗମ ବିସ୍ତାର ଶେଷ ସୀମାରେ, ଯାହାକି ଲବଣ ସମୁଦ୍ର କୂଳରେ ଲଙ୍କାଠାରୁ ଆଠଶହ ମାଇଲ ଦୂରରେ (ଆକାଶ ମାର୍ଗ ଦୂରତ୍ୱ) ଅବସ୍ଥିତ । ପ୍ରାକୃତିକ ଅବସ୍ଥିତି ଦୃଷ୍ଟିରୁ ଏହା ସମୁଦ୍ର କୂଳରେ ଏକମାତ୍ର ଉଚ୍ଚତମ ଶୃଙ୍ଗ ଯାହା ଉପରେ ଥାଇ ଲକ୍ଷ୍ୟକଲେ ଲଙ୍କାଗଡର ଅବସ୍ଥିତି ସହଜରେ ଜାଣିହେବ । ଜମଦଗ୍ନିଙ୍କ ଆଶ୍ରମ ସ୍ଥଳ ସକଳ ପ୍ରକାର ଫଳମୂଳରେ ଭରପୁର । ଏହି ରାମଗିରି ଅଞ୍ଚଳ ରାମାୟଣ ଯୁଗର 'ମଧୁ'ଙ୍କ ରଚିତ ଉପବନ ଅଟେ ।

ରାମଧାରୀ ସିଂ ଦିନକରଙ୍କ ରଶ୍ମିରଥୀ କାବ୍ୟର କର୍ଣ୍ଣ ମହେନ୍ଦ୍ରଗିରିରେ ହିଁ ପର୍ଶୁରାମଙ୍କ ନିକଟରେ ଶିକ୍ଷା କରିଥିଲେ । ସେ ପର୍ଶୁରାମଙ୍କ ନିବାସ ସ୍ଥଳ ରୂପେ ମହେନ୍ଦ୍ରଗିରିକୁହିଁ ସ୍ଥାନ ଦେଇଛନ୍ତି । (୧୨୦) ଏଥିରେ କର୍ଣ୍ଣ ପର୍ଶୁରାମଙ୍କ କଥୋପକଥନରେ ଉଲ୍ଲେଖ ଅଛି—

"କର୍ଣ୍ଣ ସ୍ୱୟଂ ଶାପ ଅଟଲହୈ ସହନ କରେ,
ଯୋ କୁଛ ମୈନେ କହା ଉସେ ଶିରପରଲେ ସାଦର ବହନ କରେ,
ଇସ୍ ମହେନ୍ଦ୍ରଗିରିପର ତୁମନେ କୁଛ ଥୋଡା ନହିଁ କମାୟା ହୈ
ମେରା ସଞ୍ଚିତ ନିଖିଲ ଜ୍ଞାନ ତୁନେ ମୁଝସେହି ପାୟାହୈ,
ରହାନହିଁ ବ୍ରହ୍ମାସ୍ତ୍ର ଏକ ଇସସେ କ୍ୟା ଆତା ଜାତା ହୈ ।" (୧୨୧)

---

(୧୧୯) ରାମଚରିତ ମାନସ : ଗୀତାପ୍ରେସ୍

(୧୨୦) ରଶ୍ମିରଥୀ : ରାମଧାରୀ ସିଂ ଦିନକର ପୃ ୬୩

(୧୨୧) —ଏକନ—

ପର୍ଶୁରାମଙ୍କ ଏହି ପରାମର୍ଶାନୁଯାୟୀ, କର୍ଣ୍ଣ ମହେନ୍ଦ୍ର ପର୍ବତରୁ ବିଦ୍ୟା ନାଭ କରିଥିଲେ । ଏହିଭଳି ସଂସ୍କୃତ ସାହିତ୍ୟର ଛାପ୍ଟା ହିନ୍ଦି ଉପରେ ପ୍ରତିଫଳିତ । ପଡୋଶୀ ବଙ୍ଗଳା ଭାଷାରେ କି ପ୍ରକାର ବର୍ଣ୍ଣନା ରହିଛି ଜାଣିବା ଉଚିତ୍ ।

ବଙ୍ଗଳା :

ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଅଥବା ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ କବି କୃତ୍ତିବାସ ଓଝା ବଙ୍ଗଳା ଭାଷାରେ ରାମାୟଣ ଓ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧରେ କବି କାଶୀରାମ ଦାସ ମହାଭାରତ ପ୍ରଣୟନ କରିଥିଲେ । କୃତ୍ତିବାସ ରାମାୟଣର ପରିଶିଷ୍ଟ ପରିଚ୍ଛେଦର ଭୌଗୋଳିକ ପର୍ଯ୍ୟାୟର ପଞ୍ଚମ ପୃଷ୍ଠାରେ ମହେନ୍ଦ୍ର ପର୍ବତର ଅବସ୍ଥିତି ସଂପର୍କରେ ସୂଚନା ଦିଆଯାଇଛି କି ଏହି ପର୍ବତ ଶ୍ରେଣୀ ଓଡ଼ିଶା ଓ ଉତ୍ତର ସରକାର ଗଞ୍ଜାମର ନିକଟବର୍ତ୍ତୀ ଗଣ୍ଡଓ୍ୱାନା ଅଞ୍ଚଳର କିୟଦଂଶ ପର୍ଯ୍ୟନ୍ତ ବିସ୍ତୃତ । (୧୨୨) ଏହି ଗିରିକୁ 'ନିତ୍ୟଧାମ' ରୂପେ କବି ଗ୍ରହଣ କରିଛନ୍ତି । (୧୨୩)

ଜନକଙ୍କ ସହିତ ପର୍ଶୁରାମଙ୍କ କଥୋପକଥନ ପ୍ରସଙ୍ଗ ଏ ରୁହିର ନୂତନତ୍ୱ । ଏକଦା ପରଶୁରାମ ଜାନକୀଙ୍କୁ ଦେଖି ମୁଗ୍ଧ ହୋଇ ବିବାହ ଇଚ୍ଛାକରି ତାଙ୍କ ପିତା ଜନକଙ୍କୁ ନିଜର ଅଭିଳାଷ ଜଣାଇଥିଲେ । ରାଜର୍ଷି ଜନକ ସେ କଥା ଶୁଣି ବିନୟର ସହିତ କହିଲେ, ମୋର କନ୍ୟା ବର୍ତ୍ତମାନ ଶିଶୁ ଅଛି । ତାର ପୌଗଣ୍ଡ ଅବସ୍ଥା ଆସିନାହିଁ । ଆପଣଙ୍କୁ କନ୍ୟାଦାନ କରିବାର ସୌଭାଗ୍ୟ ମୋର ବର୍ତ୍ତମାନ ହୋଇ ପାରିବ ନାହିଁ । ଆପଣ ଯଦି କିଛିବର୍ଷ ଅପେକ୍ଷା କରନ୍ତି, ତେବେ ମୁଁ ଆପଣଙ୍କୁ ମୋର କନ୍ୟା ଜାନକୀଙ୍କୁ ସମ୍ପ୍ରଦାନ କରି କୃତାର୍ଥ ହେବି । ଜନକଙ୍କ ଏହି ବିଜ୍ଞ ବଚନ ଶୁଣି ପରଶୁରାମ କହିଲେ; ମୁଁ ତପସ୍ୟା କରିବା ପାଇଁ ମହେନ୍ଦ୍ରକୁ ଫେରି ଯାଉଛି । ସେଠାରୁ ଫେରିଆସି ତୁମର କନ୍ୟାଙ୍କୁ ଉପଯୁକ୍ତ ସମୟରେ ବିବାହ କରିବି । ତପସ୍ୟାରେ ମଗ୍ନ ହୋଇ ମୁଁ ମହେନ୍ଦ୍ରଗିରିରେ ଯଦି ରହିଯାଏ ଏବଂ ସମୟର ଗର୍ଭରେ ଯଦି ତୁମ କନ୍ୟାର ବିବାହ ବୟସ ହୋଇଯାଏ, ତେବେ ଯେ କୌଣସି ଉପଯୁକ୍ତ ବରପାତ୍ର ଦେଖି ସମର୍ପଣ କରିଦେବ । (୧୨୪) କନ୍ୟାଦାନ କରିବା ପୂର୍ବରୁ ସର୍ତ୍ତରଖିବ କି; ଯେ କେହି ମୋର

---

(୧୨୨) ବଙ୍ଗଳା ସାହିତ୍ୟର ଇତିହାସ—ଭାରତୀୟ ସାହିତ୍ୟ :
ଜାନକୀବଲ୍ଲଭ ମହାନ୍ତି, ପୃ ୬୪

(୧୨୩) କୃତ୍ତିବାସ ରାମାୟଣ—ଆଦିକାଣ୍ଡ, ପୃ ୧୦୭
"ଶ୍ରୀରାମେର ସ୍ତୁତି କରି ଶ୍ରୀ ପରଶୁରାମ
ତପସ୍ୟା କରିତେ ମୁନି ଯାନ୍ ନିତ୍ୟଧାମ ।"

(୧୨୪) —ଏଜନ—

ଏହି ଶିବ ଧନୁକୁ ଭଗ୍ନ କରିବ, ସେ କେବଳ ଜାନକୀଙ୍କୁ ବିବାହ କରିବ । ଏହା କହି ଧନୁଟିକୁ ଜନକଙ୍କୁ ଅର୍ପଣ ପୂର୍ବକ ମହେନ୍ଦ୍ର ପର୍ବତକୁ ତପସ୍ୟା କରିବା ପାଇଁ ଗ୍ଲଲଗଲେ । ରାଜର୍ଷି ଜନକ ସେହି ସର୍ତ୍ତ ରକ୍ଷାକରି ଜାନକୀଙ୍କୁ ଶିବ ଧନୁ ଭଗ୍ନ କଲା ପରେ ହିଁ ସମର୍ପଣ କରିଥିଲେ । ଏହି ଧନୁ ଭଗ୍ନର ରହସ୍ୟ ଅବଗତ ହେବା ପୂର୍ବରୁ ଧନୁ ନିର୍ମାଣର ଇତିହାସ ଜାଣିବା ଉଚିତ ମନେହୁଏ । କବି କହନ୍ତି—

ବ୍ରହ୍ମଯଜ୍ଞରେ ସାର୍ଦ୍ଧ ଚତୁର୍ବିଂଶତି ପର୍ବ ଏକ ବେଣୁଦଣ୍ଡ ଉତ୍ପନ୍ନ ହେଲା । ବେଣୁଦଣ୍ଡର ନଅଟି ପର୍ବ ନେଇଁ ବ୍ରହ୍ମା ଧନୁନିର୍ମାଣ କଲେ । ସେହି ଧନୁର ନାମ ରହିଲା "ସାରଙ୍ଗ" । ଏହା ବିଷ୍ଣୁ ଧାରଣ କରିଥିଲେ । ତା ପରେ ଆଉ ସାତ ପର୍ବ ନେଇ "ଜମ୍ବୁକ" ଧନୁ ନିର୍ମିତ ହେଲା । ଶିବ ଏହି ଧନୁ ଗ୍ରହଣ କଲେ । ତା ପରେ ପାଞ୍ଚପର୍ବ ନେଇ ଆଉ ଏକ ଧନୁ ନିର୍ମାଣ କରି ତାହାର ନାମ ଦେଲେ 'କୋଦଣ୍ଡ' ଏବଂ ତାହା ସ୍ୱୟଂ ଇନ୍ଦ୍ର ଧାରଣ କଲେ । ତା ପରେ ତିନି ପର୍ବ ନେଇଁ ଗାଣ୍ଡିବ ଧନୁ ଉତ୍ପତ୍ତି ହେଲା, ଯାହା ଦ୍ୱାପର ଯୁଗ ପାଇଁ ଅର୍ଜୁନଙ୍କ ନିମିତ୍ତ ଉଦ୍ଦିଷ୍ଟ ଥିଲା । ବାକି ଅଧ ପର୍ବରେ ବ୍ରହ୍ମା ମୁରଲୀ ପ୍ରସ୍ତୁତ କରିଥିଲେ । ଯେତେବେଳେ ଶ୍ରୀକୃଷ୍ଣ ଜନ୍ମଗ୍ରହଣ କଲେ ବୃନ୍ଦାବନରେ ଏହି ମୁରଲୀଟି ଭଗବାନ ଶ୍ରୀକୃଷ୍ଣଙ୍କୁ ସମର୍ପଣ କରିଥିଲେ । (୧୨୫) ଶିବଧନୁ ଓ ବୈଷ୍ଣବଧନୁ ଯଥାକ୍ରମେ ଜନକ ଓ ପଶୁରାମଙ୍କ କର୍ତ୍ତୃତ୍ୱରେ ରହିଲା; ତାହା ଅନ୍ୟାନ୍ୟ ପ୍ରସଙ୍ଗରେ ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ । ହନୁମାନଙ୍କ ଲଙ୍କାଗମନ ପ୍ରସଙ୍ଗରେ ମଧ୍ୟ ବଙ୍ଗବାସୀ ଅଞ୍ଚଳ ସହିତ ଏହି ମହେନ୍ଦ୍ର ପରିଚିତ । (୧୨୬)

ମହେନ୍ଦ୍ରଗିରିର ଚତୁଃପାର୍ଶ୍ୱରେ ଅସଂଖ୍ୟ ହନୁମାନ ପୀଠ, ରାମ ପଶୁରାମ ପୀଠ ଇତ୍ୟାଦି । ମହେନ୍ଦ୍ରର 'ହନୁମାନ କୁଦା', 'ପଶୁରାମାଶ୍ରମ' ଓ ପୂଜା ପଦ୍ଧତିରୁ ବଙ୍ଗଭାଷାର 'କୃତ୍ୟତତ୍ତ୍ୱ' ପ୍ରବନ୍ଧ ଓ ଶ୍ରୀକୃଷ୍ଣାନନ୍ଦଙ୍କ ପ୍ରସିଦ୍ଧ ତାନ୍ତ୍ରିକ ଗ୍ରନ୍ଥ 'ତନ୍ତ୍ର ସାର' (୧୨୭) ବିଷୟରକୁ ନେବା କଥା । 'ଧର୍ମପୀଠ' ପରିଚ୍ଛେଦରେ ଏହି ବିଷୟ ବର୍ଣ୍ଣିତ । ଏଠାରେ ପ୍ରାଚୀନ ସମୃଦ୍ଧ ଦକ୍ଷିଣ-ଭାରତ ଭାଷା ତାମିଲ ଭାଷାରେ ମହେନ୍ଦ୍ରର ଭୂମିକା ବିଚାର ଯୋଗ୍ୟ ।

(୧୨୫) କୃତ୍ତିବାସୀ ରାମାୟଣ : ପୃ ୧୦୮
(୧୨୬) ବୃହତ୍ ସାରାବଳୀ : "ଏତେ ଵଲି ଅଗ୍ରେ କରି ପବନ କୁମାରେ
ଉଠିଲେନ୍ କପିଗଣ୍ ଯେନ୍ଦ୍ର ଧରାଧରେ
ମହେନ୍ଦ୍ର ଉପରେ ଶୋଭେ ମାରୁତନନ୍ଦନ
ଯେନ ଅନ୍ୟଗିରି ଅଚ୍ଛେ କେଲ ଆରୋହଣ ।"
(୧୨୭) କଲ୍ୟାଣ : ବର୍ଷ ୪୭ ଶ୍ରୀ ହନୁମାନ ଅଙ୍କ ୧ : ପ୍ରବନ୍ଧ ଡ: ରାମମୋହନ ଚକ୍ରବର୍ତ୍ତୀ

ତାମିଲ :

ବିଶିଷ୍ଟ ତାମିଲ କବି ଚକ୍ରବର୍ତ୍ତୀ କମ୍ବନଙ୍କ ଦ୍ୱାରା ପ୍ରଣୀତ କମ୍ବ ରାମାୟଣରେ ବର୍ଣ୍ଣିତ ମହେନ୍ଦ୍ରଗିରିରେ ପର୍ଶୁରାମଙ୍କ ଆସ୍ଥାନ ସ୍ୱୀକାର କରିବା କମ୍ ଗୌରବର ବିଷୟ ନୁହେଁ । ପୁନଶ୍ଚ ସମୁଦ୍ର ଲଙ୍ଘନ ପଟଳରେ ହନୁମାନଙ୍କ ମହେନ୍ଦ୍ର ପର୍ବତରୁ ଗମନ ବୃତ୍ତାନ୍ତ ଯେଉଁକି ବର୍ଣ୍ଣନା କରାଯାଇଛି ତାହା ଅତ୍ୟନ୍ତ ମନୋଜ୍ଞ । (୧୨୮)

ବୀର ହନୁମାନ ହୁଂକାର ନାଦକରି ମହେନ୍ଦ୍ର ପର୍ବତର ଶୀର୍ଷତମ ଦେଶକୁ ଉଠିଗଲେ । ମହେନ୍ଦ୍ର ଶୀର୍ଷରେ ଦଣ୍ଡାୟମାନ ଅବସ୍ଥାରେ ହନୁମାନ ନିଜ ବିଶ୍ୱରୂପ ପ୍ରଦର୍ଶନ ପୂର୍ବକ ମହାକାୟା ବିସ୍ତାର କରି ସ୍ୱର୍ଗକୁ ଯାତ୍ରା କରିଥିଲେ । ପାଦରେ ଏପରି ଚାପ ଦେଇ ସେ ଏକ ସିଂହନାଦ କଲେ ଯେ ସେଥିରେ ବିରାଟ ମହେନ୍ଦ୍ର ପର୍ବତ ତଳକୁ ଚାପି ହୋଇଗଲା । ଜଳ ମେଖଳା ମଧ୍ୟରେ ମହେନ୍ଦ୍ର ପର୍ବତ ଏକ ବିଶାଳ ଡୋଙ୍ଗା ଭଳି ଦେଖାଗଲା । (୧୨୯)

ମହେନ୍ଦ୍ରରେ ଥିବା ତାମିଲ ଶିଳାଲେଖ ଅସ୍ମ ପରିଚ୍ଛେଦରେ ଦ୍ରଷ୍ଟବ୍ୟ । (୧୩୦)

ଏହିଭଳି ସଂସ୍କୃତ ରାମାୟଣ ଓ ମହାଭାରତ ଠାରୁ ଆରମ୍ଭ କରି ଅନ୍ୟାନ୍ୟ ପ୍ରାଚୀନ ପୁରାଣ ତଥା ଉତ୍କଳୀୟ ଓ ପ୍ରାଦେଶିକ ଭାଷାର ପୁରାଣ ସାହିତ୍ୟ ଅନୁଧ୍ୟାନରେ ମହେନ୍ଦ୍ରଗିରିର ଐତିହାସିକ ଭୂମିକା ତଥା ସାମାଜିକ ଓ ଆଧ୍ୟାତ୍ମିକ ମହତ୍ତ୍ୱ ସ୍ପଷ୍ଟ ପ୍ରମାଣିତ ହୁଏ । ଯୁଗେ ଯୁଗେ ଏହା ବହୁ କବି, ଭାବୁକ, ସାଧକଙ୍କୁ ବିଭିନ୍ନ କାଳରେ ବିଭିନ୍ନ ସ୍ଥାନରେ ଆକୃଷ୍ଟ କରିବା କମ୍ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । କେବଳ ତପଶ୍ଚରଣକାରୀ ଯୋଗୀ— ମୁନି ବା କଳ୍ପନାବିଳାସୀ କବି ଓ ପୁରାଣ ପ୍ରଣେତାମାନଙ୍କ ବ୍ୟତୀତ ବିଭିନ୍ନ ଯୋଦ୍ଧା, ବୀର ଓ ରାଜ୍ୟାଧିପତି ତଥା ଶାସକମାନଙ୍କ ଉପରେ ମଧ୍ୟ ଏହାର ପ୍ରଭାବ ସୁଦୂରପ୍ରସାରୀ । ଏ ସମ୍ପର୍କରେ ଅସଂଖ୍ୟ ଶିଳାଲେଖ, ତାମ୍ରଫଳକ ଓ ଦାନପତ୍ରାଦିରୁ ପ୍ରମାଣ ମିଳିଥାଉଛି, ଯାହାକି ଇତିହାସର ବଳିଷ୍ଠ ମୂଳ ଭିତ୍ତି । ଏଣୁ ଇତିହାସରେ ମହେନ୍ଦ୍ରଗିରିର ସ୍ଥାନ କିପରି ଗୁରୁତ୍ୱପୂର୍ଣ୍ଣ, ତାହା ପରବର୍ତ୍ତୀ ପର୍ଯ୍ୟାୟରେ ଆଲୋଚନା କରାଗଲା ।

---

(୧୨୮) କମ୍ବ ରାମାୟଣ : ରୂପାନ୍ତର ବଂଶୀଧର ଦାଶ, ପୃ ୧ ରୁ ୨୭

(୧୨୯) —ଏଜନ—ପୃ ୨୬୫ ସୁନ୍ଦରକାଣ୍ଡ

(୧୩୦) South Indian Inscription No. 1352

# ତୃତୀୟ ପରିଚ୍ଛେଦ

## ଇତିହାସରେ ମହେନ୍ଦ୍ରଗିରି

### (କ) ଯୁଗେ ଯୁଗେ ମହେନ୍ଦ୍ରଗିରିର ଭୂମିକା :

ପ୍ରାଚୀନ ଭାରତର ରାଜନୈତିକ ମାନଚିତ୍ର ଅବଲୋକନ କଲେ ଜଣାଯାଏ, ପ୍ରାଚୀନ ସାଂସ୍କୃତିକ ଭାରତର ସ୍ୱରୂପ ଓ ବ୍ରିଟିଶ୍ ହାତରୁ ସ୍ୱାଧୀନତା ହାସଲ କରିବା ଭାରତ ମଧ୍ୟରେ ଅନେକ ତଫାତ ଦେଖାଯିବ । ବ୍ରିଟିଶ୍ ଶାସନ କରିବା ପୂର୍ବରୁ ଭାରତରେ ଯୁଗାବ୍ଦ, ବିକ୍ରମାବ୍ଦ, ଶକାବ୍ଦ ଇତ୍ୟାଦି ପ୍ରଚଳନ ହେଉଥିଲା । ୧୯୪୭ ଖ୍ରୀ: ଅ: ସମୟରେ ଯୁଗାବ୍ଦ ୫୦୪୯ ଚାଲିଥିଲା । ପ୍ରାଚୀନ ରାଜବଂଶାବଳୀ ଜାଣିବା ପାଇଁ ଅବଧି ଏକମାତ୍ର ପାଥେୟ । ପ୍ରାଚୀନ ଭାରତ ବର୍ଷରେ ବର୍ତ୍ତମାନର (୧) ପାକିସ୍ତାନ, ନେପାଳ, ବାଂଲାଦେଶ, ବ୍ରହ୍ମଦେଶ ତଥା ଲଙ୍କା ସଂଲଗ୍ନ ଥିଲା । ଇଂରେଜଶାସନର ହଜାର ହଜାର ବର୍ଷ ପୂର୍ବରୁ ଏହି ଦେଶ ଭାରତ ପୃଥିବୀରେ ବିଦ୍ୟମାନ ଥିଲା । (ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ)

### ପ୍ରାଚୀନ ଭାରତର ରାଜନୈତିକ ସ୍ଥିତି :

ଏହି ଭାରତର ଭିନ୍ନ ଭିନ୍ନ ଭାଗରେ ଭିନ୍ନ ଭିନ୍ନ ସମୟରେ ଅନେକ ଶାସକଙ୍କ ରାଜତ୍ୱ ଚାଲୁଥିଲା । ପ୍ରତ୍ୟେକ ଶାସକଙ୍କ ଶାସନ କାଳରେ ତାଙ୍କର ଶାସନ ପରିସର ବଦଳୁଥିଲା । ତଥାପି ଭାରତ ସେମିତି ରହିଥିଲା । ବର୍ତ୍ତମାନ ଭାରତ ମାନଚିତ୍ରରେ ଆଜିର ଆଫଗାନିସ୍ଥାନ ଗାନ୍ଧାର ନାମରେ ଖ୍ୟାତ ଥିଲା ଯାହାକି ଇଂରେଜ ଅମଳରେ ଭାରତର

---

(୧) ପ୍ରାଚୀନ ଭାରତ ମାନଚିତ୍ର : ଭାରତର ଇତିହାସମାଳା ।

ପରିସରଭୁକ୍ତ ନଥିଲା । ଅର୍ଥାତ୍ ଏହି ଭାରତ ଭୂଖଣ୍ଡରେ ଶାସନ ବଦଳିଲେ ମଧ୍ୟ ଭାରତ ବର୍ଷ ଅପରିବର୍ତ୍ତିତ ରହିଥିଲା ।

ଏହା କହିବାର ତାତ୍ପର୍ଯ୍ୟ ଏହି ଯେ—ଭୌଗୋଳିକ ପରିସୀମା ପରିବର୍ତ୍ତିତ ହେଲେ, ଶାସନ ବଦଳିଲେ, ଇତିହାସ ମଧ୍ୟ ପରିବର୍ତ୍ତିତ ହୋଇଯାଏ । କିନ୍ତୁ ସଂସ୍କୃତି ଉପରେ ବାହ୍ୟ ପ୍ରଭାବ ସତ୍ତ୍ୱେ ତାର ମୌଳିକତା ବଦଳେ ନାହିଁ । ପ୍ରାଚୀନ ପୁରାଣର ଗଣ୍ଡି ମଧ୍ୟରେହିଁ ଉପଲବ୍ଧ । ଏଥିପାଇଁ କୁହାଯାଇଛି—

ଇତିହାସ ପୁରାଣାଭ୍ୟାଂ ବେଦଂ ସମୁପ ବୃଂହୟେତ୍,
ବିଭେତ୍ୟ ପ୍ରଶ୍ରୁତାଦ୍‌ବେଦୋ ମାମୟଂ ପ୍ରହରିଷ୍ୟତି ॥ (୨)

ଅର୍ଥାତ୍, ଇତିହାସ ଓ ପୁରାଣ ପାଠ ନକଲେ ବେଦର ପରିବୃଂହଣ ଅଥବା ବୋଧଗମ୍ୟତା ଦୁରୂହ ଅଟେ । ଯେଉଁମାନେ ଇତିହାସ ପୁରାଣରେ ଅନଭିଜ୍ଞ, ସେମାନଙ୍କୁ ବେଦ ଡ଼ରେ କାରଣ ବେଦ ଉପରେ କାଳେ ପ୍ରହାର ହୋଇଯିବ ।

ପୁରାଣରେ ନିମ୍ନୋକ୍ତ ପଞ୍ଚଲକ୍ଷଣ ଥିଲେ ହିଁ ତାହା ପୁରାଣ ପଦବାଚ୍ୟ ।

ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣି ଚ
ବଂଶାନୁ ଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣମ୍ ॥ (୩)

ଅର୍ଥାତ୍, (୧) ସର୍ଗ ଅଥବା ସୃଷ୍ଟି (୨) ପ୍ରତି ସର୍ଗ ଅଥବା ସୃଷ୍ଟିର ବିସ୍ତାର ଲୟ ତଥା ପୁନଃ ସୃଷ୍ଟି (୩) ବଂଶାବଳୀ ବର୍ଣ୍ଣନା (୪) ମନ୍ୱନ୍ତର ଅର୍ଥାତ୍ ଗୋଟିଏ ମନୁଙ୍କଠାରୁ ଅନ୍ୟ ମନୁଙ୍କ କାଳ ଅନ୍ତର, ନିର୍ଦ୍ଦିଷ୍ଟ ସମୟର ଘଟଣା ପାଇଁ ଉଦ୍ଦିଷ୍ଟ । (୫) ବଂଶାନୁଚରିତ (ସୂର୍ଯ୍ୟଚନ୍ଦ୍ରାଦି ବଂଶୀୟ ରାଜାଙ୍କ ବର୍ଣ୍ଣନା) ଉକ୍ତ ମନ୍ୱନ୍ତରକୁ ଭିତ୍ତି କରି ଅଞ୍ଚଳର ପ୍ରାଚୀନତା ଓ କାଳ ଅର୍ଥାତ୍ ଅତି ସମ୍ବନ୍ଧରେ ଧାରଣା ଆସିଥାଏ । ଏଣୁ ମନ୍ୱନ୍ତର ଅନୁଯାୟୀହିଁ କାଳଗଣନା ନିର୍ଭୁଲ ହେବା ସ୍ୱାଭାବିକ । ସୁଦର୍ଶନ ଯନ୍ତ୍ର ପଦ୍ଧତିରେ (୪) ପ୍ରଦତ୍ତ ହେମାଦ୍ରି ପୁରାଣୋକ୍ତ ନିମ୍ନଲିଖିତ ପାରଂପରିକ ସଙ୍କଳ୍ପ ବାକ୍ୟରେ ମଧ୍ୟ ମନ୍ୱନ୍ତରର ପ୍ରାଧାନ୍ୟ ଉପଲବ୍ଧ ।

ବ୍ରହ୍ମଣୋ ଦ୍ୱିତୀୟପ୍ରହରାର୍ଦ୍ଧେ, ଶ୍ୱେତ ବାରାହ କଳ୍ପେ,
ବୈବସ୍ୱତ ମନ୍ୱନ୍ତରେ ଅଷ୍ଟାବିଂଶତି ତମେ କଳିଯୁଗେ
କଳି ପ୍ରଥମ ଚରଣେ ... ...

(୨) ମହାଭାରତ : ଆଦିପର୍ବ ୧/୨୬୮, ପୁରାଣ କଥାଙ୍କ କଲ୍ୟାଣ ୩୫
(୩) ମତ୍ସ୍ୟ ପୁରାଣ : ୨୫/୨୩ ଏବଂ ସମସ୍ତ ଅଷ୍ଟାଦଶ ପୁରାଣ ।
(୪) ସୁଦର୍ଶନ ଯନ୍ତ୍ର ପଦ୍ଧତି : ପଣ୍ଡିତ ରତିରାଜ ଆଚାର୍ଯ୍ୟ, ସୁବର୍ଣ୍ଣପୁର ଜରଡ଼ା ।

(ପୁରୁଷୋତ୍ତମ କ୍ଷେତ୍ର ଦକ୍ଷିଣେ ଭାଗେ . . . . ପର୍ବତ ମହେନ୍ଦ୍ର ତନସ୍ଥା ତୀରେ. . .ଅମୁକ ସ୍ଥାନେ. . .ଅମୁକ ମାସେ ପକ୍ଷେ . . .ବାସରେ) ସଙ୍କଳ୍ପପଢ଼ି ପୂଜା ପଦ୍ଧତି ଆରମ୍ଭ ହୁଏ ।

ପୁରାଣର ମନ୍ବନ୍ତର ବିଷୟରେ ଅନେକ କଥା କୁହାଯାଇଛି । ଡାରଉଇନ୍‌ଙ୍କ ମତବାଦକୁ ଖଣ୍ଡନ କରି 'ବୈଦିକ ସମ୍ପତ୍ତି' (୫) ଗ୍ରନ୍ଥରେ କୁହାଯାଇଛି ଯେ ମାନବର ସନ୍ତାନ ହିଁ ମାନବ । ଏମାନେ ମନୁଙ୍କ ସନ୍ତାନ ଅଟନ୍ତି । ସ୍ୱାୟଂଭୁବ ମନୁ ପ୍ରଥମ ମନ୍ବନ୍ତରର ପ୍ରବର୍ତ୍ତକ ଅଟନ୍ତି ଏବଂ ସେ ହିଁ ମାନବ ସମାଜର ପ୍ରଥମ ସଞ୍ଚାଳକ ବା ଶାସକ । ସମ୍ରାଟ ସ୍ୱାୟଂଭୁବ ମନୁ ସାତ ସମୁଦ୍ର ମଧ୍ୟବର୍ତ୍ତୀ ଅଞ୍ଚଳକୁ ଶାସନ କରିଥିଲେ । ତାଙ୍କପରେ ପ୍ରିୟବ୍ରତ, ଅଗ୍ନୀଧ୍ର, ନାଭି, ଭରତ (ଦୁଷ୍ମନ୍ତଙ୍କ ପୁତ୍ର ଭରତ ନୁହଁ) ରାଜ୍ୟଭାର ଗ୍ରହଣ କଲେ (୬) ।

ବର୍ତ୍ତମାନ ମନ୍ବନ୍ତରର ପ୍ରବର୍ତ୍ତକ ବୈବସ୍ୱତ ମନୁ । ସପ୍ତଦ୍ୱୀପ ପୃଥିବୀର ଶାସନ ଗ୍ରହଣ କରିଥିଲେ । ସେ କୋଶଳ ଜନପଦ ସୃଷ୍ଟି କରିଥିଲେ ଏବଂ ଅଯୋଧ୍ୟା ତାଙ୍କର ରାଜଧାନୀ ଥିଲା । ତାଙ୍କର ଦଶପୁତ୍ର ଦଶଗୋଟି ରାଜ୍ୟର ଅଧିପତି ହୋଇଥିଲେ । ତାଙ୍କ କନ୍ୟା ଇଳା, ଇଳାଙ୍କ ପୁତ୍ର ପୁରୂରବା, ତାଙ୍କ ଦୁଇପୁତ୍ରଙ୍କ ନାମ ଉସନା ଓ ତିତକ୍ଷୁ । ତିତକ୍ଷୁଙ୍କ ପଞ୍ଚମ ବଂଶଧର ବଳୀ ।

ବଳୀଙ୍କ ରାଣୀ ସୁଦେଷ୍ଣାଙ୍କ ଗର୍ଭରୁ ଦୀର୍ଘତମାଙ୍କ ଔରସରେ ଜାତ ପଞ୍ଚପୁତ୍ର ହେଲେ—ଅଙ୍ଗ, ବଂଗ, କଳିଂଗ, ପୁଣ୍ଡ୍ର ଓ ସୁହ୍ମ । ସେମାନେ ରାଜ୍ୟମାନ ସ୍ଥାପନ କଲେ । (୭) ସପ୍ତକୁଳାଚଳର ପ୍ରସିଦ୍ଧ ମହେନ୍ଦ୍ରଗିରି ଏହି ପ୍ରାଚୀନ କଳିଙ୍ଗର କେନ୍ଦ୍ର ଅଟେ ।

ଖ୍ରୀ: ୧୬୦ ୬ ପିଠାପୁରମ୍ ଶିଳାଲେଖକୁ ବାଦଦେଲେ ପ୍ରକୃତରେ ଏହି କାଳ ପାଇଁ କେଉଁ ରାଜା କେଉଁ ସ୍ଥାନରେ ଶାସନ କରୁଥିଲେ ସେ ସଂପର୍କରେ ସବିଶେଷ ଐତିହାସିକ ତଥ୍ୟ ମିଳେନାହିଁ । ତେବେ ଇତିହାସରେ ବିଭିନ୍ନ ପୌରାଣିକ ଚରିତମାନଙ୍କର କାଳନିରୂପଣ ଆମର ଲକ୍ଷ୍ୟ ନୁହେଁ । ନହୁଷ, ପୃଥୁ, ପୁରୁ, ଭୃଗୁ, ରୁଚକ, ପର୍ଶୁରାମ ପ୍ରମୁଖ ଯେ ମହାଭାରତ ସମୟଠାରୁ ବହୁ ପୂର୍ବବର୍ତ୍ତୀ ଏହା ଅବିସମ୍ବାଦିତ । ଏ ଦୃଷ୍ଟିରୁ କାର୍ତ୍ତବୀର୍ଯ୍ୟ—ପର୍ଶୁରାମଙ୍କ ଯୁଦ୍ଧକୁ ପ୍ରାଚୀନ ଭାରତ ଇତିହାସରେ ପ୍ରଥମ ମହାସମର,

(୫) ଭାରତୀୟ ଇତିହାସମାଳା : ପ୍ରାକ୍‌ବୈଦିକ ଖଣ୍ଡ ଭାଗ ୧ : ଶ୍ରୀରାମ ସାଠେ, ଲକ୍ଷ୍ନୌ
(୬) ଭାରତୀୟ ଇତିହାସର ସିଂହାବଲୋକନ : ଶ୍ରୀରାଘବାର୍ଯ୍ୟ, ଲକ୍ଷ୍ନୌ
(୭) ପ୍ରାଚୀନ କଳିଂଗ : ଡକ୍ଟର ନବୀନକୁମାର ସାହୁ

ରାମ-ରାବଣ ଯୁଦ୍ଧକୁ ଦ୍ୱିତୀୟ ମହାଯୁଦ୍ଧରୂପେ ଧରାଯାଇ କୁରୁ-ପାଣ୍ଡବଙ୍କ ମହାଭାରତ ଯୁଦ୍ଧକୁ ତୃତୀୟ ଐତିହାସିକ ମହାଯୁଦ୍ଧ ବୋଲି ଗ୍ରହଣ କରାଗଲେ ଅଯୌକ୍ତିକ ହେବନାହିଁ ।

ମହାଭାରତ ଯୁଦ୍ଧର ୩୬ ବର୍ଷ ପରେ ପରୀକ୍ଷିତଙ୍କୁ ରାଜ୍ୟ ଅର୍ପଣ କରି ଓ ପଞ୍ଚପାଣ୍ଡବଙ୍କ ବନଗମନ ଓ ବନରେ ୧୫ ବର୍ଷ ରହଣି ପରେ ଦେହାବସାନ (୮) ଏହି ଘଟଣାରୁ ଏତିକି ପ୍ରତିପାଦିତ ହୁଏ ଯେ ବିନ୍ଧ୍ୟପର୍ବତ ଉତ୍ତରଭାରତ ଓ ଦକ୍ଷିଣ-ଭାରତକୁ ଦୁଇଟି ଭାଗରେ ଭିନ୍ନ କରିବା ଫଳରେ, ଉତ୍ତର ଭାରତରେ ବିଶୃଙ୍ଖଳା ଦେଖା ଦେଲବେଳେ ଦକ୍ଷିଣ ଭାରତରେ ଶାନ୍ତି ରହିଛି ଓ ଦକ୍ଷିଣ ଭାରତରେ ଗଣ୍ଡଗୋଳ ଉପୁଜିବା ସମୟରେ ଉତ୍ତର ଭାରତ ଶାନ୍ତି ରହିଛି ।

ମହେନ୍ଦ୍ରାଞ୍ଚଳରେ ଅବସ୍ଥିତ ଅସଂଖ୍ୟ ଶିବଲିଙ୍ଗ, ଅନେକ ରାମ ହନୁମାନ ସ୍ମାରକୀ, ସୀତାପର୍ବତ, ରାମଖୋଲ, ହନୁମାନ ଖୋଲ, ପର୍ଶୁରାମ କୁଣ୍ଡ (ପର୍ଶୁରାମ ତର୍ପଣ କୁଣ୍ଡ) ପଞ୍ଚପାଣ୍ଡବଙ୍କ ସ୍ମାରକୀ ଇତ୍ୟାଦି କଳିଯୁଗାଦି ଆରମ୍ଭ ଯାଏ, ଯୁଗେ ଯୁଗେ ମହେନ୍ଦ୍ରଗିରି ଯେ ଇତିହାସର ଏକ ମୂକସାକ୍ଷୀ ଏହା ପ୍ରମାଣିତ କରେ ।

## ବୌଦ୍ଧଯୁଗରେ ମହେନ୍ଦ୍ରର ଭୂମିକା :

ଭାରତବର୍ଷରେ ବୌଦ୍ଧଧର୍ମର ପ୍ରସାର ସମୟରେ ପୁଳିନ୍ଦମାନେ (ଆଦିମ ଅଧିବାସୀ ଶବର) ଏହି ଅଞ୍ଚଳରେ ବାସ କରୁଥିଲେ ଓ ସେମାନେ ସେନା ନାୟକ ହିସାବରେ ରାଜ୍ୟ ଶାସନ କରୁଥିଲେ । (୯) ମହାପଦ୍ମନନ୍ଦ ଦ୍ୱିତୀୟ ପର୍ଶୁରାମ ହିସାବରେ ଉତ୍ତର ଭାରତ ବା ଆର୍ଯ୍ୟାବର୍ତ୍ତର ପ୍ରଥମ ସମ୍ରାଟ ଅଟନ୍ତି । ସେ ଇକ୍ଷ୍ୱାକୁ, ପାଞ୍ଚାଳ, ହୟ, ହୟୀ, କଳିଙ୍ଗ, ଅସ୍ମକ, କୁରୁ, ମିଥିଳା, ଶୂରସେନ, ବୀତହୋତ୍ରର ରାଜାମାନଙ୍କୁ ଉଚ୍ଛେଦ

---

(୮) ପାଶ୍ଚାତ୍ୟଗଣନା ଓ ଭାରତୀୟ ଶାସ୍ତ୍ରୀୟ ପ୍ରମାଣ ଗଣନାନୁଯାୟୀ ୧୩୦୦ ବର୍ଷ ଅନ୍ତର ଦେଖାଯାଏ । କାଳଗଣନା ପାଇଁ ମହାଭାରତ ଯୁଦ୍ଧ ହିଁ ଏକମାତ୍ର ପାଥେୟ । ଦ୍ୱାରକା ସମୁଦ୍ରରେ ବୁଡ଼ିଯିବାରୁ ଅନେକ ପ୍ରତ୍ନତାତ୍ତ୍ୱିକ ବିଷୟ ଲୁପ୍ତ ହୋଇଛି । ସରସ୍ୱତୀ ନଦୀ ଲୁପ୍ତ ହୋଇଯାଇଛି । ଯାହାର ଗର୍ଭରେ ମହେଞ୍ଜୋଦାରୋ, ହରପ୍ପା ବିଦ୍ୟମାନ । ସଂକ୍ଷେପରେ ଯୁଧିଷ୍ଠିରଙ୍କ ସମ୍ବତ୍ ଯୁଧିଷ୍ଠିରଙ୍କ ଅବ୍ଦ ଅଟେ । ତାର ୩୬ ବର୍ଷପରେ, ଶ୍ରୀକୃଷ୍ଣଙ୍କ ଦେହାବସାନ ପରେ କଳି ଯୁଗାଦି ଆରମ୍ଭ ହୁଏ । ପ୍ରତି ବର୍ଷ ପ୍ରତିପଦାହିଁ, କଳିଯୁଗାଦିର ଆରମ୍ଭ ସମୟ ଅଟେ । ବର୍ତ୍ତମାନ ୫୦୯୪ କଳିଯୁଗାଦି ପାଞ୍ଜିରେ ଦେଖିପାରିବେ ।

(୯) ଭାଗବତ ପୁରାଣ . ୧. ୯. ୧୦ ।

କରିଥିଲେ (୧୦) ଏହି ସମୟରେ ସେ କଳିଙ୍ଗର ରାଜାଙ୍କୁ ମଧ୍ୟ ଉଚ୍ଛେଦ କରି ମହେନ୍ଦ୍ରାଞ୍ଚଳ ଅଧିକାର କରିବା ସ୍ୱାଭାବିକ ଯେହେତୁ ସେ 'ପର୍ଶୁରାମ' ଆଖ୍ୟା ଗ୍ରହଣ କରିଥିଲେ । ନନ୍ଦବଂଶର ପତନ ପରେ ପରେ ମହାବୀର ଗ୍ରୀକ୍‌ଶାସକ ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନ ଚନ୍ଦ୍ରଗୁପ୍ତଙ୍କୁ ଭାରତର ତତ୍କାଳୀନ ରାଜନୈତିକ ପରିବର୍ତ୍ତନ ଘଟାଇବା ପାଇଁ ସାହସ ଓ ସୁଯୋଗ ଦେଇଥିଲା । ଚନ୍ଦ୍ରଗୁପ୍ତଙ୍କ ବିଶାଳ ସାମ୍ରାଜ୍ୟ ପଞ୍ଜାବଠାରୁ ବଙ୍ଗଯାଏ ଓ ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ କର୍ଣ୍ଣାଟକ ବା ତୁଙ୍ଗଭଦ୍ରାଯାଏ ରାଜ୍ୟ ବିସ୍ତୃତ ଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଦୁର୍ଭେଦ୍ୟ ଗିରିଦୁର୍ଗ ମହେନ୍ଦ୍ରଗିରି ଜୟ କରିପାରି ନଥିଲେ । ଏହା ଏକ ସ୍ୱାଧୀନ ରାଜ୍ୟ ହୋଇ ରହିଯାଇଥିଲା । ତଦ୍ଦ୍ୱାରା ତାଙ୍କ ବଂଶଧର ସମ୍ରାଟ ଅଶୋକଙ୍କର ଦୃଷ୍ଟି ଆକର୍ଷଣ କରିଥିବା ସ୍ୱାଭାବିକ । ଏହି ସମୟରେ କଳିଙ୍ଗର କେନ୍ଦ୍ରରେ ମହେନ୍ଦ୍ରଗିରିହିଁ ଏକମାତ୍ର ଗିରିଦୁର୍ଗ ଥିଲା । ଅଶୋକଙ୍କର କଳିଙ୍ଗ ଯୁଦ୍ଧ ଭାରତର ସାଂସ୍କୃତିକ ପରମ୍ପରାରେ ବହୁ ପରିବର୍ତ୍ତନ ଆଣିଥିଲା ।

ମହେନ୍ଦ୍ରାଞ୍ଚଳରେ ଅଶୋକଙ୍କ ରାଜତ୍ୱ କାଳରେ ବୌଦ୍ଧଧର୍ମ ପ୍ରସାରିତ ହୋଇଥିଲା । ଗଞ୍ଜାମ ଜିଲ୍ଲାରେ ଥିବା ଜଉଗଡ଼ଠାରେ କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ଥିଲା ଓ ପରବର୍ତ୍ତୀ କାଳରେ ଏହା ମୁଖଲିଙ୍ଗମ୍‌ରେ ଅବସ୍ଥାପିତ ହେଲା ବୋଲି ଐତିହାସିକ ପ୍ରମାଣ ମିଳେ । ମହେନ୍ଦ୍ରଗିରିର ଇନ୍ଦ୍ରକୁଣ୍ଡରେ ଥିବା ଇନ୍ଦ୍ରଲିଙ୍ଗ ଓ ଭୁକ୍ତେଶ୍ୱର ସମ୍ଭବତଃ ସେହି ସମୟର କୃତି । ମହେନ୍ଦ୍ରଗିରିଠାରୁ ପାଟଳିପୁତ୍ରଯାଏ ଯେଉଁ ରାସ୍ତାଥିଲା, କଳିଙ୍ଗ ଯୁଦ୍ଧ ସମୟରେ ଅଶୋକ ଏହି ରାସ୍ତାରେ ଆସିଥିବାର ସମ୍ଭାବନା ମଧ୍ୟ ଉଜ୍ଜ୍ୱଳ । (୧୧)

ଅଶୋକଙ୍କ କଳିଙ୍ଗ ଯୁଦ୍ଧ ସମ୍ପର୍କରେ ସମ୍ପୂର୍ଣ୍ଣ ଇତିହାସଭିତ୍ତିକ ବିବରଣୀ ଏବେ ମଧ୍ୟ ହସ୍ତଗତ ହୁଏ ନାହିଁ । ତଥାପି ଯେଉଁ କେତେକ ଗଡ଼ ଦୁର୍ଗ ଓ ସ୍ତୂପର ଶିଳାନୁଶାସନର ପାଠୋଦ୍ଧାର ହୋଇଛି, ତାହା କଳିଙ୍ଗର ଅଧିବାସୀଙ୍କ ସମ୍ପର୍କରେ ଉଦ୍ଦିଷ୍ଟ । ସେଗୁଡ଼ିକ ହେଲା ଋଷିକୁଲ୍ୟା ନଦୀକୂଳରେ ପୁରୁଷୋତ୍ତମପୁର ଗ୍ରାମ ନିକଟସ୍ଥ ପାଣ୍ଡିଆ ଗ୍ରାମରେ ଥିବା ଜଉଗଡର ଶିଳାଲେଖ (୧୨) ଓ ବଂଶଧାରା ନଦୀକୂଳରେ ଥିବା (ମୁହାଣ ନିକଟରେ) କଳିଙ୍ଗପାଟଣାର ନିକଟରେ ଥିବା 'ଶାଳିହୁଣ୍ଡମ' ଚୈତ୍ୟର ଶିଳାଲେଖ

(୧୦) ଓଡ଼ିଶାର ଇତିହାସ : ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପୃ ୧୦୪

(୧୧) ଉତ୍କଳ ପ୍ରସଙ୍ଗ, ୧୯୮୦ ଡ଼ିସେମ୍ବର, ପୃ ୩୯ Dr. K. Ch. Jena

(୧୨) ଉତ୍କଳ ପ୍ରାକୃତ : ଡକ୍ଟର ବେଣୀମାଧବ ପାଢ଼ୀ, କଟକ ମହଲ, କଟକ

(ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସୁରକ୍ଷିତ) ଓ କଳିଙ୍ଗପାଟଣାର ବନ୍ଦର ପେଣ୍ଠ ନିକଟର ବୌଦ୍ଧ ବିହାରର ଧ୍ୱଂସାବଶେଷ (ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସୁରକ୍ଷିତ), ବଂଶଧାରା ନଦୀଠାରୁ ଋଷିକୁଲ୍ୟା ନଦୀ ମଧ୍ୟର ବୌଦ୍ଧଯୁଗର କୀର୍ତ୍ତି ଅଟେ ଯାହା ଅଶୋକଙ୍କ କୀର୍ତ୍ତି । ଏହି ବୌଦ୍ଧବିହାରର ସାଦୃଶ୍ୟ ଇଷ୍ଟକମାନ ମହେନ୍ଦ୍ରଗିରିରେ ପରିଦୃଷ୍ଟ । ଉପରୋକ୍ତ ଶିଳାନୁଶାସନଗୁଡ଼ିକ କଳିଙ୍ଗର ଅବଜିତ ଅଞ୍ଚଳ, ସୀମାନ୍ତ ଅଞ୍ଚଳ ଓ କଳିଙ୍ଗର ଅଧିବାସୀଙ୍କ ପାଇଁ ଉଦ୍ଦିଷ୍ଟ ।

ଜଉଗଡ ଶିଳାନୁଶାସନର ୪ର୍ଥ, ୫ମ ଓ ୬ଷ୍ଠ ଧାଡ଼ିର ଭାଷା ନିମ୍ନରେ ପ୍ରଦତ୍ତ ହେଲା । (୧୩) ଓ ଅନୁବାଦର ଦୃଷ୍ଟାନ୍ତ ଦିଆଗଲା ।

"ମୋର ସୀମାନ୍ତ ଅବିଜିତ ଲୋକେ ପଚ୍ଚରିପାରନ୍ତି, 'ଆମପ୍ରତି ରାଜାଙ୍କ ମତ କ'ଣ ?' ମୁଁ ଚାହେଁ ସେମାନେ ଜାଣିରଖନ୍ତୁ ଯେ ରାଜାଙ୍କର ଆନ୍ତରିକ ଇଚ୍ଛା ହେଉଛି, ସେମାନେ ତାଙ୍କଠାରୁ ଉଦ୍‌ବିଗ୍ନ ନ ହୁଅନ୍ତୁ । ସେମାନେ ରାଜାଙ୍କ ଦ୍ୱାରା ଆଶ୍ୱସ୍ତ

---

(୧୩) ଜଉଗଡ଼ ଶିଳାନୁଶାସନର ମୂଳପାଠ : ଓଡ଼ିଆ ଜାତିର ଇତିହାସ : ଡକ୍ଟର ନବୀନ କୁମାର ସାହୁ, ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା ଭୁବନେଶ୍ୱର । With reference to Journal of Royal Asiatic Society (Kern) Indian Antiquary Vol XIX PP. 82. FF (Senart), Archaeolcgical Survey of South India Vol I (Buhler), Corpus Inscriptinurum Vol I (Hultzsch), Select Inscriptions Vol I (Sircar).

୧ମ ଠାରୁ ୪ର୍ଥ X X X

୪ର୍ଥ ଧାଡ଼ି—[ଖେ] ନ ଯୁଜେବୁ ତି ହିଦ ଲୋଗିକ ପାଲଲୋକ [କେଣ] ହେ ବଂ
ମେବ ମେ ଛନ୍ଦେ ସବ ମୁନି ସେ ସୁ [।] ଥିସ୍ୱା ଅଂଶାନଂ ଅ ବିଜିତା

୫ମ ଧାଡ଼ି—ନଂ କଂ ଚ୍ଛଂ ଦେ ସୁଲଜା ଅ ପେଂସୁତି [।] ଏ ତାକା [ବା] ମେ ଇଛ
[ଅଂ ତେ ସୁପାସୁନେୟୁ ଲଜା ହେବଂ ଇଛତି ଅନୁ [ବିଗି ନ ହେ୍ୱ
[ୟୁ]

୬ଷ୍ଠ ଧାଡ଼ି—ମମିୟ୍ୱାଯେ [ଅ] ସ୍ୱସେୟୁ ଚ ମେ ସୁଖ ମେବ ଚଲହେ [ୟୁ] ମମତେ ନୋ]
ଦୁଖ [ଂ] [।] ହେବଂ ଚ ପାସୁନେୟୁ ଖ [ମିସ] ତିନେ ଲଜା

୭ମ ଠାରୁ ୧୬ ଯାଏ X X X

ଛୁଅନ୍ତି ଏବଂ ତାଙ୍କଠାରୁ ଦୁଃଖ ନପାଇ ସୁଖ ଲଭ କରନ୍ତୁ । (୧୪) ଏଥିର ଅର୍ଥ ହେଲା ଅଶୋକ କଳିଙ୍ଗ ପରେ ଗୋଟିଏ ଅବିଜିତ ରାଜ୍ୟ ଜୟ କରି ପାଙ୍ଗାସ୍ଥ (ଅନ୍ତ୍ୟ) ଅଧିବାସୀଙ୍କୁ ନୀତି ଶିକ୍ଷା ଦେଉଥିଲେ । ଏହି ଅଞ୍ଚଳଟି ବଂଶଧାରାଠାରୁ ଋଷିକୁଲ୍ୟା ମଧ୍ୟବର୍ତ୍ତୀ ଅଞ୍ଚଳର ଅରଣ୍ୟାଞ୍ଚଳ । ଏହାର କେନ୍ଦ୍ରରେ ମହେନ୍ଦ୍ରଗିରି ଅବସ୍ଥିତ । ଏହି ଦୁର୍ଗମ ଗିରି ଦୁର୍ଗର ଚତୁଃପାର୍ଶ୍ୱ ଅସଂଖ୍ୟ ଦୁର୍ଗ ବେଷ୍ଟିତ ହୋଇଛି । ଏକ-ତୃତୀୟାଂଶ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳ ସମତଳ ଓ ଦୁଇ-ତୃତୀୟାଂଶ ଜଙ୍ଗଲରେ ପରିପୂର୍ଣ୍ଣ ।

ଗଞ୍ଜାମର ଜଉଗଡଠାରୁ ଅବିଭକ୍ତ କୋରାପୁଟସ୍ଥ ପଦ୍ମପୁର ଗ୍ରାମ ନିକଟସ୍ଥ ଗୁଡ଼ହାଣ୍ଡି ପର୍ବତ ସେଠାରୁ ଆନ୍ଧ୍ରର ମୁଖଲିଙ୍ଗମ୍ ନଗରୀ କଟକଠାରୁ ଶାଳିହୁଣ୍ଡମ ପାହାଡ ଓ କଳିଙ୍ଗପାଟଣାର ଚୈତ୍ୟ ସ୍ତୂପ ଓ ଶିଳାନୁଶାସନ ସମୁଦ୍ରଠାରୁ ଅର୍ଦ୍ଧଚନ୍ଦ୍ରାକୃତିରେ ପରିବ୍ୟାପ୍ତ (ମାନଚିତ୍ର ଦ୍ରଷ୍ଟବ୍ୟ) । ଋଷିକୁଲ୍ୟା ନଦୀ ମୁହାଣରୁ କଳିଙ୍ଗପାଟଣା ତଥା ବଂଶଧାରା ନଦୀ ମୁହାଣ ଯାଏ ଜଳପଥରେ ନିକଟତମ ରାସ୍ତା ଅଟେ । ଏହି ଅଞ୍ଚଳରେ କେନ୍ଦ୍ରରେ ମହେନ୍ଦ୍ରଗିରି ଧନ ଜନ ଗୋପଲକ୍ଷ୍ମୀ ଦ୍ୱାରା ବିଭବଶାଳୀ ଥିଲା । ଏହା ମହାମାନ୍ୟ ଅଶୋକଙ୍କ ଲୋଲୁପ ଦୃଷ୍ଟିରେ ପଡ଼ିଥିଲା ।

ଶାଳିହୁଣ୍ଡମର ବୌଦ୍ଧ ମହାଚୈତ୍ୟ, ଉଚ୍ଚତା ୧୦୦ ଫୁଟ ପ୍ରସ୍ତର ନିର୍ମିତ ବୌଦ୍ଧ ଭିକ୍ଷୁ ବାସୋପଯୋଗୀ ଥିଲା । ୭ମ ଶତାବ୍ଦୀରେ ଏହା ଚୀନ ପରିବ୍ରାଜକ ହୁଏନସାଂଙ୍କ ଦୃଷ୍ଟିରେ ପଡ଼ିଛି । ଏହି ଶିଳାନୁଶାସନରେ କଳିଙ୍ଗ ଯୁଦ୍ଧର ରୋମହର୍ଷଣ-କାରୀ ବିଷୟ ବର୍ଣ୍ଣିତ । ଖ୍ରୀ: ପୂ: ୩ୟ ଶତାବ୍ଦୀଠାରୁ ଦଶମ ଶତାବ୍ଦୀ ଯାଏ ବୌଦ୍ଧଧର୍ମର ପ୍ରସିଦ୍ଧ କେନ୍ଦ୍ର ହିସାବରେ ଏହି ସ୍ଥାନ ଖ୍ୟାତି ଅର୍ଜନ କରିଥିଲା । (୧୫)

କଳିଙ୍ଗ ଯୁଦ୍ଧ ସମୟରେ ମହେନ୍ଦ୍ରର ପତନ ଘଟିଛି । କାରଣ ଏହି ଅଞ୍ଚଳକୁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଜୟ କରିନପାରି ଫେରିଯାଇଥିଲେ । ତାଙ୍କ ନାତି ଅଶୋକ ମଗଧର ମର୍ଯ୍ୟାଦା ରକ୍ଷା କରିବା ଉଦ୍ଦେଶ୍ୟ ହେଉ କିମ୍ବା ଏହି ଅଞ୍ଚଳର ଅମିତ-ସୌଭାଗ୍ୟ-ସମ୍ପନ୍ନ ଧନ ସମ୍ପତ୍ତି ଲୋଭରେ ହେଉ ତାଙ୍କ ରାଜତ୍ୱର ଅଷ୍ଟମ ବର୍ଷରେହିଁ ଅକସ୍ମାତ୍ କଳିଙ୍ଗ ଆକ୍ରମଣ କରିଦେଲେ । ଯଥାର୍ଥରେ କଳିଙ୍ଗର ସଂସ୍କୃତି ଓ ତାର ମୌଳିକ ରୂପର ପରିବର୍ତ୍ତନ ପାଇଁ ଏହି ଘଡ଼ଯନ୍ତ୍ରର ଇତିହାସ ଉପାଦେୟ ଅଟେ । ଏହି ଅଞ୍ଚଳର ଅଧିବାସୀ ମଗଧ ଶାସକଙ୍କ ଦୌରାତ୍ମ୍ୟ ସହ୍ୟ କରିପାରି ନାହାନ୍ତି । ମାତୃଭୂମିର ସ୍ୱାଧୀନତା

---

(୧୪) ଓଡ଼ିଶାର ଇତିହାସ : ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ଖଣ୍ଡ ୨ଧର, ପୃ ୧୧୬

(୧୫) —ଏଜନ— ପୃ ୧୧୫ With reference to Thomas Walters on Yuan Chawngs Travels (1905) Vol. I

ରକ୍ଷା କରିବା ସକାଶେ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି । ପାଖ ଦୁଇବର୍ଷ ଯାଏ ପ୍ରଚଣ୍ଡ ସଂଗ୍ରାମ ଲାଗିରହେ । ଅଗଣିତ ଯୋଦ୍ଧାଙ୍କ ପ୍ରାଣକ୍ଷୟ ଘଟେ । କୁହାଯାଇଛି, "ସେହି ଯୁଦ୍ଧରେ ଏକା କଳିଙ୍ଗର ଲକ୍ଷେ ଯୋଦ୍ଧାଙ୍କୁ ହତ୍ୟା କରାଗଲା । ଦେଢ଼ ଲକ୍ଷ ବନ୍ଦୀ ହେଲେ ଓ ତାର ଦୁଇଗୁଣ ଲୋକ ମୃତ୍ୟୁବରଣ କଲେ । ଏ ଗଣନାରେ ମଗଧ ସେନାଙ୍କ ହତାହତ ସଂଖ୍ୟା ଅନ୍ତର୍ଭୁକ୍ତ ନୁହେଁ । ସେହି ଭୟାବହ ରଣ ଯଜ୍ଞ ପରେ ଅଶୋକ ଅହିଂସା ମନ୍ତ୍ରରେ ଦୀକ୍ଷିତ ହୋଇ ଆକ୍ରାନ୍ତ ଦେଶ ନରନାରୀଙ୍କୁ ଆଶ୍ୱାସନା ଦେବାପାଇଁ ଉପଦେଶବାଣୀ ଶୁଣାଇଛନ୍ତି । (୧୬) ଏହାହିଁ ଶାଳିହୁଣ୍ଡମ ଧୌଳି ଓ ଜଉଗଡ଼ର ଶିଳାନୁଶାସନର ଭାଷା । ଛଡ଼ ଘଟିଛି ଏହି ମହେନ୍ଦ୍ରାଞ୍ଚଳର । ଏହି ବିଷୟ ଜାଣିବା ପାଇଁ ଧୈର୍ଯ୍ୟର ସହିତ ଭୌଗୋଳିକ ସ୍ଥିତି ଅନୁଧ୍ୟାନଯୋଗ୍ୟ ।

ଏହି ବିଜୟଶିକାର ପ୍ରତିଶୋଧ ନେବା ସକାଶେ ଏହି ଅଞ୍ଚଳର ଅଧିବାସୀ ଉତ୍କ୍ଷିପ୍ତ ହୋଇପଡ଼ିଥିଲେ । ଏହାର କିଛିକାଳ ପରେ ବୀର ରାଜା ମହାମେଘବାହନଙ୍କ ଆବିର୍ଭାବ ହୁଏ । ଏପରିକି କଳିଙ୍ଗ ରାଜ୍ୟର ସ୍ଥିତି ବା ପରିସୀମା ନିର୍ଦ୍ଧାରଣ ହୋଇ ନାହିଁ । ଏହି ପରିପ୍ରେକ୍ଷୀରେ ମହେନ୍ଦ୍ରଗିରିଠାରେ କଳିଙ୍ଗ ରାଜଧାନୀର ସ୍ଥିତିକୁ ସମ୍ପୂର୍ଣ୍ଣଭାବେ ଅସ୍ୱୀକାର କରାଯାଇ ପାରେନା । କଳିଙ୍ଗ ଯୁଦ୍ଧ ପରେ ପରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ମହେନ୍ଦ୍ରର ପତନ ଘଟିଛି । (୧୭)

ହାତୀଗୁମ୍ଫା ଶିଳାଲେଖରେ ମହେନ୍ଦ୍ର ବିଷୟରେ ଉଲ୍ଲେଖ ନଥିଲେ ମଧ୍ୟ ଏହା ସୂଚିତ ଯେ ମହେନ୍ଦ୍ରାଞ୍ଚଳ କଳିଙ୍ଗର ଚେଦିବଂଶୀୟ ରାଜା ଖାରବେଳଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଏହା ଦ୍ୱିତୀୟ ଶତାବ୍ଦୀର ଇତିହାସ ଅଟେ । (୧୮) ନାସିକ ଶିଳାଲେଖରୁ ଜଣାଯାଏ ଯେ, ସାତବାହନ ବଂଶର ରାଜା ସାତକର୍ଣ୍ଣି ମହେନ୍ଦ୍ରାଞ୍ଚଳର ଅଧିକାରୀ ଥିଲେ । (୧୯) ସେହି ରାଜା ସାତକର୍ଣ୍ଣି ଗିରିରାଜ (Lord of Mountain's) ବୋଲି ପ୍ରଖ୍ୟାତ ଥିଲେ । ଖାରବେଳ ସାତବାହନ ରାଜା ସାତକର୍ଣ୍ଣିଙ୍କୁ

---

(୧୬) ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଧର୍ମଧାରା : ଡକ୍ଟର ବେଣୀମାଧବ ପାଢ଼ୀ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

(୧୭) କୋଣାର୍କ ୭୨ତମ ସଂଖ୍ୟା, ୧୯୮୬ ପୃ ୩ : ଡ଼. ନବୀନକୁମାର ସାହୁ

(୧୮) O. H. R. J : The History of Mount Mahendra by Dr. B. K. Rath, P. 86

(୧୯) —ଏକନ—

ପରାସ୍ତ କରିଥିବା ହେତୁ ଏହି ମହେନ୍ଦ୍ରାଞ୍ଚଳ ତାଙ୍କର ହସ୍ତଗତ ହୋଇଥିଲା । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମଧ୍ୟ ଏହିମତ ପ୍ରଦାନ କରନ୍ତି । ସାତବାହନ ବଂଶର ବାଶିଷ୍ଠୀ ପୁତ୍ର ପୁଲମାବିଙ୍କ (ଖ୍ରୀ: ଅ: ୧୩୦-୧୫୪) ନାସିକ ଗୁମ୍ଫା ଶିଳାଲେଖରୁ (୨୦) ଜଣାଯାଏ ଯେ ମହେନ୍ଦ୍ର ପର୍ବତ ବର୍ତ୍ତମାନ ଓଡ଼ିଶା ଓ ଆନ୍ଧ୍ରରେ ଥିବା ଗଞ୍ଜାମ ଏବଂ ଶ୍ରୀକାକୁଲମ୍ ଜିଲ୍ଲାର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ । (୨୧) ମହେନ୍ଦ୍ରାଞ୍ଚଳ ଶୈବପୀଠ ରୂପେ ପରିଗଣିତ ଥିଲା ଓ ଖାରବେଳ ଜୈନମାନଙ୍କ ପ୍ରତି ଅନୁରକ୍ତ ଥିଲେ । ସେ ତାଙ୍କ ରାଜ୍ୟର କେନ୍ଦ୍ର ହେଲ ଖଣ୍ଡଗିରି ଓ ଉଦୟଗିରି ପ୍ରତି ବିଶେଷ ଦୃଷ୍ଟି ନିକ୍ଷେପ କରିଥିଲେ । ତେବେ ଖାରବେଳଙ୍କ ମୃତ୍ୟୁପରେ କଳିଙ୍ଗ ଏକ ସ୍ୱାଧୀନ ରାଜ୍ୟରୂପେ ପରିଗଣିତ ହେଲା ।

ଖାରବେଳଙ୍କ ଶାସନ ପରେ ପରେ ତାଙ୍କର ଉତ୍ତରାଧିକାରୀମାନଙ୍କ କୃତିତ୍ୱ ସମ୍ପର୍କରେ ଇତିହାସ ନୀରବ । ତେବେ, ଉତ୍ତର ଭାରତର ଶାସକବୃନ୍ଦ ଦକ୍ଷିଣ ଭାରତ ରାଜାମାନଙ୍କ ଆକ୍ରମଣର ପ୍ରତିଶୋଧ ପାଇଁ ପ୍ରସ୍ତୁତ ହେଲାବେଳେ କଳିଙ୍ଗର ରାଜଶକ୍ତି ଦୁର୍ବଳ ଥିଲା ଓ ମହେନ୍ଦ୍ରାଞ୍ଚଳ ଏହି ସମୟରେ ଦକ୍ଷିଣ ଭାରତର ସାତବାହନ ଶାସନରୁ ମୁକ୍ତ ଥିଲା । କଳିଙ୍ଗରେ ପୁନଶ୍ଚ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ସୃଷ୍ଟି ଏକ ପ୍ରକାର ପ୍ରଶାସନିକ ବିଶୃଙ୍ଖଳା ସୃଷ୍ଟି କରିଥିଲା ଯାହା ସମ୍ବନ୍ଧରେ କୌଣସି ସଠିକ୍ ପ୍ରମାଣ ଦେବା କଷ୍ଟ-ସାଧ୍ୟ । ତଥାପି ପୂର୍ବ-ଭାରତ ଉପକୂଳ ଅଞ୍ଚଳ, ମନ୍ଦିର ଇତ୍ୟାଦିରୁ ସଂଗୃହୀତ ମୁଦ୍ରା-ମାନଙ୍କୁ ଭିତ୍ତି କରି ଇତିହାସର ଉଦ୍‌ଘାଟନ କରିହୁଏ । କାରଣ ବିନା ବ୍ୟାବସାୟିକ ସୂତ୍ରରେ ମୁଦ୍ରାପ୍ରଚଳନ ଓ ଆଦାନ ପ୍ରଦାନ ଅସମ୍ଭବ । ସେହି ସମୟରେ ଏହି ରାଜନୈତିକ ଅସ୍ଥିରତାର ସୁଯୋଗ ନେଇ ପଞ୍ଜାବ ପଟ୍ଟ କୁଶାଣ, ଶକ ଓ ମୁରୁଣ୍ଡ ପ୍ରଭୃତି ଜାତି ଭାରତର ପୂର୍ବାଞ୍ଚଳ ଅଧିକାର କରିବା ପାଇଁ ପ୍ରସ୍ତୁତ ହୋଇଯାଇଛନ୍ତି । ପରେ ପରେ ଖାରବେଳ ଶାସିତ ଅଞ୍ଚଳରେ କୁଶାଣ ଶାସନ ଆରମ୍ଭ ହୁଏ (ଖ୍ରୀ. ୧ମ ଶତାବ୍ଦୀରୁ ୩ୟ ବା ୪ର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ।)

---

(୨୦) Archaeological remains of B. B. S. R., P. 208-209 Dr. K. Ch. Panigrahi with reference to proceedings of Indian History Congress, 1949 Page 53.

(୨୧) ନାସିକଗୁମ୍ଫା ଅଭିଲେଖ—"ହିମବନ୍ତ ମେରୁମନ୍ଦର ପର୍ବତ ସମ, ସାରସ, ଅସିକ ଅସକ ମୂଳକ ସୁରଂ କୁକୁର ପରାନ୍ତ ଅନୁପ ବିଦର୍ଭ ଅକରାବନ୍ତୀ ରାଜସ ବିଟ୍ ଛବତ ପାରିବୃତ ସହ୍ୟ କହ୍ନଗିରି ମଚସିରି ଟନ ମଳୟ ମହିନ୍ଦ ସେଟଗିରି ଚକୋର ପବତ ପତିସ...।"

କୁଶାଣ ରାଜତ୍ୱ କାଳରେ କଳିଙ୍ଗ ରାଜ୍ୟ ଦୁଇ ଭାଗରେ ବିଭକ୍ତ ହୋଇଥିଲା । (୧) ଉତ୍ତରରେ ବୈତରଣୀ ନଦୀଠାରୁ ଋଷିକୁଲ୍ୟା ବା ଚିଲିକା ଯାଏ—ଏହାର ନାମ ତୋଷାଳି, ଏବଂ (୨) ଦକ୍ଷିଣରେ ଋଷିକୁଲ୍ୟାଠାରୁ ଗୋଦାବରୀ ନଦୀଯାଏ 'କଳିଙ୍ଗ' ନାମକରଣ ହେଲା । ଏଥିପୂର୍ବରୁ, ଅଶୋକଙ୍କ କାଳରୁ ଶାସନଗତ ସୁବିଧା ଦୃଷ୍ଟିରୁ ଏଭଳି ବିଭକ୍ତୀକରଣ ହୋଇଥିବା ଐତିହାସିକମାନେ ପ୍ରମାଣ ଦିଅନ୍ତି । କାରଣ ଅଶୋକଙ୍କ ଧର୍ମାନୁଶାସନଗୁଡ଼ିକରୁ ଗୋଟିଏ ଧଉଳିରେ ଓ ଅନ୍ୟଟି ଜଉଗଡ଼ରେ ଅବସ୍ଥିତ । (୧୨) ଅତଏବ ଏହା ସ୍ପଷ୍ଟ ଯେ ମହେନ୍ଦ୍ରାଞ୍ଚଳ ଏହି କଳିଙ୍ଗର ଶାସନାଧୀନ ଥିଲା । କୁଶାଣମାନେ ଏହି ମହେନ୍ଦ୍ରାଞ୍ଚଳରେ ନିଜର ଆଧିପତ୍ୟ ବିସ୍ତାର କରିନଥିଲେ । ଏହାର ଦକ୍ଷିଣାଂଶରେ ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟଥିଲା । ସେଥିମଧ୍ୟରୁ ଏ ଅଞ୍ଚଳର ଶାସକ ଥିଲେ 'ଗୁହଶିବ' । ପୂର୍ବରୁ ସୂଚନା ଦିଆଯାଇଛି ମାହିଷ, ଭୌମ ଓ ପୁଳିନ୍ଦ ଜାତି ପୁରାଣମାନଙ୍କରେ ବର୍ଣ୍ଣିତ ଏହି ଅଞ୍ଚଳର ଅଧିବାସୀ ଓ ଏମାନେ ଏ ଅଞ୍ଚଳର ଆଦିମ ଅଧିବାସୀ । ଐତିହାସିକମାନେ ମତ ଦିଅନ୍ତି ଯେ ମହେନ୍ଦ୍ରର ଭୌମ ଓ ପୁଳିନ୍ଦ ଆଦିବାସୀ ଆର୍ଯ୍ୟମାନଙ୍କର ସଂପର୍କରେ ଆସି 'ଗୁହ' ବା ଗୁହକ ହିସାବରେ ନିଜର ପରିଚୟ ପ୍ରଦାନ କରୁଥିଲେ । (୧୩)

ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ଦକ୍ଷିଣ ଭାରତରେ ସାତବାହନ ବଂଶର ପତନ ପରେ ମୁରୁଣ୍ଡମାନେ କଳିଙ୍ଗ ଅଧିକାର କରିଥିବା ଜଣାପଡ଼େ । କଳିଙ୍ଗର ଦାଠା ଧାତୁ ବଂଶ ନାମକ ବୌଦ୍ଧଗ୍ରନ୍ଥରୁ ଜଣାପଡେ ଯେ ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀର ଶେଷବେଳକୁ ପାଟଳିପୁତ୍ରର ରାଜା ଥିଲେ 'ପାଣ୍ଡୁ' ଓ କଳିଙ୍ଗର ରାଜା ଥିଲେ 'ଗୁହଶିବ' । ଗୁହଶିବ, ପଣ୍ଡୁଙ୍କର ଅଧୀନସ୍ଥ ଶାସକ (୧୪) ଓ ଗୁହଶିବ 'ବୁଦ୍ଧଙ୍କ ଦନ୍ତଧାତୁର' ଉପାସକ । ପଣ୍ଡୁ ଓ ଗୁହଶିବଙ୍କ ମଧ୍ୟରେ ସଂଘର୍ଷ ଘଟିବା ଜଣାପଡେ କାରଣ ପଣ୍ଡୁଥିଲେ ଜୈନ-ଧର୍ମାଶକ୍ତ । ଡ଼କ୍ଟର ନବୀନକୁମାର ସାହୁ ଓ ଡ଼କ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ମତରେ 'ଗୁହଶିବ' ଜଣେ ମୁରୁଣ୍ଡ ବଂଶୀୟ ରାଜା (୧୫) ଅତଏବ ଏହା ପ୍ରମାଣ ସିଦ୍ଧ ଯେ ପୁରାଣ ବର୍ଣ୍ଣିତ କଳିଙ୍ଗ, ମାହିଷ ଓ ମହେନ୍ଦ୍ରଗିରିର ଶାସକ ଗୁହଙ୍କ ରାଜତ୍ୱକାଳ ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀ ।

---

(୧୨) ଓଡ଼ିଶାର ଇତିହାସ : ପଣ୍ଡିତ ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପୃ ୮୮

(୧୩) ଓଡ଼ିଆ ଜାତିର ଇତିହାସ : ଡ଼: ନବୀନକୁମାର ସାହୁ, ପୃ ୮୮

(୧୪) ଓଡ଼ିଆ ଜାତିର ଇତିହାସ : ଡ଼. ନବୀନକୁମାର ସାହୁ, ପୃ ୧୯୦

(୧୫) —ଏଜନ—

ଏଠାରେ ସୂଚନାଯୋଗ୍ୟ ଯେ ଏହି କୁଶାଣ ମୁରୁଣ୍ଡ ଶାସନକୁ, ଚତୁର୍ଥ ଶତାବ୍ଦୀ ଆରମ୍ଭରେ ବିନ୍ଧ୍ୟାଟବୀ ଅଞ୍ଚଳର ନାଗବଂଶୀ ମହାରାଜା ଶତ୍ରୁଭଞ୍ଜ ବିଲୋପ ସାଧନ କରିଥିଲେ । (୨୭) ଏହାଙ୍କ ରାଜ୍ୟ (ନାଗବଂଶ) ଉତ୍ତରଭାରତର ରାମନଗର ଠାରୁ ତାମ୍ରଲିପ୍ତି-ଗୌହାଟିଯାଏ ଓ ଦକ୍ଷିଣରେ ଉଭୟ କୋଶାଳୀ ବ୍ୟାପିଥିଲା । ଏହି ନାଗବଂଶୀ ଆକ୍ରମଣର ପ୍ରତିଶୋଧ ନେଇଛନ୍ତି ପ୍ରଥମ ଚନ୍ଦ୍ରଗୁପ୍ତ (ଖ୍ରୀ ୩୧୯-୨୦) । ତାଙ୍କ ସାମ୍ରାଜ୍ୟର ପରିସର ଥିଲା—ଗଙ୍ଗା ଅବବାହିକାରେ ପ୍ରୟାଗ, ସାକେତ ଓ ମଗଧ । ନାଗବଂଶୀ ରାଜାମାନେ ଏହି ଗୁପ୍ତ ସାମ୍ରାଜ୍ୟର ପ୍ରଧାନ ଶତ୍ରୁ ଭାବେ ଦେଖାଦେଲେ । ଗୁପ୍ତ ଶାସନର ଦକ୍ଷିଣ ଭାରତ ଅଭିଯାନ ସମୟରେ ଏମାନେ ପ୍ରଧାନ ପ୍ରତିବନ୍ଧକ ହେଲେ । ବିନ୍ଧ୍ୟାଟବୀ ପାରହେଲେହିଁ ମହେନ୍ଦ୍ରାଞ୍ଚଳରେ ପ୍ରବେଶ ସମ୍ଭବ । ଏଣୁ ପ୍ରଥମ ଚନ୍ଦ୍ରଗୁପ୍ତଙ୍କ ପୁତ୍ର ସମୁଦ୍ରଗୁପ୍ତ ତାଙ୍କ ଅଭିଯାନ କାଳରେ ନାଗବଂଶର ପତନ ପାଇଁ ପଥ ସୁଗମ କରିଛନ୍ତି ।

## ଗୁପ୍ତଯୁଗରେ ମହେନ୍ଦ୍ରଗିରିର ସ୍ଥାନ :

ଯେକୌଣସି ଆକର୍ଷଣ ନଥିଲେ କେହି କେବେ କୌଣସି ଜନପଦ ପ୍ରତି ଲାଳାୟିତ ହେବ ନାହିଁ । ପ୍ରତିଶୋଧମୂଳକ ଆକ୍ରମଣ ହେଉ କିମ୍ବା ରାଜ୍ୟ ପରିସର ବୃଦ୍ଧି ସକାଶେ ହେଉ ମହାମାନ୍ୟ ସମୁଦ୍ରଗୁପ୍ତଙ୍କୁ ସୁଦୂର ମଗଧରୁ ଆକର୍ଷିତ କରିଥିଲା ଏହି କୁଳାଚଳ ମହେନ୍ଦ୍ରଗିରି । ଏଥିର ଜ୍ୱଳନ୍ତ ନିଦର୍ଶନ ପ୍ରୟାଗ ଶିଳାଲେଖ । (୨୭) ତାଙ୍କ ସଭାପଣ୍ଡିତ ହରିଷେଣଙ୍କ ଦ୍ୱାରା ଏହା ଲିଖିତ । ତାଙ୍କ ଦିଗ୍‌ବିଜୟର ବିବରଣୀ ଏଥିରେ ପ୍ରଦତ୍ତ । ସମୁଦ୍ରଗୁପ୍ତ ପ୍ରଥମରେ ଅଚ୍ୟୁତନାଗ, ନାଗସେନ ଏବଂ ଗଣପତି ନାଗଙ୍କୁ ମିଳିତ ଭାବେ ପରାସ୍ତ କରି ତାଙ୍କ ଦକ୍ଷିଣାପଥ ଅଭିଯାନ ଚଳାଇ ଆଟବିକ, ଦୁର୍ଗମ ଅରଣ୍ୟ-ରାଜ୍ୟଗୁଡ଼ିକୁ ଅଧିକାର କରିଥିଲେ । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ମଧ୍ୟଭାଗରେ ତାଙ୍କ ସାମ୍ରାଜ୍ୟ ପୂର୍ବରେ ବ୍ରହ୍ମପୁତ୍ରଠାରୁ ପଶ୍ଚିମରେ ଯମୁନା ଓ ଚମ୍ବଲ ପର୍ଯ୍ୟନ୍ତ, ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ ନର୍ମଦା ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଏହି ଦକ୍ଷିଣାପଥ ଅଭିଯାନ (ମାନଚିତ୍ର ସମୁଦ୍ରଗୁପ୍ତଙ୍କ ଦକ୍ଷିଣାପଥ ଅଭିଯାନ) ସର୍ବସମ୍ମତ । (୨୮) କିନ୍ତୁ ଆଶ୍ଚର୍ଯ୍ୟର କଥା ସମୁଦ୍ରଗୁପ୍ତ ମହାକାନ୍ତାର ଦେଇ (ଓଡ଼ିଶାର ବାଲେଶ୍ୱର,

---

(୨୭) ଓଡ଼ିଶା ଇତିହାସ : ଡ଼. ସତ୍ୟନାରାୟଣ ରାଜଗୁରୁ

(୨୭) History of Ancient India ; Ram Sankar Tripathy, Page 243

(୨୮) ଭାରତ ଇତିହାସ ପ୍ରାଚୀନଯୁଗ : ଅଧ୍ୟାପକ ମନ୍ମଥନାଥ ଦାସ, ପୃ ୧୭୦

କଟକ, ପୁରୀ ଜିଲ୍ଲା) ଦିଆ ମହେନ୍ଦ୍ରଗିରି ଆସିଛନ୍ତି—ଏ ଏକ ଦୈବିକ ନିର୍ଦ୍ଦେଶ ହୋଇପାରେ । ଐତିହାସିକମାନେ ମଧ୍ୟ ସନ୍ଦିହାନ । (୨୯)

> It is not known why Samudragupta for his southern campaigns did not proceed through the comparatively easy tracts of the present Balasore, Cuttack, Puri districts, but chose to lead his army through the difficult forest-clad routes of Mahakosala and Mahakantars". (Upper Mahanadi and Kalahandi area).

ଏ ସମ୍ପର୍କରେ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ କହନ୍ତି "ମହାକାନ୍ତାର ଠାରୁ ମହେନ୍ଦ୍ର ପର୍ବତର ପାର୍ଶ୍ୱ‌ର୍ତ୍ତୀ ଅଞ୍ଚଳରେ ପହଞ୍ଚିବା ପାଇଁ "କଳିଙ୍ଗଘାଟି' ଙ୍କର ଯାତାୟାତ ହୋଇଥିବ । କାମାନଳନାକ୍ଷପୁର ଶାସନପ୍ରାପ୍ତ ଗଙ୍ଗାବଂଶୀ ରାଜା ସାମନ୍ତବର୍ମାଙ୍କ ତାମ୍ର ଶାସନରେ ଏହି ରାସ୍ତାର ନାମ "ଧର୍ମରାଜ-କଳିଙ୍ଗମାର୍ଗ" ଥିବା ଦେଖାଯାଏ । (୩୦) ଶିଳାଲେଖରେ ବର୍ଣ୍ଣିତ ବିଷୟବସ୍ତୁ ନିମ୍ନରେ ପ୍ରଦତ୍ତ ହେଲା ।

କୋଶଳର ରାଜା —ମହେନ୍ଦ୍ର (ଆଧୁନିକ ସମ୍ବଲପୁର ଜିଲ୍ଲା, ମଧ୍ୟପ୍ରଦେଶର ରାୟପୁର ଓ ବିଳାସପୁର ଜିଲ୍ଲା)

ମହାକାନ୍ତାରର ରାଜା—ବ୍ୟାଘ୍ରରାଜ (ବିନ୍ଧ୍ୟ ପର୍ବତର ଉତ୍ତରପାର୍ଶ୍ୱ, ବଲାଙ୍ଗୀର, କୋରାପୁଟ, କଳାହାଣ୍ଡି)

କୁରାଳର ରାଜା —ମଣ୍ଟରାଜା (ଆଧୁନିକ ସୋନପୁର, ଅନ୍ୟମତ ଘୁମୁସରର କୁଲଡ଼)

ପିଷ୍ଟପୁରର ରାଜା —ମହେନ୍ଦ୍ରଗିରି (ଗୋଦାବରୀ ଜିଲ୍ଲାର ପିଠାପୁର)

କୋଟ୍ଟୁରର ରାଜା —ସ୍ୱାମୀଦତ୍ତ (କୋଟ୍ଟୁରକ-ମହେନ୍ଦ୍ରଗିରି ପାଦଦେଶ ୧୨ ମାଇଲ୍ ଦକ୍ଷିଣକୁ ଗାରବନ୍ଧ-ଗୁରାଣ୍ଡି ମଧ୍ୟବର୍ତ୍ତୀ ଅଞ୍ଚଳ । ଛତପୁର, ବଡ଼କଉଟୁରୁ ଓ ସାନକଉଟୁରୁ ଅଞ୍ଚଳ)

ଏରଣ୍ଡପଲ୍ଲୀର ରାଜା —ଦମନ (ଆଧୁନିକ ଶ୍ରୀକାକୁଲମର ଏରଣ୍ଡପଲ୍ଲୀ)

---

(୨୯) History of Orissa : Dr K. C. Panigrahi, Page 43

(୩୦) ଓଡ଼ିଶା ଇତିହାସ : Dr. Satyanaraya Rajguru, Page 197

କାଞ୍ଚିର ରାଜା—ବିଷ୍ଣୁଗୋପ (କାଞ୍ଚିବରମ୍)

ଅବମୁକ୍ତର ରାଜା—ନୀଳରାଜ (ଅଜ୍ଞାତ ?) (ରାଜଗୁରୁ କହନ୍ତି—ପାଲକୋଣ୍ଡା)

ବେଙ୍ଗୀର ରାଜା—ହସ୍ତିବର୍ମନ (ଆଧୁନିକ ପେଦେବେଗି)

ପାଲକ୍କର ରାଜା—ଉଗ୍ରସେନ (ନେଲ୍ଲୋର ଜିଲ୍ଲାର ପଲ୍ଲକନ୍ ନଗର)

ଦେବରାଷ୍ଟ୍ରର ରାଜା—କୁବେର ?

କୁସ୍ଥଳପୁରର ରାଜା—ଧନଞ୍ଜୟ (ଆଧୁନିକ ଉତ୍ତର ଆର୍କଟ ଜିଲ୍ଲାରେ ଅବସ୍ଥିତ)

ମହାମାନ୍ୟ ସମୁଦ୍ରଗୁପ୍ତ କେଉଁ ମାର୍ଗ ଦେଇଯାଆନ୍ତୁ ପଛକେ ସେ ମହେନ୍ଦ୍ରଗିରି ଅଧିକାର କରିବା ସର୍ବବାଦସମ୍ମତ । ପ୍ରୟାଗ ସ୍ତମ୍ଭ ଶିଳାଲେଖହିଁ ପ୍ରମାଣ । (୩୧) ସେହି ସମୟରେ ଗୁପ୍ତାବ୍ଦ ପ୍ରଚଳନ ଥିଲେ ସୁଦ୍ଧା, ଏହି ଶିଳାଲେଖରେ ଅବ୍ଦ ଉଲ୍ଲେଖ ନାହିଁ । ନିଶ୍ଚିତ ରୂପେ ଏହା ବିଜୟୋତ୍ସବ ସମୟର ଲେଖା ।

ସମୁଦ୍ରଗୁପ୍ତଙ୍କ ଦିଗ୍‌ବିଜୟ ସମୟରେ ସେ ମହେନ୍ଦ୍ରଗିରିକୁ ସାମରିକ ଘାଟି ହିସାବରେ ବ୍ୟବହାର କରି ନଥିଲେ ଦକ୍ଷିଣାପଥ ଅଭିଯାନ କାଳରେ ଉତ୍ତରରୁ ଦକ୍ଷିଣକୁ ଓ ଦକ୍ଷିଣରୁ ଉତ୍ତରକୁ ବରାବର ଯିବା ଆସିବା କରି ରାଜାମାନଙ୍କ ସହିତ ଯୁଦ୍ଧ କରିବା ସମ୍ଭବପର ହୋଇନଥାନ୍ତା । ଯଥାର୍ଥରେ ଏହି ମହେନ୍ଦ୍ରାଞ୍ଚଳ ସେହି ସମୟରେ ଏକ ସାମରିକ ଘାଟିଥିଲା । ଭୌଗୋଳିକ ସମ୍ପର୍କିତ ଗଡ଼ଦୁର୍ଗମାନଙ୍କ ସ୍ଥିତିହିଁ ତାର ବଳିଷ୍ଠ ପ୍ରମାଣ । (ମହେନ୍ଦ୍ରଗିରିର ମାର୍ଗସୂଚକ ମାନଚିତ୍ର ଓ ସମୁଦ୍ରଗୁପ୍ତଙ୍କ ଦକ୍ଷିଣାପଥ ଅଭିଯାନ ମାନଚିତ୍ର ଦ୍ରଷ୍ଟବ୍ୟ)

ଏ ସଂପର୍କରେ କଳିଙ୍ଗର ଆତ୍ମକଥାରେ ମହେନ୍ଦ୍ରଗିରିରେ ମହାମାନ୍ୟ ସମୁଦ୍ରଗୁପ୍ତଙ୍କ ଅଭିଯାନକାଳୀନ ବର୍ଣ୍ଣନା (୩୨) ଐତିହାସିକଙ୍କ ଦୃଷ୍ଟିରେ କଭଳି ବର୍ଣ୍ଣିତ ତାହା ଏଠାରେ ପ୍ରଦତ୍ତ ହେଲା ।

---

(୩୧) ...କୌସଲକ ମହେନ୍ଦ୍ର, ମହ(ହା)କାନ୍ତାରକ ବ୍ୟାଘ୍ରରାଜ, କୌରାଳକ ମଣ୍ଟରାଜ, ପୈଷ୍ଟପୁରକ ମହେନ୍ଦ୍ର, ଗିରି କୌଟ୍ଟୁରକ ସ୍ୱାମୀଦତ୍ତ, ଐରଣ୍ଡପଲ୍ଲକ ଦମନ, କାଞ୍ଚେୟକ ବିଷ୍ଣୁଗୋପ, ଅବମୁକ୍ତକ ନୀଳରାଜ, ବୈଙ୍ଗେୟକ ହସ୍ତିବର୍ମ୍ମ, ପାଲକ୍କକୋଗ୍ରସେନ, ଦୈବରାଷ୍ଟ୍ରକ କୁବେର, କୌସ୍ଥଳପୁରକ ଧନଞ୍ଜୟ ପ୍ରଭୃତି ଦକ୍ଷିଣାପଥ—ରାଜଗ୍ରହଣ—ମୋକ୍ଷାନୁଗ୍ରହ—ପ୍ରତାପୋନ୍ମିଶ୍ରି ମହାଭାଗ୍ୟସ୍ୟ.. ”

(୩୨) କଳିଙ୍ଗର ଆତ୍ମକଥା : ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପୃ ୨୫

"ପ୍ରବଳ ପରାକ୍ରମଶାଳୀ ଗୁପ୍ତବଂଶୀୟ ମହାରାଜ ସମୁଦ୍ରଗୁପ୍ତଙ୍କ ନେତୃତ୍ୱରେ ନବାଗତ ପୂର୍ବଭାରତୀୟ ସୈନ୍ୟମାନେ ମହାକାନ୍ତାର ଅତିକ୍ରମ କରି କୁରାଳ, ପିଷ୍ଟପୁର ଦେବରାଷ୍ଟ୍ର, ଏରଣ୍ଡପଲ୍ଲୀ, କୋଠୁର ପ୍ରଭୃତି କ୍ଷୁଦ୍ରରାଜ୍ୟଗୁଡ଼ିକ ଅନାୟାସରେ ଜୟ କରିଗଲେ । ତା ପରେ ଉନ୍ନତ ମହେନ୍ଦ୍ର ଶିଖରରେ ସେ ଆରୋହଣ କରି ସେଠାରେ ଏକ ଜୟସ୍ତମ୍ଭ ନିର୍ମାଣ କଲେ । ସେହି ବିଜୟ ସ୍ତମ୍ଭରେ ଗୁପ୍ତବଂଶୀୟ ପତାକା ମହାସମାରୋହରେ ଉଡାଇଥିଲେ । ଅତି ପ୍ରାଚୀନ କାଳରୁ ପାର୍ବତୀୟ ଅଧିବାସୀ ଶବର ଓ ପୁଳିନ୍ଦମାନଙ୍କ ଦ୍ୱାରା ପୂଜିତ ସ୍ତମ୍ଭ ସ୍ୱରୂପ ଗୋଟିଏ ବିଗ୍ରହ ସେଠାରେ ପ୍ରତିଷ୍ଠିତ ଥିଲା । ଗୁପ୍ତବଂଶୀୟ ବିଜୟୀ ବୀର ଓ ତାଙ୍କର ଅନୁଚରବର୍ଗ ସେହି ବିଗ୍ରହ ନିକଟରେ ପ୍ରଣତ ହୋଇ ସ୍ତୁତି ଗାନ କଲେ । × × × ପରବର୍ତ୍ତୀ ଯୁଗରେ ସେହି କାଷ୍ଠମୟ ଶିବଲିଙ୍ଗ ଗୋକର୍ଣ୍ଣେଶ୍ୱର ନାମରେ ଖ୍ୟାତ ହେଲା ।"

ଏହା ବ୍ୟତୀତ, ଗିରିକୋଷ୍ଠର ଅଭିଯାନ ସମ୍ପର୍କରେ ଅନୁମେୟ ଯେ ସମୁଦ୍ରଗୁପ୍ତ ଉଚ୍ଚତମ ଶୃଙ୍ଗ ଶୈବ କ୍ଷେତ୍ର, ଶାକ୍ତ ପୀଠ, ବୈଷ୍ଣବ ପୀଠ ମହେନ୍ଦ୍ରଗିରିର ଶିଖର ପ୍ରଦେଶରେ ଥାଇ ଗିରିକୋଷ୍ଠର ଦୁର୍ଗପ୍ରତି ଲକ୍ଷ୍ୟକରି ଦେଖିଲେ, ଏହି ଗିରିକୋଷ୍ଠରକୁ ରକ୍ଷାକରିବା ପାଇଁ ଚତୁର୍ଦ୍ଦିଗରେ ପରାକ୍ରମଶାଳୀ ଦୁର୍ଗଗୁଡ଼ିଏ ପରିବେଷ୍ଟିତ । ଲବଣ୍ୟଗଡ଼ ଦୁର୍ଗ ନିକଟରେ କେବଳ ଏକମାତ୍ର ରାସ୍ତା ଅଛି । ସେହି ରାସ୍ତା ମଧ୍ୟ ପ୍ରକାଣ୍ଡ ବନ୍ଧମାନଙ୍କ ଦ୍ୱାରା ଶତ୍ରୁ ଆକ୍ରମଣଜନିତ ସୁରକ୍ଷାର ବନ୍ଦୋବସ୍ତ କରାଯାଇଥିଲା । ଦାସମାନଙ୍କ ପୁର (ଦାସପୁର) ଓ ରାଜାଙ୍କ 'ଦେଉ' ଦେଉମାନଙ୍କ ପୁର 'ଦେଉପୁର' ପ୍ରତିଷ୍ଠା କରାଯାଇଥିଲା । ଅନ୍ୟରାସ୍ତାଟି 'ଗ୍ରାମପୁର' ଠାରୁ 'ରଣ୍ଡାହାଟି' ଯାଏ ସୈନ୍ୟ ଛାଉଣି ଓ ହସ୍ତୀଦ୍ୱାରା ସୁରକ୍ଷିତ ଥିଲା । ଏହି ବନ୍ଧର ଜଳରେ ରାଜହଂସ ସାହାଯ୍ୟରେ ଖବର ପଠାଯାଉଥାଏ । ଲବଣ୍ୟଗଡ଼ର ଆରାଧ୍ୟ ଦେବୀ ଲୋହର୍ତ୍ତି । ସେହି ଗଡ଼ ପର୍ବତର ନାମ ଲୋହର୍ତ୍ତି । ଏହି ଗଡ଼ ରକ୍ଷକଙ୍କ ପଦବୀ 'ବାହୁବଳେନ୍ଦ୍ର ବଳିଆରସିଂ' । ରଣ୍ଡାହାଟିର ଗଡ଼ରକ୍ଷକ ହେଲେ ହସ୍ତୀ ଅଧିକାରୀ 'ଗଜେନ୍ଦ୍ର' । ସମୁଦ୍ରଗୁପ୍ତଙ୍କ ସୈନ୍ୟମାନେ ଏହି ପରାକ୍ରମଶାଳୀ ଆରକ୍ଷୀ ଶକ୍ତିର ସମ୍ମୁଖୀନ ହୋଇ ନପାରି "ଗୋପପଲ୍ଲୀ" ନାମାନ୍ତର 'ଗୋପିଲି' ଠାରେ କିଛିଦିନ ଅବସ୍ଥାନ କରନ୍ତି । ସମସ୍ତ ଉତ୍ତର ସେମାନେ ଲବଣ୍ୟଗଡ଼ ଉପରେ ଆକ୍ରମଣ କରି ଲବଣ୍ୟ ଗଡର ସ୍ୱର୍ଣ୍ଣଭଣ୍ଡାରର ଲୁଟି ନେଇଛନ୍ତି । ଅସଂଖ୍ୟ ଦାସ ଓ ଦେଉମାନେ ପ୍ରାଣବଳି ଦେଇଛନ୍ତି । ଦେବୀପୁର, ରାଉତପୁର ଓ ରାମପୁର ଧ୍ୱଂସକରି ସେମାନେ ବୃକ୍ଷଛନ୍ତି ଗାରବନ୍ଧ ଦଶେ । ବନ୍ଧ ଭାଙ୍ଗି (ଏଗାରଟି ବନ୍ଧ) ଗାରାରୁ ହାଣି ରାସ୍ତା ଦୁର୍ଗାପର୍ବତ ଅଧିକାର କରି, ଦୁର୍ଗାପର୍ବତର ପାଦଦେଶରେ ଛାଉଣି ପକାଇ ଘୋଷଣା କରିଛନ୍ତି ଗିରିକୋଷ୍ଠର ଆକ୍ରମଣ କରିବା ପାଇଁ । ଛାଉଣି ନିକଟରେ ଥିବା ପାର୍ବତୀପୁର ଦୁର୍ଗ

ଧ୍ୱଂସ କରି କଇଠ ଗଡକୁ କରଗତ କରିଛନ୍ତି । ତା ପରେ 'କଷ୍ଟୁର' (ଗିରିକୋଟ୍ଟର) ବର୍ତ୍ତମାନର ସାତ କଷ୍ଟୁରୁ ଓ ବଡ଼କଷ୍ଟୁରୁ ଗ୍ରାମ ସେହି ଗିରିକୋଟ୍ଟରର ନାମାନ୍ତର ମାତ୍ର । କଷ୍ଟୁର ନଗରରାଜ୍ୟ ଅଧିକାର କରିବା ପାଇଁ ଅଡ଼ବା ଧର୍ମଲିଙ୍ଗେଶ୍ୱର ମନ୍ଦିର ଉପର ପାର୍ଶ୍ୱରେ ପଦାର୍ପଣ କରିଛନ୍ତି । ସମୁଦ୍ରଗୁପ୍ତଙ୍କ ଆକ୍ରମଣର ମୁକାବିଲା କରିବାପାଇଁ, କଣ୍ଟାଗଡ଼, ଝଙ୍କେଶ୍ୱରଗଡ, ନାମନଗଡ, ପାରିକ୍ଷେଟଗଡ଼, ନାରାୟଣପୁରଗଡ଼, ରାୟଗଡ, ଜିରାଂଗଡ ଗୁପ୍ତଘାଟି ସ୍ଥିତ ନାମନଗଡ଼ ଇତ୍ୟାଦି ଗଡ଼ ଦୁର୍ଗରୁ କଷ୍ଟୁରର ଦରବାର ରାଜଦ୍ୱାରରେ ଉପସ୍ଥିତ ରହି ଯୁଦ୍ଧପାଇଁ ହୁଂକାର ନାଦ ଦେଲେ । ପ୍ରକାଶ ଥାଉକି ପ୍ରାକୃତିକ ପାହାଡ ପର୍ବତ ପରିବେଷ୍ଟିତ ଏହି ରାଜ୍ୟ ଗ୍ରୀକ୍‌ର ଏଥେନ୍‌ସ ଓ ସ୍ପାର୍ଟାରୂଲ୍ୟ ତୁଳନୀୟ । ଏକ ପାର୍ଶ୍ୱରେ ଚିରସ୍ରୋତା ମହେନ୍ଦ୍ରତନୟା ମଧ୍ୟ ଶତ୍ରୁଙ୍କ ପ୍ରତିବନ୍ଧକ ସୃଷ୍ଟି କରୁଥିଲା । ଘୋରତର ରଣହେଲା । ଯେଉଁ ସ୍ଥାନ 'ଘୋରଣୀ' ନାମରେ ପରିଚିତ । ସ୍ୱାମୀଦତ୍ତ ପରାଜୟ ସ୍ୱୀକାର କଲେ । ରାସ୍ତା ବନ୍ଦ ହେବାରୁ ଖାଦ୍ୟପେୟର ଅଭାବ ଦେଖାଦେଲା । ଏହି ପରିସ୍ଥିତିରେ ସମୁଦ୍ରଗୁପ୍ତଙ୍କ ସୈନ୍ୟ ରାଜ୍ୟର 'ଅମାର' ବା 'କୋଠୀ' ଆକ୍ରମଣ କଲେ । ସେଥିରେ ଧାନ୍ୟ ଶସ୍ୟ ବଦଳରେ 'ଭୁଷ' ବା କୁଣ୍ଡା ରହିଥିଲା । ସେହିସ୍ଥାନ ବର୍ତ୍ତମାନ 'ଭୁଷକୁଡ଼ି' ନାମରେ ପରିଚିତ । ଖାଦ୍ୟ ନପାଇ ସୈନ୍ୟଦଳ 'ଗୁରଣ୍ଡି' ନାମକ ଜୀବ ମାରି ଖାଇ ଜୀବନ ରକ୍ଷା କରିପାରିଥିଲେ । ସେହି ସ୍ଥାନରେ 'ଗୁରଣ୍ଡି' ନାମକ ଗ୍ରାମ ଅବସ୍ଥିତ । 'ଘୋଷନାମା' ସ୍ଥାନଟି ଘୋଷାଣୀ ବା ଗୋଷାଣୀ ନାମରେ ପରିଚିତ ।

ସ୍ୱାମୀଦତ୍ତ ପରାସ୍ତ ହେବାପରେ ସ୍ୱାମୀଦତ୍ତଙ୍କ କନ୍ୟାଙ୍କୁ ସମୁଦ୍ରଗୁପ୍ତ ବିବାହ କରିଥିଲେ । ଗିରିକୋଟ୍ଟର ରାଜ୍ୟର ପାଞ୍ଚଶହ ମୁଠାର ସଙ୍କେତ ସଦୃଶ ପାଞ୍ଚଶହ ହାତୀ ଉପଢୌକନ ଦିଆଯାଇଥିଲା । କଥିତ ଅଛି ପୂର୍ବତନ ରାଜା ରଣଦେବୀଙ୍କୁ ପୂଜା ଆରାଧନା, କନକଦୁର୍ଗା ଓ ମାଣିକେଶ୍ୱରୀଙ୍କ ମାର୍ଜନା, ଲୋହଶ୍ରୀ ଓ କୁରେଇଶୁଣୀଙ୍କୁ ଅର୍ଚ୍ଚନାରେ ଅବହେଳା କରିବାରୁ ତାଙ୍କର ପତନ ଘଟିଥିଲା । ବର୍ତ୍ତମାନ ଘୋରଣୀର ଶକ୍ତି ପୀଠରେ ଉପରୋକ୍ତ ବର୍ଣ୍ଣିତ ସମସ୍ତ ଦେବଦେବୀଙ୍କୁ ଗୋଟିଏ ସ୍ଥାନରେ ପୂଜା କରାଯାଉଛି । ସର୍ବୋପରି ରାଜା ମହେନ୍ଦ୍ରଗିରି ପ୍ରତି ଅବହେଳା କରିବାରୁ, ଦୁର୍ଗରକ୍ଷାର ବ୍ୟବସ୍ଥା ନକରିବା ଦ୍ୱାରା ମଧ୍ୟ ଅଧଃପତନ ତ୍ୱରାନ୍ୱିତ ହୋଇଥିଲା । ତା ପରେ ରାଜଗୁରୁଙ୍କ ଉକ୍ତି ହେଲା—"ମହାରାଜା ସମୁଦ୍ରଗୁପ୍ତ ଅନାୟାସରେ ବନ୍ଦୀ କରିଥିବା ଶ୍ରେଷ୍ଠ ଶ୍ରେଷ୍ଠ ରାଜାମାନଙ୍କୁ ଯେତେବେଳେ ମହେନ୍ଦ୍ର ପର୍ବତର ଶିଖରଦେଶରେ ମୁକ୍ତ କରିଦେଲେ, ସେତେବେଳେ ସେଠାକାର ଅଧିବାସୀ ଲକ୍ଷ ଲକ୍ଷ ପ୍ରଜା ପର୍ବତର ପାଦଦେଶରେ ସମବେତ ହୋଇ ଆନନ୍ଦ ଧ୍ୱନିରେ ଆକାଶ ପୃଥିବୀ ମୁଖରିତ କରିଦେଲେ । ସନ୍ଧ୍ୟାରାଗରେ

ସୁରମ୍ୟ 'ବାରୁଣ' ବନ୍ଦର ନୀଳ ଜଳଧିର ତରଙ୍ଗ ଲାସ୍ୟ ମଧ୍ୟରେ ସ୍ମିତ ମୁଖ ଉତ୍ତୋଳନ କରି ସେ ଆନନ୍ଦ ଧ୍ୱନିକୁ ସାଦରେ ଗ୍ରହଣ କଲା । X × X ଏକତା ଅଭାବରୁ ଏ ପ୍ରକାର ଦଶା ଉପୁଜିବା ଦେଖି ତାର ପ୍ରତିକାର କରିବା ପାଇଁ ଚିନ୍ତା କରାଗଲା" । (୩୩) ଏହାପରେ ଉତ୍ତର-ଭାରତ ଓ ଦକ୍ଷିଣ-ଭାରତର ସାଂସ୍କୃତିକ ଆଧ୍ୟାତ୍ମିକ ଓ ସାଧନା କେନ୍ଦ୍ର ରୂପେ ମହେନ୍ଦ୍ରଗିରି ଖ୍ୟାତିଲାଭ କଲା । ଏହି ପରିପ୍ରେକ୍ଷୀରେ ଆଞ୍ଚଳିକ ଶାସକ-ମାନଙ୍କର ସଙ୍ଗଠନ ସୁଦୃଢ଼ ହୋଇ 'ମାଠର ରାଜବଂଶ' ଶକ୍ତିଶାଳୀ ହୋଇଥିଲା ଓ ମହେନ୍ଦ୍ରଗିରି ମାଠରମାନଙ୍କଦ୍ୱାରା ଶାସିତ ହେଲା ।

## ମାଠର ଶାସନ କାଳରେ ମହେନ୍ଦ୍ରର ସ୍ଥିତି :

ଖ୍ରୀ: ୩୫୦ ଠାରୁ ସମୁଦ୍ର ଗୁପ୍ତଙ୍କ ଦକ୍ଷିଣାପଥ ଅଭିଯାନର ଅବ୍ୟବହିତ ପରେ କଳିଙ୍ଗ ଅଞ୍ଚଳରେ ମାଠର ରାଜବଂଶ ଶକ୍ତିଶାଳୀ ହୋଇ ଉଠିଲେ । ଉତ୍ତର ଭାରତରେ ଗୁପ୍ତସାମ୍ରାଜ୍ୟର ଅଭିବୃଦ୍ଧି କାଳରେ ମଧ୍ୟଭାରତସ୍ଥ ଅଞ୍ଚଳରେ ବାକାଟକ ରାଜବଂଶ, କଳିଙ୍ଗର ମାଠର ବଂଶ, ତ୍ରିକଳିଙ୍ଗରେ ନଳବଂଶ ଓ ଦକ୍ଷିଣ ଭାରତରେ କାଦମ୍ବ, ପଲ୍ଲବ, ଶାଲଙ୍କାୟନ ଆଦି ରାଜବଂଶର ଉତ୍ଥାନ ଭାରତୀୟ ଇତିହାସରେ ଏକ ଗୌରବମୟ ଯୁଗ ପ୍ରବର୍ତ୍ତନ କରିଥିଲା । (୩୪) ଏହି ବଂଶ ଖ୍ରୀ. ଅ. ୩୫୦ରୁ ୪୯୮ ପର୍ଯ୍ୟନ୍ତ କଳିଙ୍ଗରେ ରାଜତ୍ୱ କରିଥିଲେ । ଅର୍ଥାତ୍ ପ୍ରାକ୍ ଗଙ୍ଗ ରାଜାମାନଙ୍କର ଶାସନ ଆରମ୍ଭ ପର୍ଯ୍ୟନ୍ତ ଏମାନେ ଶାସନ କରିଥିଲେ । ଏମାନେ ମାଠର (ପିତୃଭକ୍ତ) ବେଦର 'ବାଶିଷ୍ଠୀ ପୁତ୍ର' ଓ ମାଠରୀ ପୁତ୍ର ରାଜବଂଶ ସହ ବୈବାହିକ ସଂପର୍କ ରଖିଥିଲେ । ଏମାନେ ବୈଦେଶିକ ଶକ ଓ କୁଶାଣମାନଙ୍କଦ୍ୱାରା ଉତ୍ତର ଭାରତରୁ ବିତାଡ଼ିତ ହୋଇ ଏଠାରେ ଆଶ୍ରୟ ନେଇ ରାଜ୍ୟ ସ୍ଥାପନ କରିଥିଲେ । (୩୫)

ବର୍ତ୍ତମାନ ପ୍ରଶ୍ନ ଉଠେ ମାଠରମାନେ ଗୁପ୍ତ ଅଧୀନରେ ସାମନ୍ତ ରାଜା ଥିଲେ ଅଥବା ସ୍ୱାଧୀନ ଭାବେ ରାଜ୍ୟ ଶାସନ କରିଥିଲେ । ଡ. ନବୀନକୁମାର ସାହୁ ଦୃଢ ମତ ପୋଷଣ କରି କହନ୍ତି—ମାଠର ବଂଶ କଳିଙ୍ଗରେ ପ୍ରାୟ ଖ୍ରୀ. ୩୫୦ରୁ ଖ୍ରୀ ୫୫୦ ଯାଏ ରାଜତ୍ୱ କରିଛନ୍ତି । କେତେବେଳେ ଏମାନଙ୍କ ରାଜ୍ୟର ସୀମା ମହାନଦୀଠାରୁ ଗୋଦାବରୀ ଯାଏ କମ୍ବା କୃଷ୍ଣାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ଯେହେତୁ ଏ ପର୍ଯ୍ୟନ୍ତ ମାଠରମାନେ

---

୩୩ । କଳିଙ୍ଗର ଆତ୍ମକଥା : ଡ଼କ୍ଟର ସତ୍ୟନାରାୟଣ ରାଜଗୁରୁ, ପୃ-୨୬

୩୪ । ପ୍ରାଚୀନ କଳିଙ୍ଗ : ଡ଼କ୍ଟର ନବୀନକୁମାର ସାହୁ, ପୃ-୨୯୨

୩୫ । ଓଡ଼ିଶା ଇତିହାସ : ଡ଼କ୍ଟର ସତ୍ୟନାରାୟଣ ରାଜଗୁରୁ, ପୃ-୨୦୨

ପରାଧୀନ ସାମନ୍ତ ରାଜାରୂପେ କୌଣସି ତାମ୍ରଶାସନ ଓ ଅଭିଲେଖ ମିଳିନାହିଁ; ସେମାନେ ସମ୍ପୂର୍ଣ୍ଣ ସ୍ୱାଧୀନ ଥିଲେ । ସମୁଦ୍ର ଗୁପ୍ତଙ୍କ ବିଜୟ ପରେ ମାଠର ଓ ବାଶିଷ୍ଠ ବଂଶୀୟ ରାଜାମାନେ ପୁନଃ ସଙ୍ଗଠିତ ହୋଇଥିଲେ । ଏହି ବଂଶର ରାଜା ଉମାବର୍ମା "କଳିଙ୍ଗାଧିପତି" ଉପାଧିରେ ଭୂଷିତ ଥିଲେ । 'କୋରଷଣ୍ଡା' ବା 'ଶରଷଣ୍ଡା' ଗ୍ରାମରୁ ପ୍ରାପ୍ତ ଦାନପତ୍ରରୁ ଜଣାଯାଏ ଉମାବର୍ମାଙ୍କ ପିତା ବିଶାଖା ବର୍ମା ନିଜକୁ 'ପରମ ଦୈବତ' ଓ 'ପରମ ଭଟ୍ଟାରକ ପାଦ ଭକ୍ତ' ବୋଲି ଉପାଧିରେ ଭୂଷିତ କରିଅଛନ୍ତି । (୩୬) ଏହି ଗ୍ରାମ ପାରଲାଖେମୁଣ୍ଡିର ଅନତିଦୂରରେ ଅବସ୍ଥିତ । ଏହି ସମୟରେ ଶିରପୁର (ବାଟିଆ ସିରପୁର) ସିଂହପୁର ତାଙ୍କର ରାଜଧାନୀ ଥିଲା । ଏହି ଅଞ୍ଚଳର ଶିବ ମନ୍ଦିର, ବୃଷଭ, ଗଣେଶ ଓ ଗଜଲକ୍ଷ୍ମୀ ଗୁପ୍ତଯୁଗର ବୋଲି ଐତିହାସିକଙ୍କ ମତ । ତା ପରେ ଯେଉଁ ଦାନପତ୍ରାଦି ଲୋକଲୋଚନକୁ ଆସିଛି ସେଥିରୁ ପ୍ରମାଣ ମିଳୁଛି ଯେ—ଉମାବର୍ମନ, ଶକ୍ତିବର୍ମନ, ଅନନ୍ତ ଶକ୍ତିବର୍ମନ ଓ ଚଣ୍ଡବର୍ମନ ଏକାଦିକ୍ରମେ ସିଂହପୁରଠାରୁ କଳିଙ୍ଗ ରାଷ୍ଟ୍ର ଶାସନ କରିଥିଲେ । ସେଗୁଡ଼ିକ ମଧ୍ୟରେ ପାରଳା ନିକଟସ୍ଥ ଟେକ୍‌କଲିରୁ (୩୭) ଆନ୍ଧ୍ରର ଶ୍ରୀକାକୁଲମ୍‌ରୁ (୩୮) ଚିକିଟି ନିକଟର ବରଙ୍ଗ ଗ୍ରାମରୁ (୩୯) କୋରାପୁଟର ଜୟପୁରରୁ

---

୩୬ । ଶରଷଣ୍ଡା ତାମ୍ରଶାସନ : ଏ ଶାସନରେ ଦାନକର୍ତ୍ତା ବିଶାଖା ବର୍ମା— ରାଜଧାନୀ ସିଂହପୁର । ତାଙ୍କ ରାଜତ୍ୱର ୭ମ ବର୍ଷରେ ହେମନ୍ତ ୨° ଦିନରେ 'ଶବରଭେଣ୍ଡକ' ଉପାଧି ମଣ୍ଡିତ ବିଷ୍ଣୁଶର୍ମା, ଶ୍ରେଷ୍ଠିଶର୍ମା, ଅଗ୍ନିଶର୍ମା, ନାଗଶର୍ମା ଓ ଶିବଶର୍ମା ନାମକ ବ୍ରାହ୍ମଣମାନଙ୍କୁ କୋରସୋଡ଼କ ପଞ୍ଚାଳି ନାମକ ଜିଲ୍ଲାର ତପୋଯୁକ ନାମକ ଗ୍ରାମ ପ୍ରଦତ୍ତ । ଏହି ବ୍ରାହ୍ମଣମାନେ ଆତ୍ରେୟ ଗୋତ୍ରୀ । ଏହା ବାଟିଆ ଶିରପୁରରୁ ଘୋଷିତ । (ବିଶାଖା ବର୍ମାଙ୍କ ପଦବୀ— 'ପରମ ଭଟ୍ଟାରକ, ପରମ ଭଟ୍ଟାରକ ପାଦଭକ୍ତ') ।

୩୭ । ଟେକ୍‌କଲି ତାମ୍ରଶାସନ : ଦାନକର୍ତ୍ତା ଉମାବର୍ମା— ରାଜତ୍ୱର ୯ମ ବର୍ଷ— ମାଘ କୃଷ୍ଣ ୭ମୀ ତିଥିରେ ହସ୍ତିବ୍ରତବର ନିକଟର ଗ୍ରାମ କାଶ୍ୟପ ଗୋତ୍ରୀୟ ବ୍ରାହ୍ମଣ ଘଣ ଶର୍ମାଙ୍କୁ । Inscription of Orissa Vol-I. Pt.-II P. 6.

୩୮ । ଧବଳପେଟା ତାମ୍ରଶାସନ (ଶ୍ରୀକାକୁଲମ୍) : ମହେନ୍ଦ୍ର ଭୋଗ ବିଷୟ ଜିଲ୍ଲାର କଦ୍ଦୁର ଗ୍ରାମ, ନିକଟର, ବସ୍ତ୍ର ଗୋତ୍ରୀୟ ଛନ୍ଦୋଗ୍ୟ ବ୍ରହ୍ମଚାରୀ ଖଲ୍ଲସ୍ୱାମୀଙ୍କୁ ଦାନ । ରାଜାଙ୍କ ଉପାଧି 'ପରମ ଦୈବତ—ବପ୍ପ ଭଟ୍ଟାରକ ପାଦଭକ୍ତ' ।
Inscription of Orissa Vol-I. Pt. II. P. 7

୩୯ । ବରଙ୍ଗ ତାମ୍ରଶାସନ : ଦାନକର୍ତ୍ତା ଉମାବର୍ମା— ରାଜତ୍ୱର ଷଷ୍ଠବର୍ଷ ବୈଶାଖ ଶୁକ୍ଳ ୫ମୀ ତିଥି । ହେମଣ୍ଡକ ଗ୍ରାମ, ନିକଟର ଭିଲିଙ୍ଗି ଭୋଗବିଷୟ ଜିଲ୍ଲାନ୍ତର୍ଗତ (ଚିକିଟି ତାଲୁକା) Inscription of Orissa Vol-I Pt-ii

ପ୍ରାପ୍ତ (୪୦) ଉପରୋକ୍ତ ତାମ୍ରଶାସନଗୁଡ଼ିକ ଉମାବର୍ମନଙ୍କ ସମସ୍ୟର । ଏସବୁର ପ୍ରମାଣ ମିଳେ ଯେ ସେତେବେଳେ ଏହି ମହେନ୍ଦ୍ର ଅଞ୍ଚଳ 'ମହେନ୍ଦ୍ର ଭୋଗବସ୍ତ୍ର' ନାମରେ ଗଞ୍ଜାମ ଜିଲ୍ଲାରେ ଅବସ୍ଥିତ । ଏହି ଅଞ୍ଚଳଗୁଡ଼ିକ ମହେନ୍ଦ୍ରଗିରି ସମେତ ମହେନ୍ଦ୍ରଗିରିର ଦକ୍ଷିଣାଂଶ । ମହେନ୍ଦ୍ରଗିରିର ଉତ୍ତର ଅଂଶଟି 'ଭର୍ଲିଙ୍ଗି ଭୋଗ ବସ୍ତ୍ର' ନାମକ ଜିଲ୍ଲାର ଶାସନାଧୀନ ଥିଲା । ଶେଷ ତାମ୍ରଫଳକରେ ଉମାବର୍ମା ନିଜକୁ କଳିଙ୍ଗାଧିପତି ଉପାଧିରେ ଭୂଷିତ କରିଥିଲେ ତାହା ତାଙ୍କ ରାଜତ୍ୱର ଦଶମଠାରୁ ତିରିଶ ବର୍ଷ ମଧ୍ୟର । ଅନନ୍ତଶକ୍ତି ବର୍ମନଙ୍କ ଅନ୍ଧବରଂ (୪୧) ତାମ୍ରଶାସନ, ଶ୍ରୀକାକୁଳଂର ରୋଗୋଲୁ (୪୨) ନାରସେନାପେଟା (୪୩) ରୁ ପ୍ରାପ୍ତ । ଏଥିରୁ ମହେନ୍ଦ୍ରର ଦକ୍ଷିଣ ପୂର୍ବାଂଶ ଶ୍ରୀକାକୁଳମ୍ ଅଞ୍ଚଳ "ବରାହବର୍ତ୍ତିନୀ" ନାମକ ଜିଲ୍ଲାରେ ଅବସ୍ଥିତ ଥିଲା । ତାଙ୍କ ପରେ ପ୍ରଭଞ୍ଜନ ବର୍ମନଙ୍କ ବରଙ୍ଗ (୪୪) ତାମ୍ରଶାସନରୁ ଜଣାପଡେ, ସେ 'ସକଳ କଳିଙ୍ଗାଧିପତି' ଉପାଧିରେ ଭୂଷିତ ଅଛନ୍ତି । ଏହିଭଳି ମାଠର ଶାସନ କାଳରେ 'ପରମ୍ ଦୈବତ', 'ପରମ ଭାଗବତ', 'କଳିଙ୍ଗାଧିପତି', 'ସକଳ କଳିଙ୍ଗାଧିପତି' 'ମାଠର କୁଳୀ',

୪୦ । କୋରସୁଣ୍ଡ ଜୟପୁର ତାମ୍ରଶାସନ : ୩ୟ ତମ ବର୍ଷରେ ଉମାବର୍ମନଙ୍କ ଦ୍ୱାରା ଦତ୍ତ । ମାର୍ଗଶିର ୨୦ ଦିନରେ— ବ୍ରହ୍ମବୃଦ୍ଧି ବ୍ରାହ୍ମଣ ହରିଦତ୍ତଙ୍କୁ (ଉପମନ୍ୟୁ ଗୋତ୍ର) ନିଷ୍କର ଜମି ୩୨ଟି ବ୍ରାହ୍ମଣ ଶାସନ (ଅଗ୍ରହାର) ସଙ୍ଗେ ସମାନକରି ପ୍ରଦତ୍ତ ପଦବୀ ବ୍ୟବହୃତ— କଳିଙ୍ଗାଧିପତି ।
Inscription of Orissa Vol-I, Pt.-II. P-10

୪୧ । ଅନ୍ଧବରଂ (ଶ୍ରୀକାକୁଳଂ) : ଦାନକର୍ତ୍ତା ଶକ୍ତିବର୍ମନ— ବହୁଳ ବ୍ରାହ୍ମଣଙ୍କୁ ଦାନ ।
Ins. or. Vol-I. Pt.-II P-10.

୪୨ । ରାଗୋଲୁ (ଶ୍ରୀକାକୁଳମ୍) ଦାନକର୍ତ୍ତା : କଳିଙ୍ଗାଧିପତି ଶକ୍ତିବର୍ମନ— ରାଜଧାନୀ ସିଂପୁର, ରାଜତ୍ୱର ୧୩ ବର୍ଷ ବୈଶାଖ ଅଷ୍ଟମୀ ତିଥିରେ— କଳିଙ୍ଗ ବିଷୟର ରାକଲୁକ ଗ୍ରାମ ଦାନ । ଦାନ ଗ୍ରହୀତା— ସାବର୍ଣ୍ଣେୟ ଗୋତ୍ରୀୟ ବ୍ରାହ୍ମଣ କୁମାର ଶର୍ମନ ଓ ତାଙ୍କ ଅଷ୍ଟପୁତ୍ର— ଶକ୍ତିବର୍ମନଙ୍କ ଉପାଧି— ବାଶିଷ୍ଠୀ ପୁତ୍ର ଓ 'ମାଠର କୁଳୀ' (ମାଠର ରାଜ୍ୟକୁ ଲଗି ବେଙ୍ଗି ରାଜ୍ୟ ଥିଲା, ବେଙ୍ଗିର ଶାଳଙ୍କାୟନ ବଂଶ ସହିତ ବୈବାହିକ ସମ୍ବନ୍ଧର ସୂଚନା ଏହି ତାମ୍ରଶାସନରୁ ମିଳେ) ।

୪୩ । ନାରସେନାପେଟା ନିକଟର କୁମାରି ଗ୍ରାମରୁ ପ୍ରାପ୍ତ ତାମ୍ରଶାସନ : ଚନ୍ଦ୍ରବର୍ମା ଦାନକର୍ତ୍ତା ବହୁଳ ଶ୍ରେଣୀସ୍ଥ ବ୍ରାହ୍ମଣଙ୍କୁ ଦାନ ।

୪୪ । ବରଙ୍ଗ ତାମ୍ରଶାସନ : ବରଙ୍ଗ ଗ୍ରାମ ଦାନସୂତ୍ରରେ ପ୍ରଦତ୍ତ (ଚିକାଟି ନିକଟ)

'ମାଠର କୁଳାଳଂକରିଷ୍ଣୁଃ' 'କଳିଙ୍ଗାଧିପତି' ଇତ୍ୟାଦି ପଦବୀ ବ୍ୟବହାର କରି ଅଛନ୍ତି । ଚଣ୍ଡବର୍ମନଙ୍କ ପରେ ଗୁଣବର୍ମନ୍, ପ୍ରଭଞ୍ଜନ ବର୍ମନ୍, ଅନନ୍ତ ବର୍ମନ, ନନ୍ଦ ପ୍ରଭଞ୍ଜନ ବର୍ମନ, ଶଙ୍କର ବର୍ମନ, ପ୍ରଭଞ୍ଜନ ବର୍ମନ୍ ଯଥାକ୍ରମେ ଏହି କଳିଙ୍ଗ ରାଷ୍ଟ୍ରକୁ ଶାସନ କରିଥିଲେ । ଏହାଙ୍କ ରାଜତ୍ୱକାଳରେ ଶାସିତ ଅଞ୍ଚଳ ପାଞ୍ଚଗୋଟି ଜିଲ୍ଲାରେ ବିଭକ୍ତ ହୋଇଥିଲା । ଏ ସମସ୍ତର କେନ୍ଦ୍ରଥିଲା ମହେନ୍ଦ୍ରାଚଳ ।

ଯଥାର୍ଥରେ ରାଜନୈତିକ ବିଭକ୍ତୀକରଣ ଦ୍ୱାରା ସଂସ୍କୃତିର ମଧ୍ୟ ପରିବର୍ତ୍ତନ ହୁଏ । ପୂର୍ବେ 'ଧର୍ମ' ରାଜାନୁଗତ ଥିଲା । ଲୋକେ ରାଷ୍ଟ୍ର ଦେବତାଙ୍କୁ ମର୍ଯ୍ୟାଦା ଦେବାକୁ ବାଧ୍ୟ । ବିଶେଷତଃ ମାଠର ବଂଶୀୟ ରାଜାମାନେ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ଥିଲେ । ସେମାନେ ଶବର ପୂଜିତ ଦାରୁ ଦେବତାଙ୍କୁ ନିଜ ରାଷ୍ଟ୍ରଦେବତାରୂପେ ପୂଜାକଲେ । ତାଙ୍କୁ ନାରାୟଣ କିମ୍ବା ପୁରୁଷୋତ୍ତମ ଆଖ୍ୟା ଦିଆଗଲା । ସେମାନେ ପ୍ରତିଷ୍ଠା କରିଥିବା ନଗର 'ପୁରୁଷବନ' ପରେ 'ପୁରୁଷମ' (ପ୍ରାକୃତ) ପୁରୁଷୋତ୍ତମ (ସଂସ୍କୃତ) ଶବ୍ଦର ଉତ୍ପତ୍ତି ବୋଲି ପ୍ରମାଣ ମିଳେ । (୪୫) ବିଶେଷତଃ ମହେନ୍ଦ୍ରଗିରିର କୁନ୍ତୀ ଦେବାଳୟ ସମ୍ମୁଖରେ ବିଷ୍ଣୁ ମନ୍ଦିର ଅବସ୍ଥିତ । ଏଥିରେ ବିଷ୍ଣୁ (ଭୈରବୀ ରୂପ) ଓ ନାରାୟଣଙ୍କୁ ନୀଳମାଧବରୂପେ ପୂଜା କରାଯାଉଛି । ଜୈମିନି ସୂତ୍ରର ପ୍ରଧାନ ଭାଷ୍ୟକାର 'ଶବର ସ୍ୱାମୀ' ଖରିଷଣ୍ଡୀ ତାମ୍ରଶାସନ ଗ୍ରହୀତା ବ୍ରହ୍ମଙ୍କେ ସଙ୍ଗା 'ଶବର ଭେଣ୍ଡକ' ଇତ୍ୟାଦି ମହେନ୍ଦ୍ରଗିରିରେ ଶବର ସମାଜ ସହିତ ସମ୍ପର୍କିତ । (୪୬) ମହେନ୍ଦ୍ରଗିରିର ଶିଖରର ଫାଟକ 'ଦାରୁବ୍ରହ୍ମ'; ଏସବୁ ଏହି ଶୈବପୀଠ ମହେନ୍ଦ୍ରଗିରିରେ ବୈଷ୍ଣବ ସମ୍ପର୍କ ହରିହର ସମ୍ପର୍କ ସୂଚାଏ । ବିଶେଷକରି ଏଠାରେ ହନୁମାନ 'ଅର୍ଦ୍ଧଭଗ୍ନ', ଶିରପୁର ନିକଟସ୍ଥ ପାର୍ଲାକୋଟଗଡ଼ର ବିରାଟ ହନୁମାନ, ମର୍କଡ଼ାର ମର୍କଟେଶ୍ୱର ଏ ସମସ୍ତ ଯେ ରାଷ୍ଟ୍ରରେ ରାଜାଙ୍କର ଚରିତକୁ ହିଁ ଲୋକଲୋଚନକୁ ଆଣିଥାଏ । ଶ୍ରୀ ସମୃଦ୍ଧି ବୃଦ୍ଧି ପାଇ, ଧନଜନ ଗୋପଲକ୍ଷ୍ମୀ ପରିଶୋଭିତ ଏହି 'ମହେନ୍ଦ୍ର ଭୋଗବିଷୟ' ଓ ଭଲ୍ଲିଙ୍ଗି ଭୋଗବିଷୟ ଆଧୁନିକ ଗଜପତି ଜିଲ୍ଲା ଓ ଚଉକିଟି ଅଞ୍ଚଳ, ଉତ୍ତର ଭାରତ, ମଧ୍ୟଭାରତ ଓ ଦକ୍ଷିଣ ଭାରତର ଶାସକମାନଙ୍କ ଲୋଲୁପ ଦୃଷ୍ଟିରେ ଏହି ମାଠର ବଂଶର ରାଜତ୍ୱ ଶେଷ ହେଲା ଖ୍ରୀ: ଅ. ୫ମ ଶତାବ୍ଦୀରେ । ଏ ସବୁର ମୁଖ୍ୟ ଆକର୍ଷଣ କଳିଙ୍ଗର ଶିରୋଭୂଷଣ ମହେନ୍ଦ୍ରଗିରି ।

ଦିନେ ଯାହାର ଇତିହାସ ଗବେଷକମାନଙ୍କ ଚିନ୍ତାର ବିଷୟ ଥିଲା, ଆଜି ଐତିହାସିକମାନଙ୍କ ପ୍ରଗାଢ଼ ପରିଶ୍ରମରେ, ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ତାହା ଲୋକ

(୪୫) ଓଡ଼ିଶାର ଇତିହାସ : ଡ଼: ସତ୍ୟନାରାୟଣ ରାଜଗୁରୁ । With reference to the Cult of Jagannath, Dr. K. Ch. Mishra.

(୪୬) —ଏଜନ— ପୃ-୨୧୬ ।

କେବଳକୁ ଆସିଛୁ; ସେଥିରୁ (୪୭) ଜଣାଯାଏ ମହେନ୍ଦ୍ରାଞ୍ଚଳ ଉତ୍ତର ଭାରତ ଓ ଦକ୍ଷିଣ ଭାରତର ସାଂସ୍କୃତିକ ବାତାବରଣର ମୂଳପିଣ୍ଡ ଏଥିରେ ସନ୍ଦେହ ନାହିଁ ।

ମାଠର ରାଜତ୍ୱକାଳରେ ସେମାନଙ୍କ ରାଜଧାନୀ ବାରମ୍ବାର ବଦଳା ଯାଇଛି । ସେଗୁଡ଼ିକ ହେଲା ଶ୍ରୀପୁର, ସୁନଗର, ବର୍ଦ୍ଧମାନପୁର, ସିଂହପୁର ଓ ପିଠାପୁର । ଏ ସମସ୍ତ ବର୍ତ୍ତମାନ ଗଞ୍ଜାମ-ଗଜପତି ଜିଲ୍ଲା, ଶ୍ରୀକାକୁଳମ୍ ଓ ବିଜୟନଗରମ୍ ଜିଲ୍ଲାରେ ଅବସ୍ଥିତ ଥିଲା । କେବଳ ଶକ୍ତିବର୍ମନଙ୍କ ସମୟରେ ମହାନଦୀଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ରାଜ୍ୟର ପରିସର ଥିଲା । ସେମାନଙ୍କ ଶାସନ କେବଳ ଗୋଦାବରୀ ଓ ଦକ୍ଷିଣ ଓଡ଼ିଶାରେ ଆବଦ୍ଧ ହୋଇ ରହିଥିଲା । (୪୮)

## ବାଶିଷ୍ଠ ବଂଶ ଓ ମହେନ୍ଦ୍ରାଞ୍ଚଳ ଶାସନ :

ମାଠର ବଂଶର ପତନ କାଳରେ ତାଙ୍କର ଅଧସ୍ତନ କର୍ମଚାରୀମାନେ ସ୍ୱାଧୀନ ଘୋଷଣା କଲେ । ପ୍ରଥମରୁ ସୂଚନା ଦିଆଯାଇଛି, ଏମାନେ ବୈବାହିକ ସୂତ୍ରରେ ଆବଦ୍ଧ ଥିଲେ । ପାରଳାଖେମୁଣ୍ଡିର ଶିରପୁର ତାମ୍ରଶାସନରୁ ଏହା ପ୍ରମାଣିତ । ଏ ବଂଶର ପ୍ରଭଞ୍ଜନ ବର୍ମାଙ୍କ ପୁତ୍ର •ହେଉଛନ୍ତି ଅନନ୍ତବର୍ମା, ଦେବରାଷ୍ଟ୍ର ଅଞ୍ଚଳ (ମଧ୍ୟକଳିଙ୍ଗ)ର ରାଜା ଥିଲେ । ଦକ୍ଷିଣ କଳିଙ୍ଗର ପ୍ରଧାନ ନଗର ପିଷ୍ଟପୁର ରାଜଧାନୀ କରି 'କଳିଙ୍ଗାଧିପତି' ରୂପେ ଘୋଷଣା କରିଥିଲେ । ଏହି ମଧ୍ୟକଳିଙ୍ଗ ଓ ଦକ୍ଷିଣ କଳିଙ୍ଗର ମହେନ୍ଦ୍ରଗିରି ହିଁ ପ୍ରଧାନ ଆକର୍ଷଣ ଥିଲା । ଏହି ସମୟରେ ଦକ୍ଷିଣ ଭାରତର ରାଜାମାନେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ରାଜାରୂପେ ଘୋଷଣା କରିସାରିଛନ୍ତି । ସେମାନଙ୍କ ମଧ୍ୟରେ ଗଙ୍ଗବଂଶ ରାଜାମାନେ ପ୍ରଧାନ । କାରଣ, ଗୋଦାବରୀ ତାମ୍ରଶାସନ, ଜର୍ଜିଙ୍ଗି ତାମ୍ରଶାସନ (ଗଙ୍ଗାବ୍ଦ ୩୯ ବା ଖ୍ରୀ ୫୩୭) (୪୯) ମାଠରମାନଙ୍କ ଭଳି ଏମାନେ 'ମାହେଶ୍ୱର' 'ମାତା ପିତା ପଦାନୁଧ୍ୟାତ' ବୋଲି ଜଣାପଡେ । (୫୦) ଏଥିରୁ ପ୍ରମାଣିତ ଏହି ମାଠର ଶାସିତ ମହେନ୍ଦ୍ରଗିରି ବାଶିଷ୍ଠ ବଂଶଦ୍ୱାରା ସୁରକ୍ଷିତ ଥିଲା ।

## ଦୁର୍ଜ୍ୟୟ ରାଜବଂଶ ଓ ମହେନ୍ଦ୍ରାବସ୍ଥା :

ପାରଳାଖେମୁଣ୍ଡିରୁ ପ୍ରାପ୍ତ (୫୧) ଶିଳାଲେଖରୁ ଜଣାପଡ଼େ ଯେ ଗୋଟିଏ ସାମନ୍ତ ରାଜବଂଶ ବଂଶଧାରୀ ଅବବାହିକା (ମହେନ୍ଦ୍ରର ଦକ୍ଷିଣାଂଶ) ଠାରୁ କୃଷ୍ଣାନଦୀ

(୪୭) ଓଡ଼ିଶାର ଇତିହାସ : Dr. K. Ch. Panigrahi, Dr. S. N. Rajguru, Dr. N. K. Sahu (ଦାନପଟ୍ଟାଦି ପାଠ)

(୪୮) History of Orissa : Dr. K. Ch. Panigrahi, Page 47

(୪୯) ଓଡ଼ିଆ ଜାତିର ଇତିହାସ : ଡ. ନବୀନକୁମାର ସାହୁ, ପୃ ୨୨୨

(୫୦) ଓଡ଼ିଶା ଇତିହାସ : ଡ଼. ହରେକୃଷ୍ଣ ମହତାବ, ୧ମ ଖଣ୍ଡ, ପୃ ୫୫

(୫୧) ଓଡ଼ିଶା ଇତିହାସ : ଡ଼. ସତ୍ୟନାରାୟଣ ରାଜଗୁରୁ, ପୃ ୨୨୧

ପର୍ଯ୍ୟନ୍ତ କଟ୍ଟଦନ ପାଇଁ ରାଜତ୍ୱ କରି 'କଳିଙ୍ଗାଧିପତି' ଉପାଧି ନେଇଥିଲେ । (୫୨) ମହେନ୍ଦ୍ର ର ପ୍ରାକୃତିକ ସମ୍ପଦ ପ୍ରତି ଏମାନେ ମଧ୍ୟ ଲାଳାୟିତ ଥିଲେ । କୋରପୁଟ-ବସ୍ତର ମଧ୍ୟବର୍ତ୍ତୀ ଅଞ୍ଚଳ ନଳ ରାଜବଂଶଦ୍ୱାରା ଶାସିତ ହେବା ସମୟରେ ବଂଶଧାରା ଅବବାହିକା (ମୁଙ୍ଗଲଗମ୍ ) ସେମାନଙ୍କର ଶେଷ ସୀମା ଥିଲା । (୫୩)

**ଚନ୍ଦ୍ରସାମନ୍ତ ରାଜବଂଶ ଓ ମହେନ୍ଦ୍ର ସଂପର୍କ :**

ଦୁର୍ଜ୍ଜୟ ବଂଶ ଦକ୍ଷିଣ କଳିଙ୍ଗ ଶାସନ କରିବା ସମୟରେ ଉତ୍ତର ତୋଷାଳୀ (କଳିଙ୍ଗର ପୂର୍ବପ୍ରାନ୍ତ) ରାଜ୍ୟ, ଭାରତର ପୂର୍ବପ୍ରାନ୍ତର ଚନ୍ଦ୍ରସାମନ୍ତ ରାଜାମାନେ ଶାସନ କଲେ । ଏତକବେଳେ ତତ୍‌କାଳୀନ ଶାସକ ବୈଶ୍ୟ ଗୁପ୍ତଙ୍କ ନାମ ଉଲ୍ଲେଖଯୋଗ୍ୟ । କ୍ୟୁରେଟର F. E. Pargiter ଏବଂ ଡ଼. ହୋର୍ନଲି ବଙ୍ଗଦେଶରୁ ପ୍ରାପ୍ତ ଶିଳାଲେଖ ପାଠକରି ଯେଉଁ ମତ ଦେଇଥିଲେ, ତାକୁ ଭିତ୍ତି କରି ଡ଼. ସତ୍ୟନାରାୟଣ ରାଜଗୁରୁ (୫୪) କହିଛନ୍ତି—ତତ୍‌କାଳୀନ ସାମନ୍ତରାଜାମାନଙ୍କ ମଧ୍ୟରୁ ବୈଶ୍ୟଗୁପ୍ତ ପ୍ରଧାନ । ତାଙ୍କ ଦାନପତ୍ରରୁ ପ୍ରମାଣିତ ଯେ ଖ୍ରୀ ୫୩୨-୫୩୩ରେ ମହାରାଜାଧିରାଜ ଯଶୋବର୍ମନ ବ୍ରହ୍ମପୁତ୍ର ଠାରୁ ମହେନ୍ଦ୍ରାଚଳ ପର୍ଯ୍ୟନ୍ତ ସମସ୍ତ ରାଜ୍ୟର ଅଧିପତି ଥିଲେ । ଏକଥା ସେ ମାଣ୍ଡାସୋର (୫୫) ଅଭିଲେଖକୁ ଭିତ୍ତି କରି ପ୍ରକାଶ କରିଛନ୍ତି । ଏଥିରେ ଯଶୋବର୍ମନଙ୍କ ଉଗ୍‌ଜେଯ୍ୟକାଳୀନ ପ୍ରଶସ୍ତି ବର୍ଣ୍ଣିତ । ସେ ବିନ୍ଧ୍ୟାଟବୀ ଅଞ୍ଚଳର ଶାସକ ଥିଲେ । ସେ ହୂଣମାନଙ୍କୁ ଓ ଗୁପ୍ତଯୁଗର ଶେଷ ଶିଖା କୁମାର ଗୁପ୍ତଙ୍କୁ ପରାସ୍ତ କରିଥିଲେ । ଏଠାରେ ସୂଚନା ଦିଆଯାଇପାରେ କି ବୌଦ୍ଧଧର୍ମ ମହାଯାନ ଭିକ୍ଷୁ ସଂଘ 'ଅବଲୋକିତେଶ୍ୱର' ଆରାଧନା କରୁଥିଲେ । ଏହାନିଷ୍ଠିତ ଯେ ଯଶୋଧର୍ମନଙ୍କୁ ମହେନ୍ଦ୍ରାଞ୍ଚଳର ଶ୍ରୀ, ସମୃଦ୍ଧି ହିଁ ଆକର୍ଷଣ କରିପାରିଛି ।

---

(୫୨) History of Orissa : Dr. K. Ch. Panigrahi, Page 48.

(୫୩) History of Orissa : Dr. Rajguru, Page 223. With reference to Chipuripelli inscription.

(୫୪) —Ibid— Orissa History : Rajguru.

(୫୫) ଯଶୋଧର୍ମନଙ୍କ ମାଣ୍ଡାସୋର ଅଭିଲେଖ— Ibid—Page 227

ଆଲୌହିତ୍ୟୋପକଣ୍ଠାତ୍ତଲବନ ଗହନୋପତ୍ୟକାଦା ମହେନ୍ଦ୍ରା ।
ଅଗଙ୍ଗାଶ୍ଲିଷ୍ଟ ସାନୋସ୍ତୁହିନ ଶିଖରିଣଃ ପଶ୍ଚିମାଦାପୟୋଧେଃ,
ସାମନ୍ତୈର୍ୟସ୍ୟ ବାହୁଦ୍ରବିହୃତ ମଦୈଃ ପାଦୟୋରାନମଦ୍ଭି—
ଶ୍ଚୂଡ଼ାରତ୍ନାଂଶୁରାଜି ବ୍ୟତିକର ଶବଲା ଭୂମିଭାଗାଃ କ୍ରିୟନ୍ତେ ।

Fleet C.I.I., Vol III P 16 ff

## ବିଗ୍ରହ ଓ ମୁଦ୍‌ଗଳ ବଂଶ ଓ କଳିଙ୍ଗର ଅବସ୍ଥା :

କ୍ରମଶଃ କଳିଙ୍ଗ ତିନି ଭାଗରେ ବିଭକ୍ତ ହୋଇ ଯେତେବେଳେ ଦୁର୍ଜ୍ଜୟ ବଂଶ ଦକ୍ଷିଣ କଳିଙ୍ଗର ଅଧୀନରେ ଥିଲେ । ମଧ୍ୟକଳିଙ୍ଗ ଗଙ୍ଗବଂଶ ଓ ଉତ୍ତର କଳିଙ୍ଗ ବିଗ୍ରହ ବଂଶର ଶାସନାଧୀନ ଥିଲା । ପୁରୀ ଓ ଗଞ୍ଜାମ ଜିଲ୍ଲା ଉତ୍ତର କଳିଙ୍ଗର ଅନ୍ତର୍ଗତ ଥିଲା । ପୃଥିବୀ ବିଗ୍ରହଙ୍କ ସୁମଣ୍ଡଳ ତାମ୍ରଶାସନ ଓ ଲୋକ ବିଗ୍ରହଙ୍କ କଣାସ ତାମ୍ରଶାସନରୁ ଜଣାପଡ଼େ ଯେ ପୃଥିବୀ ବିଗ୍ରହଙ୍କ ଅଧୀନ ଧର୍ମରାଜ (ଗୁପ୍ତାବ୍ଦ ୨୫୦ ଖ୍ରୀ ୫୬୯-୭୦) ଉଭୟ ବଂଶର ଶାସକ ପ୍ରସିଦ୍ଧ ଶୈଳୋଦ୍ଭବ ବଂଶୀୟ । (ଧର୍ମରାଜଙ୍କ ଶାସିତ ଅଞ୍ଚଳ ଆଧୁନିକ ଖଲ୍ଲିକୋଟ) । କଣାସ ତାମ୍ରଶାସନରୁ ଜଣାଯାଏ (ଗୁପ୍ତାବ୍ଦ ୨୮୦—ଖ୍ରୀ ୬୦୦) ଲୋକ ବିଗ୍ରହ ଗଙ୍ଗବଂଶୀ ନରପତି ଥିଲେ । ସେ ନିଜ ରାଜ୍ୟକୁ (ଉତ୍ତର-କଳିଙ୍ଗ) ଦକ୍ଷିଣ ତୋଷାଳୀ ନାମକରଣ କରିଥିଲେ । ପୃଥିବୀ ବିଗ୍ରହଙ୍କ 'କଳିଙ୍ଗରାଷ୍ଟ୍ର' ଲୋକ ବିଗ୍ରହଙ୍କ କାଳରେ 'ଦକ୍ଷିଣ ତୋଷାଳୀ' ହୋଇଛି । ବିଗ୍ରହ ବଂଶ ଦକ୍ଷିଣ ତୋଷାଳୀରେ ଶାସନ କରୁଥିବାବେଳେ ଉତ୍ତର ତୋଷାଳୀ ରାଜ୍ୟ ମୁଦ୍‌ଗଳ ବଂଶର ଶାସନାଧୀନ ଥିଲା ।

ଏଥିରୁ ପୂର୍ବଗଙ୍ଗ ବଂଶର ଅଭ୍ୟୁତ୍ଥାନ ଓ ଶୈଳୋଦ୍ଭବ ବଂଶର ଉଦ୍ଭବ ସୂଚନା ସ୍ପଷ୍ଟ । ଯେତେ ଶାସକ ବଦଳିଲେ ସୁଦ୍ଧା ମହେନ୍ଦ୍ରଗିରି ଯେ ସେ ସମସ୍ତଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ଏହା ପ୍ରମାଣିତ ।

## ପୂର୍ବ ଗଙ୍ଗବଂଶ ଶାସନ କାଳରେ କଳିଙ୍ଗ :

ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ ରାଜାମାନେ ନିଜ ନିଜ ଶାସନ କାଳରେ ନିଜ ନିଜ ଅବ୍ଦ ପ୍ରଚଳନ କରୁଥାଆନ୍ତି । ସେହିଭଳି ଗଙ୍ଗମାନେ କଳିଙ୍ଗରେ । ସେମାନଙ୍କ ରାଜତ୍ୱକାଳରେ ନିଜ ଅବ୍ଦ ପ୍ରଚଳନ କରିଯାଇଛନ୍ତି । ସେମାନଙ୍କ ରାଜତ୍ୱ ସମୟକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । (୧) ପୂର୍ବ ଗଙ୍ଗବଂଶ ଶାସନ । (୨) ପରବର୍ତ୍ତୀ ଗଙ୍ଗବଂଶ ଶାସନ । ଗବେଷକମାନଙ୍କଦ୍ୱାରା ଅସଂଖ୍ୟ ଅଭିଲେଖ ଉଦ୍ଧାର କରାଯାଇଛି । ସେମାନଙ୍କ ବଂଶାବଳୀ ମଧ୍ୟ ମିଳିଛି । କିନ୍ତୁ ଗଙ୍ଗାବ୍ଦକୁ ଖ୍ରୀଷ୍ଟାବ୍ଦରେ ବଦଳାଇବା ସମୟରେ ମତଦ୍ୱୈଧ ଦେଖାଦେଇଛି । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତ ଦିଅନ୍ତି ଖ୍ରୀ.ଅ. ୪୯୬ ଗଙ୍ଗ ବଂଶର ପ୍ରାରମ୍ଭ କାଳ । ସେ ଭାରତୀୟ ବିଦ୍ୟାଭବନରୁ ପ୍ରାପ୍ତ ଗଙ୍ଗ ବଂଶାଳୀକୁ ଦୃଷ୍ଟିକୁ ଆଣିଛନ୍ତି—

The classical age (Bhartiya Bidya Bhaban) gives the following genealogy of the Eastern Ganges (୫୬)

(୫୬) History of Orissa : Dr. K. Ch. Panigrahi, Page 48.

1. Indravarman.
2. Hastivarman, Rajasimha, Ranabhita
3. Indravarman II. Rajasimha.
4. Indravarman (III)
   |
   Dunarnava.
   |
5. Indravarman IV
   |
   Gunarnava.
   |
6. Devendravarman.
   |
7. Anantavarman.
   |
8. Nandavarman (Indravarman) — Devendravarman II

ଏହି ବଂଶାବଳୀକୁ ଭିତ୍ତିକରି ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହନ୍ତି—ଏହି ଶାସନ କାଳ ଖ୍ରୀ ୪୮୭ ରେ ଆରମ୍ଭ ହୋଇ ଅଷ୍ଟମ ଶତାବ୍ଦୀର ମଧ୍ୟଭାଗରେ ଶେଷ ହୋଇଥିଲା । ସେମାନଙ୍କର ରାଜଧାନୀ ଶ୍ରୀକାକୁଳମ୍ ନିକଟସ୍ଥ 'ମୁଖଲିଙ୍ଗମ୍' ଓ 'ଦନ୍ତପୁର' ଥିଲା । ସେମାନେ ତ୍ରିକଳିଙ୍ଗାଧିପତି ପଦବୀ ଗ୍ରହଣ କରିଥିଲେ । କିନ୍ତୁ ତ୍ରିକଳିଙ୍ଗର ପରିସର କେତେଥିଲା, ତାହା ସନ୍ଦେହ ଓ ବାଦାନୁବାଦ ଅବସ୍ଥାରେ ଅଛି । ସେ ସମ୍ବନ୍ଧରେ ଡ଼କ୍ଟର D. C. Sircar କହିଛନ୍ତି—

"Trikalinga was a country of forest between the domains of the later Chalukyas of Vengi and those of Gangas of Kalinganagar. Probably lying to the south of Dakshina Kosala and not very far from Mahendragiri. The fact that some powerful rulers of Kalinganagar and of South Kosala preferred to call themselves '*Trikalingadhipati*'

suggests that the expression often indicated lordship over wide regions of ancient Kalinga or several countries in the Kalinga region. (୫୭)

ଏହି ଗଙ୍ଗବଂଶ ଶାସନ ସମସ୍ତ ମହେନ୍ଦ୍ରଗିରି ଇତିହାସର ସ୍ୱର୍ଣ୍ଣସୂତ୍ର କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ଏଠାକାର ପରିବେଶ ସୁଦୂର ଗଙ୍ଗା ଅବବାହିକାରୁ ଓ ମହୀଶୂର ଅଞ୍ଚଳରୁ ରାଜନ୍ୟ ବର୍ଗଙ୍କୁ ଆକୃଷ୍ଟ କରିଥିଲା ।

ଏ ସମ୍ପର୍କରେ ଶ୍ରୀ କେଦାରନାଥ ମହାପାତ୍ର, ଡ଼କ୍ଟର ନବୀନକୁମାର ସାହୁ ଓ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ଅର୍ବାଚୀନ ଅଭିଲେଖ ଓ ଦାନପତ୍ରାଦିର ବିବରଣୀ ପ୍ରଦାନ ପୂର୍ବକ 'ଗଙ୍ଗ' ଶାସନକାଳୀନ ତଥ୍ୟ ପ୍ରଦାନ କରିଅଛନ୍ତି ।

ଏହି ଗଙ୍ଗ ରାଜାମାନଙ୍କ ଆଗମ ଇତିହାସ ମହୀଶୂରର 'ଗଙ୍ଗ'ମାନଙ୍କ ତାମ୍ର-ଶାସନରୁ ଜଣାଯାଏ; ଅତୀତରେ ଗୋପ ନାମକ ରାଜାଙ୍କର ଦୁଇପୁଅ ଭଗଦତ୍ତ ଓ ଶ୍ରୀ ଦତ୍ତ ଯଥାକ୍ରମେ କଳିଙ୍ଗ ଓ ମହୀଶୂରରେ ରାଜତ୍ୱ କଲେ । ପରବର୍ତ୍ତୀ ଗଙ୍ଗମାନଙ୍କ ତାମ୍ରଶାସନରେ ପୂର୍ବଗଙ୍ଗ ବିବରଣୀ ପ୍ରଦତ୍ତ । ତଦନୁଯାୟୀ ଏମାନେ ମହୀଶୂର ଚନ୍ଦ୍ରବଂଶୀୟ ରାଜା କୋଲାହଳଙ୍କ ଦାୟାଦ । ରାଜା 'କୋଲାହଳ ନଗର' ସ୍ଥାପନ କରିଥିଲେ । ତାଙ୍କର ୮୧ ପୁରୁଷ ଅତୀତ ହେବାପରେ, ବୀରସିଂ ନାମକ ରାଜା କ୍ଷମତାକୁ ଆସିଲେ (୫୮) । ତାଙ୍କର ପାଞ୍ଚପୁତ୍ର ଥିଲେ । ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବ ସମ୍ରାଟ ହୋଇ ଭ୍ରାତା ଗୁଣାର୍ଣ୍ଣବଙ୍କୁ ବମ୍ବାଡ଼ି ବିଷୟ (ଶ୍ରୀକାକୁଲମ୍ ନିକଟ) ମାରସିଂହଙ୍କୁ ସୋଡ଼ା ମଣ୍ଡଳ, ବଜ୍ରହସ୍ତଙ୍କୁ କଣ୍ଟକବର୍ତ୍ତିନୀ ଅର୍ପଣ କଲେ । ସେମାନଙ୍କ ଆରାଧ୍ୟ ଦେବ ହେଲେ ମହେନ୍ଦ୍ର ସ୍ଥିତ "ଗୋକର୍ଣ୍ଣେଶ୍ୱର ।" ଏହି ଗଙ୍ଗମାନେ ଆତ୍ରେୟ ଗୋତ୍ରୀ ଅଟନ୍ତି ଏବଂ ଏମାନେ ଶୈବ ଧର୍ମାବଲମ୍ବୀ । ଏମାନଙ୍କ ପଦବୀ ଥିଲା 'ପରମ ମାହେଶ୍ୱର' । ଏମାନଙ୍କ ରାଜକୀୟ ସଙ୍କେତ ହେଲା 'ବୃଷଭ' । ଅନ୍ୟପକ୍ଷରେ ମହୀଶୂରର ଗଙ୍ଗମାନେ ଅର୍ଥାତ୍ କୋଲାହଳ ନିବାସୀ ଜୈନ ଧର୍ମାବଲମ୍ବୀ, ଇକ୍ଷ୍ୱାକୁ ବଂଶୀୟ ଅର୍ଥାତ୍ ସୂର୍ଯ୍ୟବଂଶୀ । ଏମାନଙ୍କର ରାଜକୀୟ ସଙ୍କେତ ଥିଲା 'ହସ୍ତୀ' (୫୯) ।

---

(୫୭) History of Orissa : Dr. K. Ch. Panigrahi, Page-49

(୫୮) History of Orissa : Dr. S. N. Rajguru, Page-293

(୫୯) 'ଚୋଡ଼ଗଙ୍ଗ ଦେବଙ୍କ' ଗଙ୍ଗବଂଶୀୟ ବର୍ଣ୍ଣନା :—

"ଅଥ କାମାର୍ଣ୍ଣବୋ ଦତ୍ତ୍ୱା ପିତୃବ୍ୟାୟ ନିଜା ମହୀମ । ପ୍ରାୟାତ୍ ପୃଥ୍ୱୀଂ ଭୁବ ଜେତୁଂ ମହେନ୍ଦ୍ରଂ ଭ୍ରାତୃଭିଃ ଗିରିମ୍ । ତତ୍ର ଚ ସକଳ ସୁରାସୁର ସିଦ୍ଧସାଧ୍ୟ କଣ୍ଟକ,

ବୈଦେଶିକ ଗବେଷକ ବ. ଲୁଇସ୍ ରାଇସଙ୍କ ମତାନୁସାରେ ଏମାନେ ଉତ୍ତର ଭାରତ ଗଙ୍ଗାନଦୀ ଅବବାହିକାରୁ (ଅଯୋଧ୍ୟା ଅଞ୍ଚଳରୁ) ଆସିଥିଲେ । ସେଠାରୁ ସେମାନେ ଦୁଇଭାଗ ହୋଇ ଗୋଟିଏ ଦଳ ମହୀଶୂର ଓ ଅନ୍ୟ ଦଳ କଳିଙ୍ଗରେ ରହିଲେ । କଳିଙ୍ଗରେ ରହଣି କାଳରେ ପୁଣି ଦୁଇଭାଗ ହୋଇ ଦଳେ 'କଳିଙ୍ଗ ନଗର' ମୁଖଲିଙ୍ଗମ୍‌ରେ ଓ ଅନ୍ୟଦଳ 'ଶ୍ୱେତକ' ରାଜ୍ୟ (ଚିକାଟି)ରେ ରହି ଶାସନ କଲେ । ମହୀଶୂର ଗଙ୍ଗମାନଙ୍କ ଉପାଧି ସହ ଏମାନଙ୍କ ଉପାଧିର ସାମଞ୍ଜସ୍ୟ ଦେଖାଯାଏ । ମାରସିଂହଙ୍କ ହବବଲ୍ ତାମ୍ରଶାସନ (୭୦) ଓ ଶ୍ୱେତକ ଗଙ୍ଗବଂଶୀ ଇନ୍ଦ୍ର ବର୍ମନଙ୍କ ବଡ଼ଖେମୁଣ୍ଡି ତାମ୍ରଶାସନରୁ ଏହା ପ୍ରମାଣିତ । ଏମାନେ ନନ୍ଦଗିରିନାଥ ଉପାଧି ନେଇଥିଲେ । (୭୧) ଏ ସମୟର ବୁଦ୍ଧ ତଥା ଜୈନ କୀର୍ତ୍ତି 'ମୁଖଲିଙ୍ଗମ୍' ଓ 'ପୁଷ୍ପିଙ୍ଗି' ଗ୍ରାମମାନରେ ପରିଦୃଷ୍ଟ । ଏଗୁଡ଼ିକ ବର୍ତ୍ତମାନ ଆନ୍ଧ୍ରର ଶ୍ରୀକାକୁଲମ୍ ଜିଲ୍ଲାରେ ଅବସ୍ଥିତ । କୋରାପୁଟ ଜଗମଣ୍ଡା ପାହାଡ଼ରେ 'ବୌଦ୍ଧ' କୀର୍ତ୍ତି ସହ ଅଭିଲେଖ ସେ ସମୟର କୃତିର ସଙ୍କେତ ମିଳେ ।

ଖ୍ରୀ: ପୂ. ୩୦୦ ରେ ମୌର୍ଯ୍ୟଯୁଗରେ ମେଘାସ୍ଥିନିସ୍ ଗଙ୍ଗାକୂଳର ଅଧିବାସୀଙ୍କୁ ଗଙ୍ଗରିଡ଼ାଇ ବୋଲି ଲେଖିଛନ୍ତି । ଏହି ଜାତି ଗଙ୍ଗାନଦୀ, ଦାମୋଦର ନଦୀ ଓ ସମୁଦ୍ର ମଧ୍ୟବର୍ତ୍ତୀ ଅଞ୍ଚଳରେ ବସତି ସ୍ଥାପନ କରିଥିଲେ । (୭୨) ପୁରୁଷ ପୁରୁଷ ଧରି ଏମାନେ

---

କୋଟି ବଦ୍ଧ ଷଣ୍ଡ ମହୁଣ ଚରଣ ପୀଠ ମାରାଧ ଗୋକର୍ଣ୍ଣ ସ୍ୱାମୀନସ୍ୟ ପ୍ରସାଦାତ୍ ସମାସାଦିତ ବର ବୃଷଭ ଲାଞ୍ଛନ ସମୁପଲବ୍ଧ ସକଳ ସାମ୍ରାଜ୍ୟ ଚନ୍ଦ୍ରୋରୂପ ଶୋଭ ମାନସସ୍ ନରେନ୍ଦ୍ରୋ ମହେନ୍ଦ୍ରାଚଳ ଶିଖରାଦ୍ ବତୀର୍ଯ୍ୟ ଯୁଧିଷ୍ଠିର ଇବ ଚତୁଭିରନୁ ଜୈରନୁ ଗମ୍ୟମାନ ସମର ଶିରସି ସବଲା (ରା) ବଦ୍ଧ୍ୟ ନର୍କିତ୍ୟ କାମାର୍ଣ୍ଣବଂ କଳିଙ୍ଗା ନଗରିହତ୍... ତସ୍ୟ ଚ ଅପହସିତ୍ୱ ସୁରେନ୍ଦ୍ରପୁରଂ (ଦଂ) ତା ଦୂରନାମ ନଗରୀ ରାଜଧାନ୍ୟାସୀତ୍ ।... .."

Inscription of Orissa Vol-III Part I No. 55 to 70.

(୭୦) "ସ୍ୱସ୍ତି ସତ୍ୟବାନ୍ କୋଙ୍ଗୁଣି ବର୍ମ୍ମ ଧର୍ମ ମହାରାଜାଧିରାଜ କୋଲାହଳପୁର ବରେଶ୍ୱର ନନ୍ଦଗିରି ନାଥଂ... ଗୁଟ୍ଟିସ୍ତ୍ୱ ଗଙ୍ଗ ମାରସିଂହ ଦେବଂ... ଗଙ୍ଗବାଡ଼ି... ।"

(୭୧) "ଗଙ୍ଗାମଳ କୁଳତିଳକ ଶ୍ରୀ ନନ୍ଦଗିରି ନାଥଃ କୋଲାହଳପୁର ପଟ୍ଟଣା ବିନର୍ଗତ ମହା ରାଜାଧିରାଜ ଶ୍ରୀ ଇନ୍ଦ୍ରବର୍ମ ଦେବଃ" ।

(୭୨) Histrory of Orissa : Dr. H. K. Mahatab, with reference to the History of the Early Dynasties of Andhradesha,

ମଧ୍ୟ କଳିଙ୍ଗରେ (ବଂଶଧାରା ପାଟଣା ଠାରୁ ବଂଶଧାରା) ବସତି କରିଥିଲେ ଓ ତାଙ୍କ ରାଜଧାନୀ ଦନ୍ତପୁର ଥିଲା । ମହାଗିରିର ପୂର୍ବାଞ୍ଚଳ-ପର୍ଯ୍ୟନ୍ତ ଅଞ୍ଚଳରେ ଏମାନେ 'ପଶ୍ଚିମ ଗଙ୍ଗା' ବା କାହ୍ନଦେବସ୍ଥ ହିସାବରେ ପରିଚିତ । ଏମାନେ ପଞ୍ଚମ ଶତାବ୍ଦୀରେ ତ୍ରିକଳିଙ୍ଗର ଅଧିପତି ଥିଲେ । ଅତଏବ ଉତ୍ତର ଭାରତ ଗଙ୍ଗ ଗୋଷ୍ଠୀ ଓ ମହାଗିରିର ଗୋଷ୍ଠୀ ଏକ ଓ ଅଭିନ୍ନ । ଏହି ଗଙ୍ଗା ଗୋଷ୍ଠୀ ବ୍ରାହ୍ମଣ ଥିଲେ ।

ପୁନଶ୍ଚ ଏହି ଗଙ୍ଗାବଂଶ ପୂର୍ବୋକ୍ତାନୁକ୍ରମେ କଳିଙ୍ଗକୁ ଆସିଥିଲେ । ସେତେବେଳେ ସେମାନଙ୍କ ସାଙ୍ଗରେ 'କାଦମ୍ବବଂଶୀ' ମାନେ ମଧ୍ୟ ଆସିଥିଲେ । ଏମାନଙ୍କ ରାଜ୍ୟ ମହାଗିରିର ପୂର୍ବାଞ୍ଚଳ ଓ ପଲ୍ଲବ ବଂଶୀୟ ରାଜ୍ୟ ମଧ୍ୟରେ ଥିଲା । ଏମାନେ ଗଙ୍ଗ ଅଧୀନରେ ସାମନ୍ତ ରାଜା ଓ ଉଚ୍ଚପଦସ୍ଥ କର୍ମଚାରୀ ହିସାବରେ ଆଧିପତ୍ୟ ବିସ୍ତାର କରିଥିଲେ । ଏମାନଙ୍କ ଦାନ-ପତ୍ରରେ ଗଙ୍ଗ-କାଦମ୍ବ ଅବ୍ଦ ବ୍ୟବହୃତ । ଏମାନଙ୍କ ପ୍ରତିଷ୍ଠିତ ନଗରଦ୍ୱୟ ପାଲସିକ (ବର୍ତ୍ତମାନ ପଲସା ରେଲଷ୍ଟେସନ୍) ଓ ଜୟନ୍ତୀପୁର (ଚକଟା) । ଏହି ଉଭୟ ସ୍ଥାନ ମହେନ୍ଦ୍ର ପର୍ବତର ଉଭୟ ଉତ୍ତର ଓ ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ । (୬୩)

ପୁନଶ୍ଚ ଉଲ୍ଲେଖଯୋଗ୍ୟ ଯେ ବାଶିଷ୍ଠ ବଂଶର ଶେଷରାଜା ଅନନ୍ତ ବର୍ମାଙ୍କ ପତନ ପରେ, କଳିଙ୍ଗରେ ନୂଆ ନୂଆ ରାଜବଂଶର ଉତ୍ଥାନ ହେବାପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା । ଉତ୍ତର ଦିଗରୁ ଶୈଳୋଦ୍ଭବମାନେ ମାଡିଆସିଲେ । (ଆନ୍ଧ୍ରର ବିଷ୍ଣୁକୁଣ୍ଡୀ ରାଜା ଓ ଶୈଳୋଦ୍ଭବ ରାଜା ଅଯଶୋଭୀତ ମଧ୍ୟରେ ବନ୍ଧୁତା ଥିଲା । ତଥାପି ଗଙ୍ଗାମାନେ ବାକାଟକର ରାଜା ହରିସେନଙ୍କ ସାହାଯ୍ୟରେ ଶୈଳୋଦ୍ଭବମାନଙ୍କୁ ହଟାଇ ଗଙ୍ଗବଂଶ ସ୍ଥିତିକୃତ କରିଥିଲେ ।

ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ, ମହେନ୍ଦ୍ରକୁ କେନ୍ଦ୍ରକରି ଦାକ୍ଷିଣାତ୍ୟର ସମସ୍ତ ରାଜବଂଶ ନିଜ ନିଜର ଅଧିକାର ବଜାୟ ରଖିବାପାଇଁ ଅଷ୍ଟମ ଶତାବ୍ଦୀ ଯାଏ ଘୋର ସଂଘର୍ଷ କରିଛନ୍ତି । କିନ୍ତୁ ଏହି ସମସ୍ତ ମଧ୍ୟରେ ଗଙ୍ଗାମାନେ ମହେନ୍ଦ୍ରଗିରିର ଯଥେଷ୍ଟ ଉନ୍ନତି କରିଛନ୍ତି । ମହେନ୍ଦ୍ରଗିରି ଆରୋହଣ ସମୟରେ ଶିଖରାଂଶ ମନ୍ଦିରମାଳା ନିକଟରେ ପହଞ୍ଚିବା ପୂର୍ବରୁ ଗୋଟିଏ ବିରାଟ ପ୍ରାନ୍ତର ରହିଛି । ଏଠାରେ ବିଶ୍ରାମ ନେବାପରେହିଁ ପର୍ବତାରୋହଣ ସମ୍ଭବ (ପ୍ରାୟ ୪୦୦୦' ଉଚ୍ଚରେ) ଏହି ପଡ଼ିଆକୁ ଓଡ଼ିଆମାନେ

by B. V. Rao, Journal of the Andhra Historical Research Society Vol. V Part 3-4 Vol VI Part-I, II, IV of R. Subba Rao, The History of Eastern Gangas.

୬୩ । —ଏକନ—

'ଗଙ୍ଗାବାଡ଼', ଓ ତେଲୁଗୁମାନେ 'ଗଙ୍ଗବାଡ଼ି' କହନ୍ତି । (ଅଧୁନା ମହେନ୍ଦ୍ରାଞ୍ଚଳ ସ୍ୱତନ୍ତ୍ର ପଞ୍ଚାୟତର ଅଧୀନ । ଏହି ପଞ୍ଚାୟତର ନାମ ଗଙ୍ଗାବାଡ ପଞ୍ଚାୟତ) ଏହା ଓଡ଼ିଶାର ଗଜପତି ଜିଲ୍ଲାର ମହେନ୍ଦ୍ରଗିରି ବ୍ଲକ୍ ଅଧୀନସ୍ଥ ଅଟେ ।

ଆଦିମ ଯୁଗରୁ ଶବରମାନଙ୍କ ଦ୍ୱାରା ପୂଜିତ ଦାରୁବିଗ୍ରହ ମାଠରମାନଙ୍କ ସମୟରେ ପୁରୁଷୋତ୍ତମ ଓ ଗଙ୍ଗମାନଙ୍କ ସମୟରେ ଗୋକର୍ଣ୍ଣେଶ୍ୱର ନାମରେ ପରମଭଟ୍ଟାରକ ରାଷ୍ଟ୍ର-ଦେବତା ହିସାବରେ ପୂଜିତ ହେଲେ । (୭୪)

ପୂର୍ବରୁ ସୂଚିତ ଯେ ମାଳବ ଦେଶର ନରପତି ଯଶୋଧର୍ମନ୍ ମହେନ୍ଦ୍ରଗିରି ଅଧିକାର କରିଥିଲେ । (ତାଙ୍କ ରାଜ୍ୟର ସୀମାଥିଲା ପୂର୍ବରେ ଲୌହିତ୍ୟ (ବ୍ରହ୍ମପୁତ୍ର ନଦୀ), ପଶ୍ଚିମରେ ଆରବସାଗର, ଉତ୍ତରରେ ହିମାଳୟ ଓ ଦକ୍ଷିଣରେ ମହେନ୍ଦ୍ରଗିରି । ସେତେବେଳେ ଇନ୍ଦ୍ରବର୍ମା କିଛିକାଳ ତାଙ୍କ ଅଧୀନତା ସ୍ୱୀକାର କରିଥିଲେ । (ଖ୍ରୀ: ୫୩୦ରୁ ଖ୍ରୀ: ୫୩୨) ପେଦ୍ଦନ୍ଦୁରୁ ତାମ୍ରଶାସନ ଗଙ୍ଗାବ୍ଦ ୭୪ (ଖ୍ରୀ: ୫୬୨) ରେ ମହାରାଜ ସାମନ୍ତ ବର୍ମା ସୌମ୍ୟବନ ଠାରୁ ଦାନପଟ୍ଟା ନେଇଥିଲେ । (୭୫) ଏହି ସୌମ୍ୟବନ ବଂଶଧାରା ନଦୀକୂଳରେ ଥିଲା ।

(ଉପରୋକ୍ତ ବର୍ଣ୍ଣିତ ଗଙ୍ଗାବାଡ ନିକଟରେ ଯେଉଁ ସଙ୍କେତ ମିଳେ ସେଥିରୁ ସେହି ସୌମ୍ୟବନ ମହେନ୍ଦ୍ର ଠାରୁ ଉଦ୍ୟାନଖଣ୍ଡ ସମ୍ଭବ କିମ୍ବା ମହେନ୍ଦ୍ର ଠାରୁ ବଂଶଧାରା ନଦୀ ଅବବାହିକା ଏକ ଭୂଖଣ୍ଡ ହେତୁ, ମହେନ୍ଦ୍ରହିଁ ନିଶ୍ଚିତ ।) ଇନ୍ଦ୍ରବର୍ମା ହିଁ କଳିଙ୍ଗାଧିପତି ପଦବୀ ବହନ କରିଥିଲେ । ହସ୍ତୀ ବର୍ମାଙ୍କ ରାଜଧାନୀ 'କଳିଙ୍ଗ ନଗର' ଓ ସେ 'କଳିଙ୍ଗା-ଧିପତି' ବା 'ସକଳ କଳିଙ୍ଗାଧିପତି' ପଦବୀ ନେଇଥିଲେ । ସେ ଦୁର୍ଦ୍ଧର୍ଷ ବଂଶ ବିରୁଦ୍ଧରେ ଯୁଦ୍ଧକରି ଜୟଯୁକ୍ତ ହୋଇଥିଲେ ।

ହସ୍ତୀବର୍ମା ଅରାତି ସଂଘ ଦମନ କରି ରାଜସିଂହ ନାମ ଧାରଣ କରିଥିଲେ । ଦ୍ୱିତୀୟ ଇନ୍ଦ୍ରବର୍ମା ମଧ୍ୟ ରାଜସିଂହ ଓ ରଣଭୀତ ଆଖ୍ୟା ନେଇ କଳିଙ୍ଗାଧିରାଜ ବୋଲାଉ ଥିଲେ । ଏହା ତାଙ୍କ ଶାସନର ଗଙ୍ଗାବ୍ଦ ୮୭ (ଖ୍ରୀ: ୫୮୫) ରେ ଅଚ୍ୟୁତାପୁରମ୍, ବୋଣ୍ଡାଲୀ ଓ ପାରଲାଖେମୁଣ୍ଡି ତାମ୍ରଶାସନ ଗଙ୍ଗାବ୍ଦ ୯୧ (ଖ୍ରୀ: ୫୮୯) ଓ ଉରଜମ ତାମ୍ରଶାସନ ଗଙ୍ଗାବ୍ଦ ୯୭ (ଖ୍ରୀ: ୫୯୫) । ଏଥିରୁ ଜଣାପଡ଼େ, ସେ 'ଗଙ୍ଗାମୂଳ କୁଳ

---

୭୪ । History of Orissa : Dr. S. N. Rajguru, Page 216

୭୫ । ଓଡ଼ିଆ ଜାତିର ଇତିହାସ : Dr. N. K. Sahu. Page 259

ପ୍ରତିଷ୍ଠଃ" ପଦବୀରେ ଭୂଷିତ ଥିଲେ । ସପ୍ତମ ଶତାବ୍ଦୀର ଆରମ୍ଭରେ ଗଙ୍ଗ ଶାସନ ଦୁର୍ବଳ ହୋଇପଡ଼ିଲା । ତଥାପି ଇନ୍ଦ୍ରବର୍ମା ତୃତୀୟ ଖ୍ରୀ ୬୨୬ରେ କଙ୍ଗୋଦର ରାଜା ମାଧବ ବର୍ମଙ୍କ ତଥା ଶୈଳୋଦ୍ଭବମାନଙ୍କ ରାଜ୍ୟରୁ ତଡ଼ି ଦେଇଥିଲେ । ଗଙ୍ଗାବ୍ଦ ୧୨୮ (ଖ୍ରୀ ୬୨୬)ରେ ଚକାକୋଲ ତାମ୍ରଶାସନରୁ ମିଳେ ଯେ ପାଞ୍ଚ ୩୦ ବର୍ଷ ପରାଧୀନତା ପରେ ପୁଣି ଗଙ୍ଗପ୍ରଭାବ ଦେଖାଦେଇଛି । ଇନ୍ଦ୍ରବର୍ମା ୩ୟ ଙ୍କ ୫ ଗୋଟି ତାମ୍ରଶାସନରୁ ଚାରୋଟି କଳିଙ୍ଗ ନଗରରୁ ଓ ଗୋଟିଏ ଦନ୍ତପୁରରୁ ଘୋଷିତ । ତାଙ୍କର ଶେଷ ତାମ୍ରଶାସନ ଗଙ୍ଗାବ୍ଦ ୧୫୪ (ଖ୍ରୀ ୭୫୨) ରାଜମାତାଙ୍କ ପୁଣ୍ୟାର୍ଜନ ପାଇଁ ବ୍ରାହ୍ମଣଙ୍କୁ ଭୂମିଦାନ କଳିଙ୍ଗ ନଗରରୁ ଦିଆଯାଇଛି ।

ଏହାଙ୍କ ସମୟରେ ଚୀନ ପରିବ୍ରାଜକ ହୁଏନସାଂ କଳିଙ୍ଗକୁ ଆସିଥିଲେ । ତାଙ୍କ ବିବରଣୀରୁ ଜଣାଯାଏ, କଳିଙ୍ଗର ଉତ୍ତରରେ କଙ୍ଗୋଦରାଜ୍ୟ, ଦକ୍ଷିଣରେ ଆନ୍ଧ୍ର,ବେଙ୍ଗୀ, ଉତ୍ତର ପଶ୍ଚିମରେ କୋଶଳ ଥିଲା । କଳିଙ୍ଗନଗର ସମୃଦ୍ଧିଶାଳୀ ଓ ପରିଧି ଗ୍ରାମ ମାଇଲ ଥିଲା । ତୃତୀୟ ଇନ୍ଦ୍ରବର୍ମାଙ୍କ ଶାସନ ମଧ୍ୟରେ ଖ୍ରୀ ୬୪୨ରେ ଦ୍ୱିତୀୟ ପୁଲକେଶୀଙ୍କ ମୃତ୍ୟୁ ପରେ ଉତ୍ତରରେ ଚାଲୁକ୍ୟମାନଙ୍କ ଶକ୍ତି ହ୍ରାସ ପାଇଲା ଓ ହର୍ଷବର୍ଦ୍ଧନ କଙ୍ଗୋଦ ଅଧିକାର କରିଥିଲେ । ମାତ୍ର କଳିଙ୍ଗରାଜ୍ୟ ସ୍ୱାଧୀନତା ରକ୍ଷା କରିଥିଲା । ତାଙ୍କ ପରେ ପ୍ରଥମ ଦେବେନ୍ଦ୍ର ବର୍ମାଙ୍କ ଧର୍ମଲିଙ୍ଗେଶ୍ୱର ତାମ୍ରଶାସନ (ଗଙ୍ଗାବ୍ଦ ୧୮୪ ଖ୍ରୀ ୬୮୨) ଦାନ ପତ୍ରରୁ ଜଣାଯାଏ ଗୁରୁପୂଜା ଉପଲକ୍ଷେ ମତ୍ତମୟୂର ଶାଖାର ଶୈବାଚାର୍ଯ୍ୟ ପତଙ୍ଗ ଶିବଙ୍କୁ ଭୂମିଦାନ ଦିଆଯାଇଛି । ଆଚାର୍ଯ୍ୟ ପତଙ୍ଗ ଶିବ, ବେଦ ବେଦାଙ୍ଗ ଇତିହାସ ପୁରାଣାଦିରେ ବିଶାରଦ ଥିଲେ । (୬୬) ଏହି ଧର୍ମଲିଙ୍ଗେଶ୍ୱର ମନ୍ଦିର ମହେନ୍ଦ୍ର ପାଦଦେଶର କଣ୍ଟୁର ରାଜ୍ୟରେ ଅବସ୍ଥିତ । ତାଙ୍କ ପୁତ୍ର ଅନନ୍ତବର୍ମାଙ୍କ ଧର୍ମଲିଙ୍ଗେଶ୍ୱର ତାମ୍ରଶାସନରୁ ମହେନ୍ଦ୍ରାଞ୍ଚଳ ବିଷୟ ଦୃଷ୍ଟିକୁ ଆସେ ।

ନନ୍ଦବର୍ମା ଓ ଦେବେନ୍ଦ୍ରବର୍ମା ଶାସନ କରିବା ସମୟରେ ତୋଷାଳୀର ଭୌମ ରାଜବଂଶ (ପ୍ରଥମ ଶିବଙ୍କର ଦେବ ଉନ୍ମତ୍ତସିଂ) କଙ୍ଗୋଦ ଅଧିକାର କରି ଶୈଳୋଦ୍ଭବମାନଙ୍କୁ କଙ୍ଗୋଦରୁ ବିତାଡ଼ିତ କରିବା ଫଳରେ, ସେମାନେ ଗଙ୍ଗ ରାଜବଂଶ ଅଧୀନରେ ଝେଙ୍କଲରେ ଅବସ୍ଥାପିତ ହେଲେ । ଫଳରେ ଗଙ୍ଗମାନେ ଭୌମମାନଙ୍କର ଶତ୍ରୁରୂପେ ପରିଗଣିତ ହେଲେ । (୬୭) ତା ପରେ ଗଙ୍ଗ-ଭୌମ ସଂଘର୍ଷ ଫଳରେ ରାଜେନ୍ଦ୍ରବର୍ମାଙ୍କ ପୁତ୍ର ଅନନ୍ତବର୍ମା ଗଙ୍ଗ ସିଂହାସନ ଅଧିକାର କରି ଶାନ୍ତି ସ୍ଥାପନା କରିଥିଲେ । ଭୌମଙ୍କ ସହ ବନ୍ଧୁତା ହେବାପରେ ତାଙ୍କ ଆଲମଣ୍ଡା ତାମ୍ରଶାସନ ଗଙ୍ଗାବ୍ଦ ୩୦୪ ବା ଖ୍ରୀ ୮୦୨ରେ

---

(୬୬) ଓଡ଼ିଆ ଜାତିର ଇତିହାସ : Dr. N. K. Sahu, Page-259
(୬୭) —ଏକନ— ପୃ ୨୬୩

ସୂର୍ଯ୍ୟୋପରାଗ ବେଳେ ଏକ ପୁଷ୍କରିଣୀ ପ୍ରତିଷ୍ଠା କରିବା ଉପଲକ୍ଷେ ବିଜୟ କଳିଙ୍ଗ ନଗରଠାରୁ ପ୍ରକାଶିତ ହୋଇଥିଲା । ଅନନ୍ତବର୍ମାଙ୍କ ତଢ଼ିରେ ମହେନ୍ଦ୍ର ଶିଖର ପ୍ରତିଷ୍ଠିତସ୍ୟ ଗୋକର୍ଣ୍ଣେଶ୍ୱର ଶିବଙ୍କ ପରମଭକ୍ତ ରୂପେ ଏବଂ ଅମଳ ଗଙ୍ଗାକୁଳର ମୁକୁଟତିଳକ ରୂପେ ବର୍ଣ୍ଣନା କରାଯାଇଛି । ତାଙ୍କ ପରେ ତାଙ୍କ ପୁତ୍ର ଦେବେନ୍ଦ୍ରବର୍ମା ସିଂହାସନ ଆରୋହଣ କରିଛନ୍ତି । ଗଙ୍ଗାବଂଶର ସକଳ ଦାନପତ୍ରରେ ରାଜନ୍ୟବର୍ଗ ନିଜର ଇଷ୍ଟଦେବତା ଗୋକର୍ଣ୍ଣେଶ୍ୱରଙ୍କୁ ନିମ୍ନମତେ ସ୍ତୁତିଗାନ ପୂର୍ବକ ଦାନପତ୍ରାଦି ପ୍ରକାଶ କରିଛନ୍ତି—

"ମହେନ୍ଦ୍ର ଚଳାମଳ କନକ ଶିଖର ପ୍ରତିଷ୍ଠିତସ୍ୟ,
ସଚରାଚର ଗୁରୋଃସକଳ ଭୁବନ ନିର୍ମାଣୈକ ସୂତ୍ରଧାରସ୍ୟ
ଭଗବତୋ ଗୋକର୍ଣ୍ଣ ସ୍ୱାମିନଶ୍ଚରଣ କମଳ ଯୁଗଳ
ପ୍ରଣମାଦ୍ ବିଗଳିତ କଳିକଳଙ୍କୋ ।"

**କଦମ୍ବବଂଶ ଓ ମହେନ୍ଦ୍ରଗିରି :**

ଗଂଗ-କାଦମ୍ବ ସଂପର୍କ ପୂର୍ବରୁ ବର୍ତ୍ତିତ, ଏମାନେ ଗଙ୍ଗରାଜାମାନଙ୍କ ଅଧୀନରେ ଉଚ୍ଚ କର୍ମକର୍ତ୍ତା ହିସାବରେ ଉତ୍କଳ, କଳିଙ୍ଗ ଓ କଂଗୋଦରେ ନିଯୁକ୍ତି ପାଉଥିଲେ । କଦମ୍ବମାନେ ପଞ୍ଚ ବିଷୟାଧିପତି ଏବଂ ମହାମଣ୍ଡଳେଶ୍ୱର ଉପାଧିରେ ଭୂଷିତ ଥିଲେ । ସେମାନେ ଜୟନ୍ତୀପୁରଠାରୁ ଶାସନ କରୁଥିଲେ । ଏହି ଜୟନ୍ତୀପୁର ଟିକାଲି ନିକଟରେ ଅବସ୍ଥିତ । (୭୮)

କଦମ୍ବ ବଂଶର ଜୟାର୍ଣ୍ଣବ, ଭୀମଖେଡ଼ି, ଧର୍ମଖେଡ଼ି, ଉଗ୍ରଖେଡ଼ି, ଉଦୟ ଖେଡି ପ୍ରଭୃତି ଶାସନ ଧାରାବାହିକ ଭାବେ ଶାସନ ଚଳାଇ ଥିଲେ । ଏମାନେ ରାଷ୍ଟ୍ର ବଣରାସ୍ୟରୁ ଆସିଥିଲେ । ଧର୍ମଖେଡି ଦେବେନ୍ଦ୍ରବର୍ମାଙ୍କ ମାମୁ ଥିଲେ । ଭୀମ ଖେଡ଼ିଙ୍କ ପୁତ୍ର ଧର୍ମଖେଡି ପଞ୍ଚପତି ଜିଲ୍ଲାର ଶାସକ ହିସାବରେ ନିଯୁକ୍ତ ଥିଲେ । ସେହି ସମୟରେ ଅନନ୍ତବର୍ମାଙ୍କ ପୁତ୍ର ଦେବେନ୍ଦ୍ରବର୍ମା "ସକଳ କଳିଂଗାଧିପତି ପରମେଶ୍ୱର ପରମ ଭଟ୍ଟାରକ' ଉପାଧିରେ ଭୂଷିତ ଥିଲେ, ସେତେବେଳେ ଧର୍ମଖେଡ଼ି ସେନାନାୟକ ମହେନ୍ଦ୍ରାଧିପତି ମହାମଣ୍ଡଳେଶ୍ୱର ଏବଂ ରଣକ ଉପାଧିରେ ଭୂଷିତ ଥିଲେ । ଉଭୟଙ୍କର କୂଳଦେବତା ଗୋକର୍ଣ୍ଣେଶ୍ୱର ଅଟନ୍ତି । ଭୀମ ଖେଡ଼ିଙ୍କ ପୁତ୍ର ଧର୍ମଖେଡ଼ି ମହେନ୍ଦ୍ରଭୋଗ ରାଜ୍ୟର ରାଜଧାନୀ ଧର୍ମପୁର ଅଞ୍ଚଳ ୩୦୦ ବ୍ରାହ୍ମଣଙ୍କୁ ଦାନ କରିଥିଲେ । କଦମ୍ବରାଜ ରଣକ ଉଗ୍ରଖେଡ଼ି

---

(୭୮) ଓଡ଼ିଶାର ଇତିହାସ : ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପୃ ୩୫୮

ଗୋକର୍ଣ୍ଣଙ୍କ ପରମ ଭକ୍ତ ଥିଲେ । ସେ ପଞ୍ଚପାଦ ବିଷୟର ଶାସକ ରୂପେ ନିଯୁକ୍ତ ହୋଇଥିଲେ । (ଶକ ୧୦୪୦ ବା ଖ୍ରୀ ୧୧୧୮)

ମଞ୍ଜୁଷା ନିକଟରେ ପିତ୍ତ ମଞ୍ଜୁଷା ବୋଡ ମଞ୍ଜୁଷା ନାମରେ ଖ୍ୟାତ । ଏଠାରେ ଏକ ତ୍ରମ୍ବାକୃତ ଦେବୀ ପୂଜିତ ହୁଅନ୍ତି । ପ୍ରତି ମାସର ସଂକ୍ରାନ୍ତିରେ ପୂଜା କରାଯାଏ । ଏହାର ମୂଳପୀଠ ମହେନ୍ଦ୍ର ପର୍ବତର ଝମ୍ପୁରୀ ଓ ବେଙ୍ଗା ସାହି ଗ୍ରାମଦ୍ୱୟ ମଧ୍ୟରେ ଅବସ୍ଥିତ । ଏହା ଏକ ବାଉଁଶ ବୁଦା । ଏଥିରୁ ବାଉଁଶ ହାଣିଲେ ରକ୍ତ ବାହାରେ ବୋଲି ପ୍ରବାଦ ଅଛି । ପିତ୍ତ ମଞ୍ଜୁଷାର ଦେବୀ ସୁଦର୍ଶନର ପ୍ରତୀକ ବୋଲି ରାଜଗୁରୁ ମତ ଦିଅନ୍ତି । ମଞ୍ଜୁଷା ଗଡ଼ ମଧ୍ୟରେ ଖିଲମଣ୍ଡା ଦେବୀ ଅଛନ୍ତି । ଯାତ୍ରା ସମୟରେ ଝମ୍ପୁରୀ ବାଉଁଶ ବୁଦା ନିକଟରୁ ଆହ୍ୱାନ କରି ଦେବୀଙ୍କୁ ଆଣିବା ପରେ ପୂଜା ହେଉଥାଏ । ଏହି ମଞ୍ଜୁଷା ତାମ୍ରଶାସନରୁ ଧର୍ମଖେଡ଼ିଙ୍କ ପ୍ରଦତ୍ତ 'ମହିପଥର ଖଣ୍ଡ' ମୂକସାକ୍ଷୀ । ଉକ୍ତସ୍ଥ ଖେଡ଼ି ମଧ୍ୟ କେତେକ ଅଂଶ ଦାନ ଦେଇଥିବା ପ୍ରକାଶ ।

## ଶ୍ୱେତକ ଗଙ୍ଗ ଅଧୀନରେ ମହେନ୍ଦ୍ର ତୀର୍ଥ :

ମହେନ୍ଦ୍ରଗିରିର ଅବସ୍ଥିତି ଅନୁଧ୍ୟାନ କଲେ ଦେଖାଯାଏ ମହେନ୍ଦ୍ରର ସାତୋଟି ଶୃଙ୍ଗରୁ ୩ ଗୋଟି ଉତ୍ତର ଦିଗେ ଅବସ୍ଥିତ । ଅବଶିଷ୍ଟ ଚାରୋଟି ଶୃଙ୍ଗ ଏମିତ ପ୍ରତିବନ୍ଧକ ସୃଷ୍ଟି କରେ ଯେ ଉତ୍ତରରୁ ଦକ୍ଷିଣକୁ ଆସିବା ପାଇଁ ଗୋଟିଏ ଗୋଟିଏ ପର୍ବତମାଳା ଅତିକ୍ରମ କରିବାକୁ ପଡ଼ିବ । ପ୍ରକୃତରେ ପ୍ରାକୃତିକ ପ୍ରତିବନ୍ଧକ ରାଜନୈତିକ ଶାସନ ଦୃଷ୍ଟିରୁ ତିନୋଟି ଭାଗରେ ବିଭକ୍ତ କରିଛି । ଉତ୍ତର-ପୂର୍ବରୁ ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଶ୍ୱେତକ ରାଜ୍ୟର (ଚିକିଟି) ଭୂମିକା, ଦକ୍ଷିଣ ପୂର୍ବରୁ ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ କଦମ୍ବ ପରିବାର ମଞ୍ଜୁଷାର ଭୂମିକାଠାରୁ ଗୁରୁତ୍ୱପୂର୍ଣ୍ଣ । ଦକ୍ଷିଣ ପଶ୍ଚିମାଂଶ କେବଳ ଗନ୍ଧର୍ବ ସଦୃଶ ବା କୋଟର ସଦୃଶ । ପର୍ବତବେଷ୍ଟିତ ଗିରିକୋଷ୍ଠର ବା କଣ୍ଠର ରାଜ୍ୟ (ସମ୍ପ୍ରତି ପାରଳାଖେମୁଣ୍ଡି ତହସିଲ ଅନ୍ତର୍ଗତ) ଗ୍ରୀକ୍ ଦେଶର ଏଥେନ୍ସ କମ୍ବା ସ୍ପାର୍ଟା ଭଳି ନଗର ରାଜ୍ୟ ।

ଇତିପୂର୍ବରୁ ଶ୍ୱେତକ ଗଙ୍ଗଙ୍କ ସହିତ ପ୍ରାକ୍-ଗଙ୍ଗ ବିଷୟର ବିବରଣୀ ଦିଆଯାଇଛି । ବର୍ତ୍ତମାନ ତତ୍କାଳୀନ ଶାସନରେ ମହେନ୍ଦ୍ରଗିରିର ସ୍ଥିତି ବର୍ଣ୍ଣ୍ୟ । ହୁଏନସାଂଙ୍କ ଭ୍ରମଣ ବୃତ୍ତାନ୍ତରୁ ଶ୍ୱେତକ ରାଜ୍ୟ ସଂପର୍କରେ ଆମର ଧାରଣା ହୁଏ । କଙ୍ଗୋଦରୁ ଶୈଳୋଦ୍ଭବ ବଂଶ ଉଚ୍ଛେଦପରେ ଯେତେବେଳେ ଭୌମକରଙ୍କ ପର୍ଯ୍ୟନ୍ତ ଗଙ୍ଗମାନେ ରାଜ୍ୟ ବିସ୍ତାର କଲେ, ଭୌମକରଙ୍କ ଅଧୀନରେ ସାମନ୍ତ ରାଜା ରୂପେ ରହି ଶ୍ୱେତକ ରାଜାଙ୍କୁ ସ୍ୱୀକୃତି କରିଥିଲେ । ଏହା ଖ୍ରୀ: ଅ: ଅଷ୍ଟମ ଶତାବ୍ଦୀର ବିଷୟ । ଶ୍ୱେତକ

ଗଙ୍ଗ ରାଜାମାନଙ୍କ ୧୬ ଗୋଟି ତାମ୍ରଶାସନ ବଡ଼ଖେମୁଣ୍ଡିରୁ ପ୍ରାପ୍ତ । ସେଥିରୁ ସେମାନଙ୍କ ବଂଶାବଳୀ ନିମ୍ନ ପ୍ରକାରେ ଦୃଷ୍ଟିକୁ ଆସେ । (୬୯)

ଜୟବର୍ମଦେବ (ଗଙ୍ଗାବ୍ଦ ୧୦୦, ଭୌମାବ୍ଦ ୫୦)—ତ୍ରିକଳିଙ୍ଗ ମହାଦେବ—ଗଙ୍ଗକ ବିଳାସ—ଉପେନ୍ଦ୍ର ବର୍ମା—(ଶ୍ରୀ ମହାଦେବୀ)—ଅନନ୍ତ ବର୍ମା (ଭୌମାବ୍ଦ ୭୯) ଶ୍ରୀବାସ ଭଟ୍ଟାରିକା—ମହେନ୍ଦ୍ରବର୍ମଦେବ—ପୃଥ୍ୱୀ ବର୍ମଦେବ—ଶ୍ରୀଗଙ୍ଗ ସ୍ୱୟମ୍ଭୂ, ଇନ୍ଦ୍ରବର୍ମଦେବ, ଦାନାର୍ଣ୍ଣବ—ସାମନ୍ତବର୍ମା (ଭୌମାବ୍ଦ ୧୬୩ ଠାରୁ ୧୮୫) । ଏମାନେ ପରମ ମାହେଶ୍ୱର ପଦବୀ ଧାରଣ କରିଥିଲେ । ଏମାନେ ଗୋକର୍ଣ୍ଣେଶ୍ୱରଙ୍କ ପ୍ରତି ପ୍ରଗାଢ଼ ଭକ୍ତି ରଖିଥିଲେ । ଭୌମମାନଙ୍କ ଅଧୀନରେ ରାଜ୍ୟ ଶାସକ ଉପାଧିରେ ମଣ୍ଡିତ ଥିଲେ । ଇନ୍ଦ୍ରବର୍ମା ଶ୍ରୀ ଲୋକମାଧବ (ବିଷ୍ଣୁ) ସ୍ୱୟମ୍ଭେଶ୍ୱର (ଶିବ)ଙ୍କ ମନ୍ଦିର ନିର୍ମାଣ ପାଇଁ ଭେଟ୍ଟିଶିଙ୍ଗ ଗ୍ରାମର ଅର୍ଦ୍ଧେକ ଓ ପଦୁଣି ଗ୍ରାମର ଅର୍ଦ୍ଧେକ ଅଂଶ ନିଷ୍କର ଦାନ ଦେଇ ଥିଲେ । ଇନ୍ଦ୍ରବର୍ମାଙ୍କ ସାନଖେମୁଣ୍ଡି ତାମ୍ରଶାସନରେ ଲୋକମାଧବ (ବିଷ୍ଣୁ)ଙ୍କୁ ଯେଉଁ ଦାନ ଦେଇଥିଲେ ତାଙ୍କୁ 'ପରମ ମହେଶ୍ୱର' ଓ ରାଣୀଙ୍କୁ ପରମ ମାହେଶ୍ୱରୀ ଉପାଧି ପ୍ରାପ୍ତ ହୋଇଥିଲେ । ଏ ସମୟରେ ରାଜାଜ୍ଞାସ୍ଥ ମୁଦ୍ରାରେ ରାଣୀମାନଙ୍କ ଚିହ୍ନ ଥିବା ଯୋଗୁଁ ରାଣୀମାନଙ୍କୁ ଗୁରୁତ୍ୱ ଦିଆଯାଉଥିଲା । (୭୦) ଏମାନଙ୍କ ଉପରେ ଭୌମବଂଶର ପ୍ରଭାବ ପଡ଼ିବା ସ୍ପଷ୍ଟ । କାରଣ ଅଷ୍ଟମ ଓ ନବମ ଶତାବ୍ଦୀରେ ଚକଟା, ଲଙ୍କାରଆ, ଖୋସାବାଡ଼ି, ସାନଖେମୁଣ୍ଡି, ବଡ଼ଖେମୁଣ୍ଡି, ପୋଡ଼ାମାରୀ, 'ଶ୍ରୀବଗିରିଠାରୁ ଜଉଡା ମହେନ୍ଦ୍ରଗିରି ଯାଏ ଅର୍ଥାତ୍ ବାଲକୁମାରୀଠାରୁ କୁରେଇଶୁଣି ପାର୍ଥସାରଥୀ, ପର୍ଶୁରାମକୁଣ୍ଡଠାରୁ ଲୁହାଖମ୍ବ ପର୍ଯ୍ୟନ୍ତ ଅସଂଖ୍ୟ ଶୈବ, ଶାକ୍ତ ବୈଷ୍ଣବ ପୀଠ ଦୃଷ୍ଟିକୁ ଆସେ । ଦାନ ପତ୍ରାଦିରେ ପ୍ରଦତ୍ତ ବ୍ରାହ୍ମଣମାନଙ୍କ ଗୋତ୍ର ବତ୍ସସ ଗୋତ୍ର, କାଶ୍ୟପ ଗୋତ୍ର ଇତ୍ୟାଦି

---

(୬୯) Inscription of Orissa Vol. II. P 364.

(୭୦) ବଡ଼ଖେମୁଣ୍ଡିର ଶାସନ—ପୃଥ୍ୱୀ ମହାଦେବୀ ଲାଞ୍ଛିତ କରିଥିଲେ ।
ଭୂପେନ୍ଦ୍ରଦେବଙ୍କ ତାମ୍ରଶାସନ—ଶ୍ରୀ ମହାଦେବୀ କରିଥିଲେ ।
ଅନନ୍ତବର୍ମ ଦେବଙ୍କ „ —ରାଣୀ ଶ୍ରୀବାସ ଭଟ୍ଟାରିକା କରିଥିଲେ ।
ପୃଥ୍ୱୀ ମହାଦେବ „ —ଶ୍ରୀ ମହାଦେବୀ କରିଥିଲେ ।
ଇନ୍ଦ୍ରବର୍ମାଙ୍କ „ —ଗୋସ୍ୱାମିନୀ ଶ୍ରୀ ମହାଦେବୀ କରିଥିଲେ ।
ଇନ୍ଦ୍ରବର୍ମା (ଅନ୍ୟ) „ —ଗୋସ୍ୱାମିନୀ ପରମ ବୈଷ୍ଣବୀ ଉପାଧି
Inscription of Orissa Vol. II, Page 221 to 300 and Page 393 of History of Orissa : Dr. S. N. Rajguru

ବ୍ରାହ୍ମଣମାନେ ବର୍ତ୍ତମାନ ପ୍ରଜା ବସତି ସ୍ଥାପନ କରି ଅଛନ୍ତି । ବିଶେଷତଃ ତାମାନନ୍ଦ-ନାଥପୁରରୁ ପ୍ରାପ୍ତ ସାମନ୍ତ ବର୍ମାଙ୍କ ଦ୍ୱିତୀୟ ତାମ୍ରଶାସନ ଏକ ନୂତନ ରହସ୍ୟ ଉଦ୍‌ଘାଟିତ ହୁଏ । ଯେଉଁ 'ଧର୍ମରାଜ କଳିଙ୍ଗମାର୍ଗ' ଦାନପତ୍ରର ପଣ୍ଡିତମାନେ ଦର୍ଶାଇ ଦିଆଯାଇଛି ତାହା କଣ୍ଟିକ ଘାଟ' କଳିଙ୍ଗାଘାଟି' ଉପରୁ ତଗପଦର୍ଶ୍ଣି ଖ୍ରୀଷ୍ଟିରି ଦେଇ ମହେନ୍ଦ୍ରକୁ ଯିବା ରାସ୍ତା ଅଟେ । ଏହି ରାସ୍ତା ସୁରଙ୍ଗୀର କୁରେଇଗୁଣି ଦେଇ 'ନକୁଳକଟ' ଓ କୁଚୁଟକୁ ସଂଯୋଗ କରେ । ମହାଭାରତର ମହାନାୟକମାନେ ଯୁଧିଷ୍ଠିରଙ୍କ ସମେତ ଏହି ରାସ୍ତାରେ ଯାଇଥିବା ଯଥେଷ୍ଟ ସମ୍ଭାବନା ରହିଛି । ଖ୍ରୀଷ୍ଟିଗିରି ଠାରୁ ଦକ୍ଷିଣ ଦିଗେ ଅତି ପ୍ରାଚୀନ ଶୈବପୀଠମାନ ପାଣ୍ଡବଙ୍କ ନାମାନୁସାରେ ପୂଜିତ ଥିବା ଦୃଷ୍ଟିଗୋଚର ହୁଏ । ଶ୍ୱେତକ ଗଙ୍ଗମାନଙ୍କ ରାଜ୍ୟରେ ନିମ୍ନଲିଖିତ ବିଷୟ ବା ଜିଲ୍ଲା ଥିଲା । (୭୧) (୧) ଖଲୁଗ ଖଣ୍ଡ ବିଷୟ (୨) ଅଣ୍ଡାଦାଶୃଙ୍ଗ ବିଷୟ (୩) ସାମନ୍ତ ଭୁକ୍ତି (୪) ଜନୋର ବିଷୟ (୫) ପଚୁଣ୍ଣି-ଖଣ୍ଡ-ବିଷୟ (୬) ଜଳମ୍ୱୋର ବିଷୟ, (୭) ହେମ୍ବକ-ମଟମ୍ବ ବିଷୟ (୮) ହଲ୍ଲମ୍ବର୍-ବିଷୟ (୯) ଜୟୁଡ଼ା ବିଷୟ (୧୦) ହାମନା ଭୋଗ ବିଷୟ (୧୧) ଲୋହଶୃଙ୍ଗାର ବିଷୟ (୧୨) ବର୍ତ୍ତିଙ୍ଗହାର ବିଷୟ । ଏଗୁଡ଼ିକ ମଧ୍ୟରୁ ଅଣ୍ଡାଶୃଙ୍ଗ ବିଷୟ ନିର୍ଦ୍ଦିଷ୍ଟ ରୂପେ ଜରଡା ଭୂମି ନିକଟ ଅଣ୍ଡଅଣ୍ଡା ଠାରୁ ଶୃଙ୍ଗରାଜ ଶୃଙ୍ଗକୁ ବୁଝାଏ । ସିଂହରାଜ ଶୃଙ୍ଗର ପଶ୍ଚିମକୁ ଲୋହଶୃଙ୍ଗ (ଲୁହାଖମ୍ବ) ଅର୍ଥାତ୍ ମହେନ୍ଦ୍ରଗଡ଼ର ଉତ୍ତର ଦିଗେ ଶିଆଳୀଲତି ଗ୍ରାମଗିରିର ଦକ୍ଷିଣାଞ୍ଚଳ ଅଟେ । ଏହି ଲୁହାଖମ୍ବ ଜୟପୁରର ଗୁପ୍ତେଶ୍ୱର ସଦୃଶ ପ୍ରସିଦ୍ଧ ଶୈବପୀଠ । ଏହି ଲୁହାଖମ୍ବରୁ ନକୁଳଗଡ ଦେଇ ବୁରୁଖତ କମ୍ପା କର୍ପୂର ନିକଟର କଳିଙ୍ଗ ଗ୍ରାମ ସନ୍ନିକଟ ଅମର ସିଂହ ଗ୍ରାମକୁ ରାସ୍ତା ରହିଛି । ବୁରୁଖତ ଅଣ୍ଡଅଣ୍ଡା ରାସ୍ତା ପୁରାତନ ରାସ୍ତା ଅଟେ । ଶ୍ୱେତକଗଙ୍ଗ ଶାସନ ସମୟରେ ମହେନ୍ଦ୍ରଗିରିର ଯଥେଷ୍ଟ ସୁରକ୍ଷା ହୋଇଥିବା ଜଣାଯାଏ । (ପ୍ରକାଶ ଥାଉକି ମହେନ୍ଦ୍ରର ଖ୍ରୀମ ଦେଉଳ ପାରଳାଖେମୁଣ୍ଡିରୁ ୬୦ କିଲୋମିଟର ଦୂର କିନ୍ତୁ ଚନ୍ଦ୍ରକୋଟିକୁ ନିକଟ ରାସ୍ତା ୪୦ କିଲୋମିଟର ହେବ) ତେଣୁ ମହେନ୍ଦ୍ରଗିରି ଦାୟିତ୍ୱ ସେମାନଙ୍କର ଥିବା ଯଥେଷ୍ଟ ଯୁକ୍ତିଯୁକ୍ତ ।

## ଶୈଳୋଦ୍ଭବ ବଂଶ ରାଜତ୍ୱ ସମୟର ମହେନ୍ଦ୍ରଗିରି :

ପୂର୍ବ-ଭାରତ ଇତିହାସରେ ଷଷ୍ଠ ଶତାବ୍ଦୀର ମଧ୍ୟଭାଗରୁ ୭୩୬ ଯାଏ, ଦୁଇ ଶତାବ୍ଦୀ ଧରି ଶୈଳୋଦ୍ଭବ ବଂଶ ଶାସନ କରି ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ

---

(୭୧) Inscription of Orissa Vol II. Page 318-322 and 375. (History of Orissa) Dr. S N. Rajguru.

କରିଥିଲେ, ସେହି ରାଜ୍ୟ କଙ୍ଗୋଦ ନାମରେ ଖ୍ୟାତ । ବାଣପୁର ଅଭିଲେଖ (୭୨) ଧ୍ରୁବନନ୍ଦାଂଙ୍କ ବିବରଣୀ ସମେତ ଅନ୍ୟାନ୍ୟ ପ୍ରମାଣ ଅନୁଯାୟୀ ଏମାନଙ୍କ ରାଜ୍ୟର ପୂର୍ବରେ ବଙ୍ଗୋପସାଗର, ଉତ୍ତରରେ ମହାନଦୀ, ଦକ୍ଷିଣ-ପଶ୍ଚିମରେ ଫୁଲବାଣୀର ଜଙ୍ଗଲ ଓ ଦକ୍ଷିଣରେ ମହେନ୍ଦ୍ରଗିରି (ପୂର୍ବତନ ଚକଟି ଜମିଦାରୀ, ପାରଳାଖେମୁଣ୍ଡି ଓ ବଡ଼ଖେମୁଣ୍ଡି ବ୍ୟତୀତ) ପରିସୀମା ଧାର୍ଯ୍ୟ କରାଯାଇଛି ।

କଳିଙ୍ଗର ଇତିହାସରେ ଏମାନଙ୍କ ଶାସନ ଅନ୍ତର୍ଭୁକ୍ତ । ଖାରବେଳଙ୍କ ସମୟରେ ଏମାନଙ୍କ ଶାସନ ଉଚ୍ଚତର ସୋପାନରେ ପହଞ୍ଚିଥିଲା । ତା ପରେ ଘନ ଅନ୍ଧକାରାଚ୍ଛନ୍ନ ହେଲା । କାରଣ ଚତୁର୍ଥ ଶତାବ୍ଦୀର ମଧ୍ୟଭାଗଯାଏ ଅର୍ଥାତ୍ ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ଅଭିଯାନ ଯାଏ, କଳିଙ୍ଗର ରାଜାମାନଙ୍କ ମଧ୍ୟରେ ଘୋର ବିଶୃଙ୍ଖଳା ଦେଖା ଦେଇଥିଲା । ତତ୍‌ପରେ ମାଠର ଓ ବାଶିଷ୍ଠମାନଙ୍କର ଅଭ୍ୟୁତ୍ଥାନ ଘଟିଲା । ସେହି ସମୟ ଅର୍ଥାତ୍ ପ୍ରାକ୍ ଗୁପ୍ତଯୁଗରେ ସିଂହପୁର ଓ ପିଠାପୁର ରାଜଧାନୀ ଥିଲା । ଷଷ୍ଠ ଶତାବ୍ଦୀର ଆରମ୍ଭରୁ ମାଠର ଶାସନରେ ଅରାଜକତା ଦେଖା ଦେଲା କାରଣ 'ବିଷ୍ଣୁକୁଣ୍ଡୀ'ଙ୍କ ଉତ୍ଥାନ ଦ୍ୱାରା ଦକ୍ଷିଣ କଳିଙ୍ଗ ବେଙ୍ଗୀର ଶାସନକୁ ଦୃଢ଼ିଲପାଇ ମାଠରମାନଙ୍କ ଶାସନ ପରିସର ସଙ୍କୁଚିତ ହୋଇଗଲା । ଯଶୋଧର୍ମନ୍‌ଙ୍କ ମହେନ୍ଦ୍ରାଚଳ ଅଧିକାର ପରେ କଳିଙ୍ଗରେ ମାଠରମାନଙ୍କ ଶାସନର ଅବସାନ ଘଟିଲା । ଏହାପରେ ପଶ୍ଚିମ ଚାଲୁକ୍ୟ ବାଦାମୀର ରାଜା କଳିଙ୍ଗର କେତେକାଂଶ ଅଧିକାର କରିନେଲେ ।

ଉପରୋକ୍ତ ବିଶୃଙ୍ଖଳା ପରିସ୍ଥିତି ମହେନ୍ଦ୍ରଗିରିର ରାଜା ପୁଳିନ୍ଦ ସେନଙ୍କୁ ସକାଗ କରି ଦେଇଥିଲା । ସେତେବେଳେ ମାଠର ସାମ୍ରାଜ୍ୟର ଧ୍ୱଂସସ୍ତୂପ ଉପରେ ଦୁଇଟି ରାଜ୍ୟ କଳିଙ୍ଗ ଓ କଙ୍ଗୋଦ ଯଥାକ୍ରମେ ଗଙ୍ଗ ଓ ଶୈଳୋଦ୍ଭବମାନଙ୍କ ମଧ୍ୟରେ ବିଭକ୍ତ ହୋଇଯାଇଛି । ଉଭୟ ଗଙ୍ଗ ଓ ଶୈଳୋଦ୍ଭବମାନଙ୍କର ଇଷ୍ଟଦେବ ହେଲେ ଗୋକର୍ଣ୍ଣେଶ୍ୱର । ମହେନ୍ଦ୍ରଗିରି କଳିଙ୍ଗର ଉତ୍ତର ସୀମାରେଖା ଓ କଙ୍ଗୋଦର ଦକ୍ଷିଣ ସୀମାରେଖା ହୋଇ ରହିଲା । (୭୩) ସେତେବେଳେ ଗଙ୍ଗମାନଙ୍କର କୋରାପଡ଼ କ ଓ ବରାହବର୍ତ୍ତିନୀ ଜିଲ୍ଲାଦ୍ୱୟ ତାଙ୍କ ଅଧୀନରେ ରହିଲା ଓ କଳିଙ୍ଗନଗର ଥିଲା ସେମାନଙ୍କ ରାଜଧାନୀ । (୭୪) ଶୈଳୋଦ୍ଭବମାନଙ୍କର କଙ୍ଗୋଦ ରାଜ୍ୟର 'ବାଙ୍କଡ଼ା' ରାଜଧାନୀ ଶାଳିଆନଦୀ କୂଳରେ ପ୍ରତିଷ୍ଠିତ ହେଲା ।

---

(୭୨) Rise and fall of the Sailodbnavas : Dr. Sarat Chandra Behera, Punti Pustak, Calcutta, Page 35-37

(୭୩) — ଏଜନ — ପୃ ୩୮

(୭୪) Cuttack Museum Charter of Madhab Barman. Line 10-11.

ଶୈଳୋଦ୍ଭବ ବଂଶର ଉତ୍ପତ୍ତିସ୍ଥଳ ଯେ ମହେନ୍ଦ୍ରଗିରି ତୋଟିଏ ପ୍ରାମାଣିକ କିମ୍ବଦନ୍ତୀ ଉପରେ ନିର୍ଭର କରି ଏହା କୁହାଯାଇ ପାରେ । ଏମାନଙ୍କ ପୂର୍ବପୁରୁଷ 'ପୁଳିନ୍ଦ ସେନ'ଙ୍କ କାତର ପ୍ରାର୍ଥନାରେ 'ସ୍ୱୟମ୍ଭୂ' (ବ୍ରହ୍ମା) ସନ୍ତୁଷ୍ଟ ହୋଇଥିଲେ । ସ୍ୱୟମ୍ଭୁଙ୍କ ଆଶୀର୍ବାଦ ସତ୍ୟ ହେଲ । ମହେନ୍ଦ୍ରର ଗୋଟିଏ ଶିଳା ଫାଟି ଜଣେ ବୀର ପୁରୁଷ ଆବିର୍ଭୂତ ହେଲେ ଓ ସେ କଙ୍ଗୋଦ ମଣ୍ଡଳର ଅଧିପତି ହେଲେ । ଶିଳାରୁ ଉଦ୍ଭବ ହେତୁ ଏହି ବଂଶର ନାମ ଶୈଳୋଦ୍ଭବ ହେଲା । ଶୈଳୋଦ୍ଭବମାନଙ୍କ ରେକର୍ଡ଼ରେ ମହେନ୍ଦ୍ରଗିରିକୁ କୁଳଗିରି ଆଖ୍ୟା ଦିଆଯାଇଛି ଓ ବୃହତ୍ କୁଳଗିରି କୁହାଯାଇଛି । (୭୫) ଚନ୍ଦ୍ରଙ୍କର କୋମଳ ଜ୍ୟୋତ୍ସ୍ନା ଦ୍ୱାରା ପରିଶୋଭିତ, ସର୍ପମାନଙ୍କ ମଣିମାନଙ୍କ ଦ୍ୱାରା ଦୀପ୍ତ, ପାର୍ବତୀଙ୍କର କର ସ୍ପର୍ଶରେ ଅଳଙ୍କୃତ ଓ ଗଙ୍ଗାଜଳ ଦ୍ୱାରା ସିକ୍ତ ଶିବଙ୍କର ଜଟା ଆମ୍ଭଙ୍କୁ ରକ୍ଷାକରୁ । ପୁନଶ୍ଚ, କଳିଙ୍ଗ ରାଜ୍ୟର ସୁପ୍ରସିଦ୍ଧ କୁଳଗିରି ମେରୁପର୍ବତର ସମତୁଲ୍ୟ ସମୁନ୍ନତ ଶିଖରରେ ଦ୍ରୁମ ବେଷ୍ଟିତ, ପୁଷ୍ପ ଶୋଭିତ ଝରଣାର କଳକଳ ନାଦରେ ମୁଖରିତ (୭୬) ଏବଂଭୂତ ମହେନ୍ଦ୍ରଗିରି ଶୈଳୋଦ୍ଭବମାନଙ୍କ ଯଜ୍ଞାନୁଷ୍ଠାନ ପାଇଁ ଉତ୍କୃଷ୍ଟ କରିଛି । (୭୭)

ଶୈଳୋଦ୍ଭବ ବଂଶର ବଂଶବୃକ୍ଷ ମାଧବବର୍ମାଙ୍କ ତାମ୍ରଶାସନାନୁଯାୟୀ ପ୍ରଦତ୍ତ ହେଲା । (୭୮)

---

(୭୫) ଇନ୍ଦୋର୍ଜ୍ଜିତ ମୃଣାଳ ତନ୍ତୁଭିରିବ ବଶିଷ୍ଟାଃ କରୈଃ କୋମଳୈ—
ର୍ବଦ୍ଧା ହେରଭୁଜଙ୍ଗମୈଃ ସ୍ଫୁରିତ ପ୍ରାଂଶୁମଣୌ ଦୀପ୍ତର୍ଦ୍ଧ ଦ୍ରବ୍ୟଶୋଭିତାଃ ଶୁଭାଃ ।
ପାର୍ବତ୍ୟା ସ କର ଗ୍ରହ ବ୍ୟତିକର ବ୍ୟାବୃତ୍ତ ବକ୍ର ଶ୍ଳଥା—
ର୍ଗଙ୍ଗାମ୍ଭଃ ପ୍ଲୁତ ଭଗ୍ନ ଭସ୍ମକଣିକାଃ ଶମ୍ଭୋର୍ଜଟା ପାନ୍ତୁବଃ ॥ ୧ ॥
Inscription of Orissa Vol I. Part II. P 192.

(୭୬) ପ୍ରାଚ୍ୟାମ୍ଭୋନିଧିରୁଦ୍ଧ ସାନୁଗରୁଲଃ ପୁଷ୍ପଦ୍ରୁମାଳୀବୃତଃ
ସ୍ୟନ୍ଦ ନ୍ନିର୍ଝର ବାରିଧାରିତଦରୀ ପାତସ୍ଖଳନ୍ନିସ୍ୱନଃ ।
ସ୍ୱାନ ଜସ୍ରପତଦ୍ ବଲଗୁବଲ୍ଗୁ ଙ୍ଭୈର ପୁଣ୍ଡଚାର୍ତ୍ତ ର୍ଦ୍ଧଃ
ଶ୍ରୀ ମାନ୍ ମେରୁ ଶବୋଦ୍ଗତଃ କୁଳଗିରିଃ ଖ୍ୟାତୋ ମହେନ୍ଦ୍ରଃ କ୍ଷିତୌ ॥ ୨ ॥
Inscription of Orissa P. II, Page 192

"ଯଜ୍ଞପ୍ରୈରଶ୍ୱମେଧ ଦ୍ରବ୍ଭୃତଭିରମସ ଲମ୍ଭିତା ସ୍ଫୁର୍ତ୍ତି ମୁର୍ବୀମ୍"
(୭୭) —ଏଜନ—ପୃ ୧୮୦

(୭୮) ଓଡ଼ିଆ ଜାତିର ଇତିହାସ : Dr. N. K. Sahu, Page 238.

ସୁଲନ୍ଦସେନ
|
ଶୈଳୋଦ୍ଭବ
|
ରଣଭୀତ
|
ପ୍ରଥମ ସୈନ୍ୟଭୀତ
|
ଅଯୋଶଭୀତ
|
ଦ୍ୱିତୀୟ ସୈନ୍ୟଭୀତ ।

ଶୈଳୋଦ୍ଭବବଂଶୀ ରାଜାମାନେ ନିଜକୁ 'ଅଭୀତ' ବା 'ଭୀତ' ଉପାଧିରେ ଭୂଷିତ କରିଥିଲେ । ପୁରୁଷୋତ୍ତମପୁର ତାମ୍ରଶାସନ ଓ ବୁଗୁଡ଼ା ତାମ୍ରଶାସନରୁ ଜଣାଯାଏ ମାଧବବର୍ମା ଅଶ୍ୱମେଧ ଯଜ୍ଞ ସମ୍ପାଦନ କରିଥିଲେ, ଗଙ୍ଗ ଶାସିତ ଅଞ୍ଚଳକୁ ଜୟ କରିଥିଲେ ଓ କିଛିକାଳ ଭୋଗ କରିଥିଲେ । ସାମୁଏଲ ବିଲ୍‌ଙ୍କ ଲିଖିତ ହୁଏନସାଂଙ୍କ ବିବରଣୀରୁ ଜଣାଯାଏ ତତ୍‌କାଳୀନ କଙ୍ଗୋଦରେ ଏକ ଶକ୍ତିଶାଳୀ ସେନାଥିଲା ଏବଂ ପର୍ବତକାୟ ଦ୍ରୁତଗାମୀ ହସ୍ତୀମାନେ ସେହି ସେନାବଳର ବିଶିଷ୍ଟ ଅଙ୍ଗରୂପେ ପ୍ରତିବେଶୀ ରାଜ୍ୟରେ ଭୀତି ସଞ୍ଚାର କରୁଥିଲେ । (୭୯)

ଏଥିରୁ ସ୍ପଷ୍ଟଃସିଦ୍ଧ ଯେ ଉତ୍ତର ଭାରତର କଙ୍ଗୋଦର ରାଜା ହର୍ଷବର୍ଦ୍ଧନଙ୍କ ହୁଙ୍କାର ଓ ଦକ୍ଷିଣ ଭାରତର ଚାଲୁକ୍ୟ ବଂଶର ରାଜା ୨ୟ ପୁଲକେଶୀଙ୍କ ସାମରିକ ସଙ୍ଗଠନ କଙ୍ଗୋଦ ଓ କଳିଙ୍ଗ ପାଇଁ ଘୋର ସଙ୍କଟର ସମୟ । କଙ୍ଗୋଦ ଆକ୍ରମଣ କରିବା ପାଇଁ ଉଭୟେ ତତ୍ପର ।

ଗଞ୍ଜାମ ତାମ୍ରଶାସନରୁ ଜଣାଯାଏ ଗୁ ପ୍ରାବ୍ଦ ୩୦୦ ବା ଖ୍ରୀ ୬୨୦ରେ କର୍ଣ୍ଣ ସୁବର୍ଣ୍ଣର ରାଜା ଶଶାଙ୍କଙ୍କର, ମାଧବରାଜ ତରୁଣ ବୟସରେ ସାମନ୍ତ ରାଜାରୂପେ ଥିଲେ । ସେ ଶଶାଙ୍କଙ୍କ ମୃତ୍ୟୁପରେ ସ୍ୱାଧୀନ ହୋଇଥିଲେ ।

ହର୍ଷବର୍ଦ୍ଧନ ଓ ଶଶାଙ୍କଙ୍କ ମଧ୍ୟରେ ସଂଘର୍ଷ ଥିଲା । ଶଶାଙ୍କଙ୍କ ମୃତ୍ୟୁପରେ ହର୍ଷବର୍ଦ୍ଧନ ଦଣ୍ଡଭୁକ୍ତି ଓ ଉତ୍କଳ ରାଜ୍ୟଦ୍ୱୟ ଅଧିକାର କଲେ ।

---

(୭୯) ଓଡ଼ିଆ ଜାତିର ଇତିହାସ : Dr. N. K. Sahu, Page 238.

ଅନ୍ୟପକ୍ଷରେ – ଦକ୍ଷିଣପଟ୍ଟ ଚାଲୁକ୍ୟରାଜ ୨ୟ ପୁଲକେଶୀ ବଂଶଧାରା ନଦୀ ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରି ଗଙ୍ଗ ଶାସିତ କଳିଙ୍ଗରେ ପ୍ରଭୁତ୍ୱ ବିସ୍ତାର କରିଥିଲେ । ଏହି ବୃହତ୍ ଶକ୍ତିମାନଙ୍କ ମଧ୍ୟରେ ମାଧବ ବର୍ମା ନିଜର ଶକ୍ତିଶାଳୀ ଦୁର୍ଗ ଓ ସୈନ୍ୟ ସୁଦୃଢ଼ କରିଥିଲେ ମାତ୍ର ଖ୍ରୀ: ଅ: ୬୪୧ ରେ ପଲ୍ଲବ ବଂଶୀ ରାଜା ନରସିଂହ ବର୍ମାଙ୍କ ଦ୍ୱାରା ଦ୍ୱିତୀୟ ପୁଲକେଶୀ ପରାସ୍ତ ଓ ନିହତ ହେଲେ । ଫଳରେ ହର୍ଷବର୍ଦ୍ଧନଙ୍କ କଣ୍ଟକ-ଶୂନ୍ୟ ରାସ୍ତା ମାଧବ ବର୍ମାଙ୍କ ପାଇଁ ବିପଦସଙ୍କୁଳ ହେଲା । ମାଧବ ବର୍ମା କିଂକର୍ତ୍ତବ୍ୟ ବିମୂଢ଼ ହୋଇ ହର୍ଷବର୍ଦ୍ଧନଙ୍କ ନିକଟରେ ଆତ୍ମସମର୍ପଣ କଲେ । ଖ୍ରୀ ୬୪୨ ରେ କଙ୍ଗୋଦ ହର୍ଷବର୍ଦ୍ଧନଙ୍କ ଦ୍ୱାରା ଅଧିକୃତ ହେଲା । ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତାନୁସାରେ (୮୦) ଶଶାଙ୍କଙ୍କ ମୃତ୍ୟୁ ପରେ ଚାଲୁକ୍ୟମାନେ ହର୍ଷବର୍ଦ୍ଧନଙ୍କ ସହିତ ଶତ୍ରୁତା ରହିଥିବା ସ୍ଥଳେ ମଧ୍ୟ ଓଡ଼ିଶା ଅଧିକାର କରିଥିଲେ । ଏହାପରେ ପୂର୍ବ ଚାଲୁକ୍ୟ ରାଜା ପୁଲକେଶୀଙ୍କ ଭ୍ରାତା କୁବୁଜ ବିଷ୍ଣୁବର୍ଦ୍ଧନ ପ୍ରଥମେ ଭେଙ୍ଗି ରାଜ୍ୟର ରାଜା ହେଲେ । ଖ୍ରୀ: ଅ: ୭ମ ଶତାବ୍ଦୀ ବେଳକୁ ସକଳ କଳିଙ୍ଗ ପୂର୍ବ ଚାଲୁକ୍ୟ ଓ ଗଙ୍ଗମାନଙ୍କ ମଧ୍ୟରେ ବିଭକ୍ତ ହୋଇ ଯାଇଥିଲା । ମହେନ୍ଦ୍ରଗିରି ଚାଲୁକ୍ୟମାନଙ୍କ ହସ୍ତରେ ରହିଲା । (ଏ ବିଷୟ ସ୍ୱେତକ ଗଙ୍ଗ ବିଭାଗରେ ବର୍ଣ୍ଣିତ) ।

ତୃତୀୟ ମଧ୍ୟମ ରାଜା ହେଉଛନ୍ତି ଶୈଳୋଦ୍ଭବବଂଶର ଶେଷ ରାଜା । ଅଷ୍ଟମ ଶତାବ୍ଦୀର ମଧ୍ୟଭାଗରେ ଭୌମରାଜା ଶିବକର ଦେବ ଉନ୍ମତ୍ତ ସିଂହଙ୍କ ଦ୍ୱାରା କଙ୍ଗୋଦରେ ଶୈଳୋଦ୍ଭବ ଶାସନର ଅବସାନ ଘଟିଲା । ଶୈଳୋଦ୍ଭବବଂଶୀ ରାଜାମାନେ ପାରଳା ନିକଟର ଟେକ୍କଲିରେ କିଛିଦିନ ରହିବା ପରେ ଜାଗା, ସୁମାଣା, ବୋଣ୍ଡି ଓ ଅଞ୍ଚଳକୁ ସ୍ଥାନାନ୍ତର ହୋଇଥିବା ପ୍ରମାଣ ମିଳେ । ବୌଦ୍ଧଧର୍ମର ପ୍ରଭାବରୁ ବ୍ରାହ୍ମଣ୍ୟ ଧର୍ମକୁ ରକ୍ଷା କରିବାଥିଲା ଏ ବଂଶର ପ୍ରଧାନ ଓ ପ୍ରଥମ କର୍ତ୍ତବ୍ୟ ଥିଲା । (୮୧)

## ଭୌମକର ରାଜବଂଶ :

ଅଷ୍ଟମ ଶତାବ୍ଦୀର ପ୍ରଥମ ପାଦରେ ଭୌମ୍ୟ ରାଜତ୍ୱ ଆରମ୍ଭ ହେଲା (ଖ୍ରୀ ୮୧୦-୨୫) । ମହେନ୍ଦ୍ର ଭୌମ ଜାତ ପୁରାଣରେ ବର୍ଣ୍ଣିତ ଗୁହରାଜା-କଳିଙ୍ଗ,

(୮୦) Hist. of Orissa :-Dr. K. Ch. Panigrahi

(୮୧) Rise and Fall of the Sailodbhavas. By Dr. Sarat Chandra Behera, Page 178. Kongoda in the 7th century AD played a very important role in the revival of Brahminism at the cost of Buddhism.

ମାତୃଷ୍ୟ ଓ ମହେନ୍ଦ୍ର ଭୌମ ଜାତିମାନଙ୍କୁ ରକ୍ଷା କରିଥିଲେ । ଏହି ଗୁହିରାଜାଙ୍କ ନାମାନୁସାରେ ଏହି ଭୌମବଂଶ ନାମିତ ହେବା ସମ୍ଭବ । (୮୨)

ଭୁୟାଁ । ଏକ ପ୍ରାଚୀନ ସମ୍ଭ୍ରାନ୍ତ ପଦବୀ ଓ ଏହାଙ୍କୁ ଜମିଦାର ଏବଂ ରାଜାମାନେ ନିଜନିଜ ନାମ ସହିତ ଯୋଗକରି ଗୌରବ ଅର୍ଜନ କରୁଥିଲେ । ଭୌମବଂଶୀୟ ରାଜାମାନଙ୍କ ରାଜ୍ୟ ପରିସର ପୂର୍ବରେ ସୁବର୍ଣ୍ଣରେଖା ନଦୀ ଓ ଦକ୍ଷିଣରେ ମହେନ୍ଦ୍ରାଚଳ (ମହେନ୍ଦ୍ର ପର୍ବତ) ଥିଲା । ପୂର୍ବରୁ ବର୍ଣ୍ଣିତ ସେତକ ରାଜାମାନେ ଭୌମକରଙ୍କ ଅଧୀନତା ସ୍ୱୀକାର କରିଥିଲେ । ଭୌମ ରାଜାମାନଙ୍କର ରାଜ୍ୟ ୧୮ ଗୋଟି ମଣ୍ଡଳରେ ବିଭକ୍ତ ଥିଲା । ଏମାନେ କଙ୍ଗୋଦକୁ ଦକ୍ଷିଣ ତୋଷାଳୀରେ ମିଶାଇ ଦେଇଥିଲେ । ଏହି ବଂଶ ଓଡ଼ିଶାରେ ଦୁଇଶହରୁ ଅଧିକ ବର୍ଷ ଶାସନ କରିଥିଲେ । ଦଣ୍ଡି ମହାଦେବୀଙ୍କ ଶାସନ ସମୟରେ ବହୁଅଂଶ ଛିନ୍ନ ହୋଇଗଲା । ମଣ୍ଡପାଳମାନେ ସ୍ୱାଧୀନ ଘୋଷଣା କରିଥିଲେ । ବୌଦ୍ଧ, ଶୈବ ଓ ବୈଷ୍ଣବର ପ୍ରଭାବ ଓ ପ୍ରସାର ଏହି ସମୟରେ ହିଁ ଜୀବନ୍ତ ହୋଇ ଉଠିଥିଲା । ସ୍ୱତନ୍ତ୍ର ଓଡ଼ିଶା ଓ ଓଡ଼ିଆ ଜାତିର ସାଙ୍ଗଠନିକ ସୌଧ ନିର୍ମାଣର ମୂଳଭିତ୍ତି ହେଉଛି ଭୌମ ରାଜତ୍ୱ । ତା ଉପରେ ଗଙ୍ଗବଂଶ ସୌଧ ନିର୍ମାଣ କରିଛନ୍ତି ।

## ମହେନ୍ଦ୍ର ଧୂମକେତୁ ରାଜେନ୍ଦ୍ର ଚୋଳ :

ପ୍ରାକ୍ ଗଙ୍ଗ ଶାସନର ସନ୍ଧ୍ୟା ସମୟରେ ହଠାତ୍ ଦକ୍ଷିଣ ଭାରତର ଚୋଳ ବଂଶର ରାଜେନ୍ଦ୍ରଚୋଳ, ମହେନ୍ଦ୍ରଗିରି ତଥା କଳିଙ୍ଗ ଇତିହାସରେ ଧୂମକେତୁ ରୂପରେ ଦେଖାଦେଇଛନ୍ତି । ମହେନ୍ଦ୍ରଗିରି ଯେହେତୁ ପ୍ରକୃତିକ ସମ୍ପଦର ଭଣ୍ଡାର, ସମସ୍ତଙ୍କୁ ଆକର୍ଷଣ କରିଛି; ବହୁ ଆକ୍ରମଣ ଓ ପ୍ରତିରୋଧ ଦେଖିଛି । ସେହି ଆକ୍ରମଣକାରୀଙ୍କ ମଧ୍ୟରୁ ଜଣେ ହେଉଛନ୍ତି ରାଜେନ୍ଦ୍ରଚୋଳ ।

ଯୁଧିଷ୍ଠିର ମନ୍ଦିରରେ ଉତ୍କୀର୍ଣ୍ଣ ଶିଳାଲେଖ (୮୩)ରୁ ଜଣାଯାଏ ଯେ, ରାଜେନ୍ଦ୍ରଚୋଳ ତାଙ୍କ ଭଣେଇ ବିମଳାଦିତ୍ୟ (ଖ୍ରୀ.ଅ. ୧୦୧୫-୧୦୨୨)ଙ୍କୁ ଯୁଦ୍ଧରେ ପରାଜିତ କରି ମହେନ୍ଦ୍ରଗିରିରେ ବିଜୟ ସ୍ତମ୍ଭ ସ୍ଥାପନ କରିଥିଲେ । ଏହି ଶିଳାଲେଖ

---

(୮୨) History of Orissa : Dr.H. K. Mahatab, Part I Page 104

(୮୩) (୧) [ସିଙ୍ଗ] ଜଯତ ନିଜ ଭୁଜା [ର୍ଜି] ନିର୍ଜିତୋର୍ବୀପ ମୌଳି
ପ୍ରତେ ଗଣିତ ମାଲ୍ୟାଳଂକି [କୃ] ତ [ଶ] ଷ୍ଠା [ନେ —
(୨) ଭୂମିଃ [।] ବିମଲସ୍ୟ ତ ଯଦୀୟଂ ଧାମଲେକଂ ସମ [ସ୍ତଂ]
କଳି ମଳ ନିତ ମୂର୍ଚ୍ଛି ଭ୍ରାଜି ରାଜେନ୍ଦ୍ର ଚୋଳଃ [॥]

ଲମ୍ବରେ ଦୁଇଟି ମତ୍ସ୍ୟ ଓ ବେଠକ ବ୍ୟାଘ୍ର ଚନ୍ଦ୍ର ଖୋଦିତ । ଚୋଳ ଓ ପାଣ୍ଡ୍ୟଙ୍କ ଶାସନର ପ୍ରତୀକ ଯଥାକ୍ରମେ ବ୍ୟାଘ୍ର ଓ ମତ୍ସ୍ୟ । କଦମ୍ବବଂଶୀ ରାଜାମାନେ ମଧ୍ୟ ମତ୍ସ୍ୟ-ଚହ୍ନ ବ୍ୟବହାର କରୁଥିଲେ । ଏହି ଶିଳାଲେଖର ଭାଷା ସମ୍ପୃକ୍ତ ବିମଳାଦିତ୍ୟ, କୁଳୁତାର ରାଜାଙ୍କ ଚହ୍ନ ହୋଇପାରନାହିଁ । ଯାହାହେଉ ଟୋଗ୍ରୁର୍ଯ୍ୟଙ୍କ ମତାନୁସାରେ, ସେ ରାଜେନ୍ଦ୍ର ଚୋଳଙ୍କ ଭଣୋଇ । ଶିଳାଲେଖର ୪ର୍ଥ ଓ ୫ମ ଧାଡ଼ିର କେତେକ ଅକ୍ଷର ଅସ୍ପଷ୍ଟ । ପୁନଶ୍ଚ ତେନୋଟି (୮୪) ଶିଳାଲେଖ ତାମିଲ ଲିପି ଓ ଭାଷାରେ ରାଜେନ୍ଦ୍ର-ଚୋଳଙ୍କ ଦିଗ୍‌ବିଜୟ ବିଷୟ ବର୍ଣ୍ଣିତ । ଅନ୍ୟ ଦୁଇଟି ଶିଳାଲେଖ ଦକ୍ଷିଣ ନାଗରୀ ଲିପିର ଅଦ୍ୟାପି ଅପାଠ୍ୟ ଅବସ୍ଥାରେ ରହିଛି । ଏହି ବିଷ୍ଣୁ ମନ୍ଦିରରେ ଏହା ସୁରକ୍ଷିତ ।

---

(୩) ଲବ୍ଧ୍ୱା ସ୍ତମ୍ଭିକ ବହମେଣ ବିମଳାଦିତ୍ୟଂ କୁଳୁତେଶ୍ୱରଂ
ସର୍ବିହସ୍ତାଦ୍ରି ଲଙ୍ଘନ କଲିଙ୍ଗ ପଟ୍ଟଂ ନାମଧ—
(୪) [ତ୍ରୁ] କରେ ବାରଣା [ନ୍] ଦ୍ରୁ ଦଣ୍ଡପତଜ ଗର୍ବି କର୍ଯ୍ୟନୋ
ରାଜେନ୍ଦ୍ର ଚୋଳସ୍ୟ ସନ୍ଧ୍ୟା ପ୍ରାନ୍ତେ ଶିଖରେ
(୫) ବ୍ୟଧତ୍ତ ବିଜୟସ୍ତମ୍ଭଂ
(୬) ଢମ୍ମହେନ୍ଦ୍ରାଚଳେ [॥]

South Indian Inscription Vol V No. 1351, ARNO.386 of 1896. V. Rangacharya Ins. Madras I No. 425 Inscription of Orissa, Vol III Part I P. 34.

( A )

(୮୪) (୧) ନେସ୍ତମ ଏଶ୍ରି
(୨) (ମ) ହେନ୍ଦ୍ର
(୩) ସ୍ତୁ ଶ୍ରୀ ମ
(୪) ହେନ୍ଦ୍ରାସ୍ତିଂହ ନାଟ୍

( B )

(୧) ଶ୍ରୀ ମହା
(୨) ନାସ୍ଥାଗା ରାଜଶ୍ରେରି
(୩) ପଲ୍ଲବ ରସ୍ଥାନ ରାଜରାଜା
(୪) ମାରସ୍ଥାନ୍ ମହେନ୍ଦ୍ରନ୍
(୫) କୋଣ୍ଡାନ୍ ଓ୍ୱରଙ୍ଗ୍ ସମୁନ୍ତ୍ [ସାମୁଦ୍] ଓ୍ୱିଳି
(୬) ଓ୍ୱାରଣ ମାଲ୍ଲା

( C )

(୧) ଓ୍ୱିମଲ୍ଲ ଦର୍ଭୈୟନେ
(୨) ସ୍ତନ୍ କଲିଙ୍ଗୁତନ୍ତୁ ।

ରାଜରାଜ (୧ମ)ଙ୍କ ପରେ ତାଙ୍କ ପୁତ୍ର ରାଜେନ୍ଦ୍ର ଚୋଳ (ଖ୍ରୀ ୧୦୧୪ ରୁ ଖ୍ରୀ ୧୦୪୪) ଚୋଳ ରାଜ୍ୟର ଉତ୍ତରାଧିକାରୀ ହେଲେ । ଏହାଙ୍କ ସମୟରେ ମାଳୟ ଦ୍ୱୀପପୁଞ୍ଜ ଏହାଙ୍କ ଅଧିକାରରେ ଥିଲା । ସେ ତାଙ୍କର ତ୍ରୟୋଦଶ ରାଜ୍ୟାଂକରେ ଓଡ୍ର ବିଜୟ କରିଥିବା ଓ ଗୁରମ 'ଓଡ ବିଷୟ' 'ବା ଓଡ଼ିଶା' କୋଶଳନାଗ, ମହାକୋଶଳ 'ତଲବୃତ୍ତି ବା ଦଣ୍ଡଭୁକ୍ତି '(ମେଦିନୀପୁର ଅଧିକାର କରିଥିଲେ) । ସୋମବଂଶୀ ରାଜା ଇନ୍ଦ୍ରରଥ ଯଯାତି ନଗରରେ ପରାସ୍ତ ହୋଇ ଆତ୍ମସମର୍ପଣ କରିଥିଲେ । 'ଓଡ୍ର ଓ କୋଶଳ' ସମର୍ପିତ ହେଲା । (୮୫) ସେ ହିଁ ମହେନ୍ଦ୍ରରେ ବିଜୟ ସ୍ତମ୍ଭ ସ୍ଥାପନ କରିବା ପାଇଁ ପଲ୍ଲବ ରାଜବଂଶର ଡାୟାଦଙ୍କୁ ସେନାନାୟକ ହିସାବରେ ମହେନ୍ଦ୍ର ପଠାଇଥିବା ଓ ସେ ଉପରକୁ ପାଦରେ ଗୁଡ଼ିଯାଇ ନପାରି (ଏରି) ହାତୀ ସାହାଯ୍ୟରେ ଉଠିଥିବା ଅସମ୍ଭବ ହୋଇନପାରେ ।

ରାଜେନ୍ଦ୍ର ଚୋଳଙ୍କ ଶାସନ ସମ୍ବନ୍ଧରେ ଇତିହାସରେ ଯାହା କୁହାଯାଉ ପଛକେ; ମହେନ୍ଦ୍ରଗିରିର ତାମିଲ୍ ଶିଳାଲେଖ ଯେ ଓଡ଼ିଶା ଇତିହାସ ଆଲୋଚନାର ମୁଖ୍ୟ ଭୂମିକା ଗ୍ରହଣ କରିବ ଏହା ସୁନିଶ୍ଚିତ ।

ଦାକ୍ଷିଣାତ୍ୟର ଚୋଳ ଓ ଚାଳୁକ୍ୟ ରାଜାମାନଙ୍କ ସଙ୍ଗେ ଗଙ୍ଗ ବଂଶ ରାଜାମାନଙ୍କର ଯୁଦ୍ଧ ବିରହ ବାରମ୍ବାର ଘଟୁଥିଲା । ମାତ୍ର ଗଙ୍ଗମାନେ ନିଜ ବିକ୍ରମରେ ଆପଣାର ସ୍ୱାଧୀନତା ରକ୍ଷା କରିବାକୁ ସମର୍ଥ ହୋଇଥିଲେ । ଶେଷକୁ ଚୋଳ ରାଜ୍ୟର ରାଜା ରାଜେନ୍ଦ୍ର ଚୋଳ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ବଙ୍ଗ ଦେଶ ପର୍ଯ୍ୟନ୍ତ ଜୟ କରିଥିଲେ । ସେତେବେଳେ ଗଙ୍ଗମାନେ ରାଜେନ୍ଦ୍ର ଚୋଳଙ୍କ ଅଧୀନସ୍ଥ ହୋଇ ରହିଥିବା ଯଥେଷ୍ଟ ସମ୍ଭାବନା ରହିଛି । ତଥାପି ଗଙ୍ଗବଂଶର ପରାକ୍ରମ ପରବର୍ତ୍ତୀ ଶାସନରେ ଦେଖିବାକୁ ମିଳେ । ରାଜେନ୍ଦ୍ର ଚୋଳଙ୍କ ଶାସନ କ୍ଷଣ ସ୍ଥାୟୀ ଥିଲା । ତାଙ୍କ ପରେ ଚୋଳପ୍ରଭାବ ହ୍ରାସ ପାଇ ଚୋଳରାଜ୍ୟ ସଙ୍କୁଚିତ ହୋଇଗଲା । ଏସବୁର ପରାକ୍ରମ ମହେନ୍ଦ୍ରର ଶକ୍ତି ଅଟେ । କାମାର୍ଣ୍ଣବ, ବଜ୍ରହସ୍ତ, ଅନନ୍ତବର୍ମାଦେବଙ୍କ ପରାକ୍ରମ ଉତ୍କଳ

---

No. 1352. AR.No.397 of 1896, South Indian Inscription Vol V. Rangacharyas Vol I

ପାଠଟୀକା : ଶ୍ରୀ ମହାନାୟକ ରାଜେନ୍ଦ୍ରଚୋଳ ପଲ୍ଲବ ରାଜରାଜ ମହାରାୟାନ୍ ମହେନ୍ଦ୍ରଗିରିତ୍ତିରୁ କୋଣ୍ଡାନ୍ ଓ୍ୱିକ୍କୁ ଶମ୍ଭମ୍ ଓ୍ୱିଟ୍ଟି ଓ୍ୱାରଣ ମାଲ୍ଲା ନୈୟୁମ୍ ଏରି ମହେନ୍ଦ୍ରତ୍ତିଲ ଜୟସିଂହ ନାଟ୍ ।

[ଶ୍ରୀ ଶ୍ରୀନିବାସ ଆୟାଙ୍ଗାର, ସାମ୍ପାଦକ, ବ୍ରହ୍ମପୁର]

(୮୫) Hist. of Orissa : Dr. H. K. Mahatab, Vol I. Page. 153.

ଇତିହାସକୁ ରୁଦ୍ଧିମନ୍ତ କରିଛି । ସେତେବେଳେ ଖିମଣ୍ଡି କହିଲେ ଗଞ୍ଜାମ ଜିଲ୍ଲାର ମାଳ ଅଞ୍ଚଳ (ପାରଳା, ବଡଖେମଣ୍ଡି, ସାନଖେମଣ୍ଡି )ଖଣ୍ଡକୁ ବୁଝାଉଥିଲା । (୮୬) ସେତେଦୂର ସମ୍ଭବ ରାଜେନ୍ଦ୍ର ଚୋଳ ହିଁ ପରବର୍ତ୍ତୀ ଗଙ୍ଗ ଶାସକଙ୍କୁ ସତର୍କ କରାଇ ଦେଇ ଚାଲିଗଲେ । ସେହି ଯୁଦ୍ଧ ବିଜୟର କାର ସ୍ମାରକୀ ଉନ୍ନ ସ୍ତୂପ ବିଜୟସ୍ତମ୍ଭ ଓ ଗ୍ରୀଷ୍ମ, ବର୍ଷା, ଶୀତାଦିରେ କ୍ଷୟାବଶେଷ ଶିଳାଲିପି, ସେହି ଯୁଧିଷ୍ଠିର ମନ୍ଦିର ଅଦ୍ୟାପି ମୂକସାକ୍ଷୀ ଭାବେ ଦଣ୍ଡାୟମାନ

**ପରବର୍ତ୍ତୀ ଗଙ୍ଗ ଶାସନକାଳରେ ମହେନ୍ଦ୍ରର ଭୂମିକା :**

ପୂର୍ବ ଗଙ୍ଗବଂଶାବଳୀ ପୂର୍ବରୁ ପ୍ରଦତ୍ତ । ବର୍ତ୍ତମାନ ବଜ୍ରହସ୍ତଙ୍କଠାରୁ ପରବର୍ତ୍ତୀ ଗଙ୍ଗ ଆରମ୍ଭ ଯାଏ ବିଭିନ୍ନ ବୃତ୍ତ ତାଲିକା ଥିଲେ ମଧ୍ୟ ସେଥିରୁ ସଂକ୍ଷେପରେ କ୍ରମରେ ପ୍ରଦତ୍ତ ହେଲା । (୮୭)




ପୂର୍ବଗଙ୍ଗମାନେ ଓଡିଶା ସହିତ ସେତେ ସମ୍ପୃକ୍ତ ନଥିଲେ । ସେମାନଙ୍କ ଶାସନ ଆନ୍ଧ୍ରରେ ସୀମିତ ଥିଲା । (୧୦୭୭—୧୧୪୭) ଚୋଡଗଙ୍ଗଦେବ ରାଜତ୍ୱରେ ଓଡ଼ିଶାରେ ଗଙ୍ଗବଂଶ ରାଜତ୍ୱର ପ୍ରତିଷ୍ଠା । ଚୋଡ଼ଗଙ୍ଗ ଦେବଙ୍କଠାରୁ ଗଙ୍ଗରାଜାଙ୍କ ୧୫ ପଡ଼ଯାଏ ୩୨୫ ବର୍ଷ ଶାସନ ସମୟ ଧାର୍ଯ୍ୟ ହୋଇଛି । ଖ୍ରୀ: ୧୧୩୫ (ଅର୍ଥାତ୍ ଯୁଗାବ୍ଦ ୩୯୫୯) ଅବରେ ଚୋଡ଼ଗଙ୍ଗଦେବ ନଗରୀ କଟକ ମୁଖଲିଙ୍ଗଠାରୁ ରାଜଧାନୀ ବାରାଣସୀକୁ ଉଠାଇ ନେଲେ । ବର୍ତ୍ତମାନର କଟକ ପୂର୍ବେ ରାଜଧାନୀ ଥିଲା । ଲିଙ୍ଗରାଜ ମନ୍ଦିର ଓ କପିଳାସ ଶିଳାଲେଖ ଅନୁଯାୟୀ ଚୋଡ଼ଗଙ୍ଗଦେବଙ୍କ ରାଜ୍ୟର ପରିସର

---

(୮୬) ଉତ୍କଳ ଇତିହାସ : କୃପାସିନ୍ଧୁ ମିଶ୍ର, ପୃ-୯୩

(୮୭) History of Orissa : Dr. K. Ch. Panigrahi, Page 153.

ଉତ୍ତରରେ ଗଙ୍ଗାନଦୀ, ଦକ୍ଷିଣରେ ଗୋଦାବରୀ ନଦୀ, ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ପୂର୍ବଘାଟ ପର୍ବତମାଳା ରହିଲା । ରାଜସ୍ୱ ଆଦାୟ କରିବା ରାଜ୍ୟମାନେ ହେଲେ ଦକ୍ଷିଣ କୋଶଳ, ଆନ୍ଧ୍ର, ଖିମିଣ୍ଡି ଓ ଲଞ୍ଜିନା । ଏହି ରାଜ୍ୟମାନଙ୍କ ମଧ୍ୟରେ ମହେନ୍ଦ୍ରଗିରି ଅବସ୍ଥିତ । ମହେନ୍ଦ୍ର ସ୍ଥିତ ଗୋକର୍ଣ୍ଣେଶ୍ୱର ସମ୍ମୁଖସ୍ଥ ଦୁଇଟି ଶିଳାଲେଖ ଏହାଙ୍କ ରାଜତ୍ୱ କାଳର । ଦକ୍ଷିଣ ପାର୍ଶ୍ୱସ୍ଥ ଶିଳାଲେଖା ଶକାବ୍ଦ ୧୦୪୫ (ଖ୍ରୀ ୧୧୨୩) ତେଲୁଗୁ ଲିପି ଓ ତେଲୁଗୁ-ସଂସ୍କୃତ ମିଶ୍ରଣ ଭାଷାରେ ଲକ୍ଷ୍ମୀଧରାର୍ଯ୍ୟ ନାମକ ଜଣେ ବ୍ରାହ୍ମଣ ଗୋକର୍ଣ୍ଣେଶ୍ୱରଙ୍କ ପାଇଁ ଅଖଣ୍ଡ ଦୀପଦାନ ବ୍ୟବସ୍ଥା କରିଛନ୍ତି । (୮) ବାମ ପାର୍ଶ୍ୱସ୍ଥ ଶିଳାଲେଖ (ଶକାବ୍ଦ ୧୦୫୫-ଖ୍ରୀ: ୧୧୩୩)ରେ (ତେଲୁଗୁ ଲିପି ଓ ଭାଷାରେ) ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଳମ୍ ନିକଟବର୍ତ୍ତୀ ଆର୍ଯ୍ୟାଭଟ୍ଟିର ଜନୈକ ବାସିନ୍ଦା

---

(୮) (ଓଁ) । ସ୍ୱସ୍ତି (।।) ଶକାବ୍ଦକୁ ୨ଲୁ ୧୦୪୫ ଗୁନେଣ୍ଟ ୩ ଶ୍ରୀ ମାଲୁ (ନ) ଲକ୍ଷ୍ମୀଧର୍‌—୪ ର୍ୟ୍ୟ (ସ୍ତ) କଲ ଗୁଣ—୫ ନିଧି (ସ୍ତ୍ର)ବ ସଂପନ୍ନୁ ସ—୬ ମି (ମ୍) ଦ୍ରୋ ଦୀପଂ ପ୍ରଦା (ଦ) (ଶ)—୭ ତଂ ନିପୁର ବଜଇ (ସ୍ୱୀ) ୮ ନେ ଶ୍ରୀ ମହେନ୍ଦ୍ର ଶ୍ୱରସ୍ୟ (।।) । ୯ ଶ୍ରୀମନ୍ ନାରାୟଣସ୍ୟ ଦ୍ୱି– ୧୦ ଜ କୁଲ ତିଲକୋ······ଗୋତ୍ର— ୧୧ ସ୍ୟ (ପ୍ରୌ)ତ୍ର (:) ଶାକାବେଦମେ—୧୨ ଘନାକେ ପ୍ରଥିତ ନି (ପୁ) (ଥ୍ୟ)—୧୩ ଯଶୋ ଦେବବର୍ମସ୍ୟ ପୁ—୧୪ ପୁତ୍ରଃ । (ଦୀ) ଦୀନଂ ତରଲାନ୍ ୧୫ ବାରୁ ନଡ଼ ପଙ୍କଳ—୧୬ ବାରୁ ଶ୍ରୀ (।।) ।

ଟୀକା—ଏହି ଗଙ୍ଗ ରାଜାମାନେ ପୂର୍ବଗଙ୍ଗ ସମସ୍ତରୁ ଏହି ନିମ୍ନୋକ୍ତ ପ୍ରଶସ୍ତି ଗୃହୀତହି ବର୍ଷରୁ ଉର୍ଦ୍ଧ୍ୱସମସ୍ତ ବ୍ୟବହାର କରୁଥିଲେ । (ମୁଖଲିଙ୍ଗମରୁ କଟକ ଯିବା ପର୍ଯ୍ୟନ୍ତ) ମହେନ୍ଦ୍ରାଚଳାମଳ କନକ ଶିଖର ପ୍ରତିଷ୍ଠିତସ୍ୟ ସଚରାଚର ଗୁରୋ-ସ୍ସକଲ ଭୁବନ ନିର୍ମାଣୈକ ସୂତ୍ରଧାରସ୍ୟ ଶଶାଙ୍କଶେଖରସ୍ୟ ଶ୍ରୀ ଗୋକର୍ଣ୍ଣେଶ୍ୱର ଭଟ୍ଟାରକସ୍ୟ·······"

ଉପରୋକ୍ତ ତରଲା ମହେନ୍ଦ୍ର ପାଦଦେଶରେ ପଲସା ରେଲଓ୍ୱେ ନିକଟର ତରଲାକୁ ବୁଝାଏ ।

Script Telugu. Language. Tel and Sank. S. I. I. Vol V No. 1349 A. R. No. 394 of 1 : 9 C Ranga Charyas Vol I P 710, Ganjam No. 423. Ins. Orissa No. 81 Page 92. Vol. III Part I.

ଗୋକର୍ଣ୍ଣେଶ୍ୱରଙ୍କୁ ଅଖଣ୍ଡ ଦୀପଦାନ ପାଇଁ ବ୍ୟବସ୍ଥା କରିଛନ୍ତି । (୮୯) ଉପରୋକ୍ତ ଶିଳାଲେଖରେ ଗୋକର୍ଣ୍ଣେଶ୍ୱରଙ୍କୁ ମହେନ୍ଦ୍ରେଶ୍ୱର କୁହାଯାଇଛି । ଅନେକ ତାମ୍ରପଟ୍ଟ ଓ ଶିଳାଲେଖ ଖଣ୍ଡବିଖଣ୍ଡିତ ହୋଇ ଇତସ୍ତତଃ ପଡ଼ିରହିଛି । ଗଙ୍ଗାବ୍ଦ ୧୬୮ରୁ ଗଙ୍ଗାବ୍ଦ ୫୨୬ ସମସ୍ତ ଦାନ ପଟ୍ଟାବଳୀରେ ପ୍ରଥମେ ଗୋକର୍ଣ୍ଣେଶ୍ୱରଙ୍କୁ ପ୍ରଣାମ ଜଣାଇ ଦାନପଟ୍ଟାବଳୀ ଅର୍ପିତ; ସେହି ଗୋକର୍ଣ୍ଣେଶ୍ୱର ଚୋଡ଼ଗଙ୍ଗ ଦେବଙ୍କୁ କିଷ୍ଟ ତରୂପେ ଆକୃଷ୍ଟ କରିଥିବ ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ । କାରଣ କଳିଙ୍ଗ ଦେଶ ନୃପତି ଚୋଡ଼ଗଙ୍ଗ ଦେବଙ୍କୁ ହସ୍ତୀ ଓ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରିଥିଲେ । (୯୦)

ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱକାଳରେ ୧୮୮ ଗୋଟି ଅଭିଲେଖର ନିଦର୍ଶନ ମିଳେ । ସେଗୁଡ଼ିକ ମଧ୍ୟରେ ମୁଖଲିଙ୍ଗମ୍, ଦ୍ରାକ୍ଷାରାମ, ସୀମାଚଳ, ନୀଳକଣ୍ଠେଶ୍ୱର, ମହେନ୍ଦ୍ରଗିରି ପ୍ରଧାନ । (୯୧)

---

(୮୯) (ଓଁ) । ସ୍ୱସ୍ତି (॥) ସ (ଶ) କ ବରୁଷ ୨ (-) ଗୁଂ (ଗୁ) ଲୁ ୧୦୫୫ ନେଣ୍ଟୁ ୩ ଶ୍ରୀ ମଦନ (୦) ତଂ (ତ) ବର୍ମ୍ମ ୪ ଶ୍ରୀ ଚୋଡଗଙ୍ଗ ଦେବ ୫ ରବିଜୟରାଜ୍ୟ ସ (ଂବ) ତ୍ସ (ର) ୬ ଲୁ (୦) ଶ୍ରାହ୍ୱ କନ୍ୟର୍କି (କୁ) ଶୁଦ୍ଧେ ୭ ଚମିସୁ ବୁଧବାରମୁ ୮ ନବ୍ୟତୀପାତ ନମିତ୍ୟ (ଉ) ମ୍ ୯ ନପ୍ରସ ବେନ୍ଗି ମେଡ଼ପୋଲୁ ୧୦ (ଗି) ଦସୁ (ଣ୍ଡ୍ରଦମକ ଧ (ର୍ମ୍ମା) ୧୧ (ର୍ଥ୍ୟମ୍ ନ ବାଣ ସ୍ତିତଂଡ଼ୁ ୧୨ ଶ୍ରୀ କରଣ ଶ୍ରୀମନାଭ ଥ) । ୧୩ ଏତ୍ତୁ ଶ୍ରୀ ମହେନ୍ଦ୍ରମୁ ୧୪ ନ ଗୋକର୍ନେ (ର୍ଣ୍ଣେ)ଶ୍ୱର ଦେବର (୧୫) କ୍ ସ୍ୱା (ଆ) ଚଂଦ୍ରାକ୍କମ୍ (୧୬ ନକ୍ଷ (ଅ) ଖଣ୍ଡ ବର୍ତ୍ତିଇ ୧୭ ଦୀପମୁ ନଡ଼ପ (ଚେ) ୧୮ ଡ଼ି କାଂଚୁଲ ବସମୁ ୧୯ ନ' ବେଟ୍ଟୁ ମାଡ଼ ୫ ଲୁ (॥)

Script. Tel Lang. Tel. South Indian Inscription Vol. V No. 1350 AR No. 395 of 1896 Rangacharyas Vol I. P. 710 Ganjam No. 424
Inscription of Orissa No. 143. Page 159 Vol. III Part I

(୯୦) "ନବନବତି ସହସ୍ର କୁଞ୍ଜରାଧୀଶ୍ୱର ତ୍ରିକଳିଙ୍ଗାଧିପତି ଗଙ୍ଗାନ୍ୱୟାବ ଲମ୍ବନ ସ୍ତମ୍ଭ ଶ୍ରୀ ଚୋଡଗଙ୍ଗ ଦେବ ।"
ରେଣାଙ୍କି ଶିଳାଲେଖ —
ଓଡ଼ିଶାର ଇତିହାସ : ଡ଼ ମହତାବ ପୃ ୧୮୦ S..I. V No. 1347

(୯୧) Hist of Orissa : Dr. H. K. Mahtab, Vol. P. 191

ଚୋଡ଼ଗଙ୍ଗ ଦେବ ତାଙ୍କ ପିତାଙ୍କଠାରୁ ଅର୍ଥାତ୍ ରାଜରାଜଙ୍କ ଠାରୁ ତାଙ୍କ ମୃତ୍ୟୁ ପରେ ପ୍ରାପ୍ତ କଳିଙ୍ଗ ରାଜ୍ୟର ସୀମା ପୂର୍ବରେ ସମୁଦ୍ର, ପଶ୍ଚିମରେ ଝିଟିଡ଼ି, କୋଶଳ, ଉତ୍ତରରେ ରୁଷିକୁଲ୍ୟା ଓ ଦକ୍ଷିଣରେ ସୀମାଚଳ ପର୍ବତ ଥିଲା । ଖ୍ରୀ: ୧୨୭୩ ଚତୁର୍ଥ ନରସିଂହ ଦେବଙ୍କ ଦ୍ୱାରା ପ୍ରଦତ୍ତ କେନ୍ଦୁଲି ତାମ୍ରଶାସନରୁ ଜଣାଯାଏ ତାହା ଗଙ୍ଗାଠାରୁ ଗୋଦାବରୀଯାଏ ସ୍ଥିର ହୋଇ ରହିଛି । ଚୋଳଗଙ୍ଗ ଦେବ ଉତ୍କଳ ସିଂହାସନ ଆରୋହଣ କରିବା ସଙ୍ଗେ ସମଗ୍ର ପ୍ରାଚୀନ କଳିଙ୍ଗ ଉତ୍କଳ ନାମରେ ଅଭିହିତ ହେଲା । ଏହି ଶାସନର ଉତ୍କଳର ଧାରାବାହିକ ରାଷ୍ଟ୍ରୀୟ ଇତିହାସକୁ ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ବଞ୍ଚାଇ ରଖିପାରିଥିଲା । (୯୨) ପ୍ରକାଶଥାଉ କି ନରସିଂହ ଦେବଙ୍କଠାରୁ ଓଡ଼ିଶା ରାଜାଙ୍କ ଗଜପତି ଉପାଧି ବ୍ୟବହାର ଆରମ୍ଭ ହେଲା ।

ଚୋଡ଼ଗଙ୍ଗ ଦେବଙ୍କ ପରେ ତୃତୀୟ ଭାନୁଦେବଙ୍କ ଶାସନ ପର୍ଯ୍ୟନ୍ତ ଶାସନମାନଙ୍କ ସମସ୍ତ କାର୍ଯ୍ୟକଳାପ ପୁରୀ, ଭୁବନେଶ୍ୱରରେ ହିଁ ଆବଦ୍ଧ ହୋଇ ରହିଲା । ପାରିକ ବୀରର ଆବାସ ମହେନ୍ଦ୍ରଗିରିକୁ ଅବହେଳା ପ୍ରଦର୍ଶନ କରାଗଲା । ମୁଖଲିଙ୍ଗମ୍‌ର କଳାକୃତି ଓ ମହେନ୍ଦ୍ରର କଳାକୃତିର ଉତ୍ତର ଓଡ଼ିଶାରେ ପ୍ରଭାବ ପକାଇଲା । ତୃତୀୟ ଭାନୁଦେବଙ୍କ ପ୍ରଦତ୍ତ ଶିଳାଲେଖ (ମହେନ୍ଦ୍ର ପାଦସ୍ଥିତ 'ପୁଟ୍ଟେଶ୍ୱର' ମନ୍ଦିର ଗାତ୍ରରେ ଖୋଦିତ)ରୁ ଜଣାଯାଏ ଯେ ତୃତୀୟ ଭାନୁଦେବ ରହିତ ଗ୍ରାମରୁ କିଛି ଅଂଶ ମନ୍ଦିର ପାଇଁ ପ୍ରଦାନ କରିଛନ୍ତି । (୯୩) ତତ୍କାଳୀନ ସର୍ବ୍ୟନାରାୟଣ ରାଜଗୁରୁ ଏହି ପୁଲିଙ୍ଗ (ପୁଟ୍ଟେଶ୍ୱର) ନିକଟରେ ଦନ୍ତଗଡ଼ ଥିଲା । ଏଠାରେ ଥିବା ବାରୁଆ (ବରୁଣ ବନ୍ଦର) ମହେନ୍ଦ୍ରତନୟା ନଦୀ ମୁହାଣ ଏକ ପୋତାଶ୍ରୟ ଓ ସୁଦୂର ବାଲି, ଜାଭା ଇତ୍ୟାଦି ମାଳୟ ଦ୍ୱୀପପୁଞ୍ଜ ସହିତ

---

(୯୨) ଉତ୍କଳ ଇତିହାସ : କୃପାସିନ୍ଧୁ ମିଶ୍ର, ପୃ ୯୩

(୯୩) ପୁଟ୍ଟେଶ୍ୱର ଶିଳାଲେଖ :

୧) ଶ୍ରୀଶ୍ରୀ କଳିଯୁଗ ଗତେ ୪୪୬୬

୨) ଶ୍ରୀ ବୀର ଭାନୁଦେବଙ୍କ ୬୯ ଶ୍ରାଙ୍କ

୩) ମକର ଶୁକ୍ଳ ୧୪ ଭ୍ରା (ଭାନୁ) ବାରେ ଦନ୍ତଗଡ଼ସ୍ଥ

୪) ରହିତ ଗ୍ରାମ ଭାଗ ୧୮ ଏ ପୁନି

୫) ପୌଣ ନମେ ଦେବ ଜେମା ? ବୈଷ୍ଣ

୬) ପଞ୍ଚ......୭..........୮.........

୯) .........ମ ଦେବ [—] ର ଶ୍ରୀ

J. A. HRS Vol, VI P. T. I. PP 51-52. Hist of Orissa: Dr. S. N. Rajguru, Page 77, and Hist. of Mahatab Part II P. 247.

ବାଣିଜ୍ୟ କାରବାର ଗଙ୍ଗ ଓ ଶୈଳୋଦ୍ଭବଙ୍କ ଶାସନ କାଳରୁ ପ୍ରସିଦ୍ଧି ଲାଭ କରିଥିଲା ।

ପ୍ରସିଦ୍ଧ ଗଙ୍ଗବଂଶର ଶେଷ ନରପତି ହୋଇଛନ୍ତି ଭାନୁଦେବ ୪ର୍ଥ ଜଣଙ୍କ ଭାନୁଦେବ (ଖ୍ରୀ: ୧୪୦୪-୧୪୩୫) । ଓଡ଼ିଶାରେ ମୁସଲମାନମାନଙ୍କ ଆକ୍ରମଣ ଓ ମନ୍ଦିରମାଳିନୀ ସାଂସ୍କୃତିକ ସ୍ଥଳମାନଙ୍କର ସୁରକ୍ଷା ନିମିତ୍ତ ଅକ୍ଳାନ୍ତ ସଂଘର୍ଷ ଇତ୍ୟାଦି ଉତ୍କଳ ଶାସନ ଆକାଶକୁ ତମିସ୍ରାରେ ଢାଙ୍କିଦେଲା । ଠିକ୍ ଏହି ପରିସ୍ଥିତିରେ ସୂର୍ଯ୍ୟବଂଶର ନରପତି କପିଳେନ୍ଦ୍ର ଦେବଙ୍କ ଆବିର୍ଭାବ ।

ଗୋପୀନାଥ ମନ୍ଦିରର ଶିଳାଲେଖ ପାଠକର M.M. ଚକ୍ରବର୍ତ୍ତୀ କହନ୍ତି—
"By the order of the Lord of Nilagiri (blue hill) (who is) the Lord of three world (Jagannatha), there was born in odradesa a king named Kapilendra, the ornament of the solar line". (94)

(94) Hist of Orissa : Dr K. Ch Panigrahi, Appendix-IV with reference to the Journal of the Asiatic Society of Bengal Vol LXIX, 1901 P. 175.

ଦନ୍ତଗଡ଼ର ଇତିବୃତ୍ତ

କଳିଙ୍ଗରାଜ ବ୍ରହ୍ମଦତ୍ତଙ୍କୁ ବୁଦ୍ଧଦେବଙ୍କର ଦନ୍ତଦନ୍ତ କ୍ଷେମ ନାମକ ଜଣେ ଶିଷ୍ୟ ଉପହାର ଦେଇଥିଲେ । ବ୍ରହ୍ମଦତ୍ତ ତାହା କଳିଙ୍ଗର ଗୋଟିଏ ନଗରସ୍ଥ ସ୍ତୂପରେ ସଂରକ୍ଷିତ କରିବା ଫଳରେ ସେହି ନଗରର ନାମ ଦନ୍ତପୁର ରଖାଗଲା । (Cambridge History of India Vol I PP 72-73) । ଆଲେକ୍‌ଜେଣ୍ଡାର କନିଂହାମ କହନ୍ତି, ତାହା ଆନ୍ଧ୍ର ପ୍ରଦେଶର ରାଜମହେନ୍ଦ୍ରୀଠାରେ ଥିଲା । (Geography of Ancient India, P.P. 592-596) । ପ୍ରଫେସର ସିଲଭାନ ଲେଭି ମତ ଦିଅନ୍ତି ତାହା ପାଲୁରୁ ଅଟେ ଯାହା ଟଲେମୀଙ୍କର (Ptolomy) ବର୍ଣ୍ଣିତ ପାଲୁରୁ ସଙ୍ଗେ ସମାନ । (La Geographic L. Inda VII-16) ନନ୍ଦଲାଲ୍ ଦେବଙ୍କ ମତାନୁସାରେ ତାହା ମେଦନୀପୁର ଜିଲ୍ଲାର ଦାନ୍ତନ୍‌ଠାରେ ଅବସ୍ଥିତ । (Geographical Dictionary of Ancient and Medieval India P. 53) ଜ. ଗ୍ରମଦାସ ଦନ୍ତଗଡ଼ ଶ୍ରୀକାକୁଲମ ନିକଟରେ ଖୋଜିବାକୁ ହେବ । ଆଉ ସୁବାରାଓ କହନ୍ତି ଦନ୍ତପୁର ଆଧୁନିକ ଶ୍ରୀକାକୁଲମଠାରୁ ପ୍ରାୟ ୫୨ ମାଇଲ ଦୂରରେ

## ସୂର୍ଯ୍ୟବଂଶ ଅଧୀନରେ ମହେନ୍ଦ୍ରଗିରି :

ସୂର୍ଯ୍ୟବଂଶର କପିଳା (୧୫) ନାମକ ଗରିବ ପିଲା ଜଗନ୍ନାଥଙ୍କ ଆଶୀର୍ବାଦରୁ କପିଳେନ୍ଦ୍ର ଦେବ ଉପାଧି ଧାରଣ କରି ଉତ୍କଳ ସିଂହାସନ ଆରୋହଣ କରିଥିଲେ । ଏହି ସମୟରେ ସମୁଦ୍ର ଉପକୂଳରୁ (ବିଜୟନଗର ସମ୍ରାଟ ଦେବରାୟ ୧୪୧୯-୧୪୪୯), ବାହ୍ମନୀ ସୁଲତାନ (ଆଲ୍ଲାଉଦ୍ଦିନ୍ ଅହମଦ ୧୪୩୬-୧୪୫୮) ବଙ୍ଗରାଜା ଇତ୍ୟାଦି ରାଜଶକ୍ତି ସଂଘର୍ଷ ଆରମ୍ଭ କରିଦେଇଥିଲେ । କପିଳେନ୍ଦ୍ର ଦେବ ନିଜ ବାହୁବଳରେ ରାଜ୍ୟ ଜୟକରି ପଦବୀ 'ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର' ଗ୍ରହଣ କରିଥିଲେ । ତାଙ୍କପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଓ ପରେ ପ୍ରତାପରୁଦ୍ର ଦେବ ପୁରୁଷାନୁକ୍ରମେ ରାଜ୍ୟ ଶାସନ କରିଥିଲେ ।

କପିଳେନ୍ଦ୍ର ଦେବଙ୍କ ଦକ୍ଷିଣାତ୍ୟ ଅଭିଯାନ କାଳରେ ମହେନ୍ଦ୍ର ଶିଖରର ଗିରିଦୁର୍ଗ ତାର ପାଦଦେଶକୁ ଘୁଞ୍ଚାଇ ଦିଆଗଲା । ଏହି ଦୁଇଗୋଟି ଗଡ଼ 'ମହେନ୍ଦ୍ର ଗଡ଼' ନାମରେ ମଞ୍ଜୁଷା ଓ ଚନ୍ଦ୍ରଗିରି ନିକଟରେ ଅବସ୍ଥିତ (୧୬) ଗିରିଦୁର୍ଗର ଭିତ୍ତିପ୍ରସ୍ତର

---

ଦନ୍ତବକ୍ରକୋଟ ନାମରେ ପ୍ରାଚୀନ ଦୁର୍ଗଠାରେ ଥିଲା । (J.B.O.R.S. Vol. XXI PP 137-138) । ପଣ୍ଡିତ ନୀଳକଣ୍ଠ ଏହାକୁ ପୁରୁଷୋତ୍ତମ କ୍ଷେତ୍ର ପୁରୀ ବୋଲି ଚିହ୍ନଟ କରିଛନ୍ତି (J.A.H.R.S. Vol II P. 23) ।

ଶଂସିତ ଶିଳାଲେଖ ପୁଟେଶ୍ୱର ମନ୍ଦିର ଗାତ୍ରରେ ଖୋଦିତ ତୃତୀୟ ଭାନୁଦେବଙ୍କ (ଖ୍ରୀ: ୧୩୩୬) 'ଦନ୍ତଗଡ଼ସ୍ଥ ରାଉତ ଗ୍ରାମ' ଓ ପୂର୍ବୋକ୍ତ ନିକଟରେ ମହେନ୍ଦ୍ରର ପାଦଦେଶରେ ରାଉତ ଗ୍ରାମ ଓ ମନ୍ଦିରର ପ୍ରାଙ୍ଗଣରେ ବୌଦ୍ଧ ବିଗ୍ରହ ଇତ୍ୟାଦିକୁ ଭିତ୍ତିକରି ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ବାରୁଆ ବନ୍ଦର ନିକଟରେ ଦନ୍ତଗଡ଼ର ଅବସ୍ଥିତି ସୂଚନା ଦିଅନ୍ତି । (ଓଡ଼ିଶାର ଇତିହାସ : ସତ୍ୟନାରାୟଣ ରାଜଗୁରୁ, ପୃ ୬୮ ଓ ୬୭)

କଳିଙ୍ଗ ପାଟଣା (ବନ୍ଦର ପେଟା = ବନ୍ଦର ପେଣ୍ଠ)ରେ ସୁରକ୍ଷିତ ବୌଦ୍ଧ ସ୍ତୂପ ଓ ଶାଳ ହୁଣ୍ଡୁମର ବିରାଟ ବୌଦ୍ଧ ସ୍ତୂପ ଦେଖିଲେ ଦନ୍ତଗଡ଼ର ସ୍ଥିତି ଦୃଷ୍ଟ । ପୂର୍ବେ ଏହି ବନ୍ଦରରୁ ରେଙ୍ଗୁନ ଓ ମାଳୟ ଦ୍ୱୀପପୁଞ୍ଜ ସହିତ ବାଣିଜ୍ୟ କାରବାର ଚାଲୁଥିଲା । ଅଦ୍ୟାପି ସେହି ବନ୍ଦରର ଚିହ୍ନ ଦୃଷ୍ଟିଗୋଚର ହୁଏ ।

(୧୫) ମାଦଳା ପାଞ୍ଜିର କାଶିଆ କପିଳାଭଟ । Hist of Orissa : K. Ch. Panigrahi Appendix IV

(୧୬) ଦକ୍ଷିଣ ଓଡ଼ିଶାର ପର୍ଯ୍ୟଟନ ପୀଠ—ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ଉତ୍କଳ ପ୍ରସଙ୍ଗ ।

ଅଦ୍ୟାପି ଦୃଷ୍ଟ । ୧୪୭୦ରେ ଗଜପତି ପୁରୁଷୋତ୍ତମ ଦେବ କାଞ୍ଚି ଅଭିଯାନ କାଳରେ ମହେନ୍ଦ୍ର ପର୍ବତର ପାଦଦେଶରେ ଖିଲେଇ ଗ୍ରାମ ଓ ତନ୍ନିକଟସ୍ଥ ମାଣିକପାଟଣା ଗ୍ରାମ ସେହି ଜଗନ୍ନାଥ ଓ ବଳଦେବଙ୍କୁ ଖିରି ଦହି ଖିଲେଇବା ପ୍ରବାଦ ଅଦ୍ୟାପି ଦୃଷ୍ଟ । ମହେନ୍ଦ୍ରାଚଳ ସମେତ ଗଞ୍ଜାମ ପୁରୁଷୋତ୍ତମ ଦେବଙ୍କ ଆନୁଗତ୍ୟ ସ୍ୱୀକୃତ । ସାବା ଗ୍ରାମର ଶ୍ରୀ ଜଗନ୍ନାଥ ତେଞ୍ଚି ମିଶ୍ରି ମନ୍ଦି । ମହେନ୍ଦ୍ରଗିରି ଆରୋହଣ ପୂର୍ବରୁ ସାବା ଜଗନ୍ନାଥଙ୍କୁ ଦର୍ଶନ କରିଥାଆନ୍ତି । ପୁରୁଷୋତ୍ତମ ଦେବ ବିଭିନ୍ନ ସ୍ଥାନରେ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରିଯାଇଥିଲେ । ଟେକଲିର କାଷ୍ଠ ନିର୍ମିତ ଶ୍ରୀ ଜଗନ୍ନାଥ ମଧ୍ୟ ଅନ୍ୟତମ । ଏହି ସମୟରେ ପାରଳା ଅଞ୍ଚଳରେ ପ୍ରତିଷ୍ଠିତ ଅସଂଖ୍ୟ ରାଧାକୃଷ୍ଣ ମନ୍ଦିର ଗଜପତି ପ୍ରତାପରୁଦ୍ର ଦେବଙ୍କ ଆଗମନ (୧୪୧୭)ର ସୂଚନା । ସେତେବେଳେ ମହେନ୍ଦ୍ରଗିରିର ଚତୁଃପାର୍ଶ୍ୱ ମୁଖରିତ ହେଲା ଶ୍ରୀକୃଷ୍ଣ ଚୈତନ୍ୟଙ୍କ ଆଧ୍ୟାତ୍ମିକ ଭାବଧାରାରେ । ପ୍ରତାପରୁଦ୍ରଙ୍କ ପରେ ମୁକୁନ୍ଦଦେବଙ୍କ ରାଜତ୍ୱକାଳରେ ୧୫୬୦ ସମୟରେ କଳାପାହାଡ଼ର ନେତୃତ୍ୱରେ ଓଡ଼ିଶାର ଦେବଦେବୀ ଧ୍ୱଂସ ପ୍ରାପ୍ତ ହେଲେ । ଶ୍ରୀକାକୁଳମର ରାଜା ନୀଳକଣ୍ଠଙ୍କ ସହିତ ଯୁଦ୍ଧ, ପ୍ରଥମଥର ଜୟଯୁକ୍ତ ଓ ପରେ ନିହତ ଇତ୍ୟାଦି ଘଟଣା ଘଟିବା ପରେ ୧୫୭୧ ବେଳକୁ ସମଗ୍ର ଦକ୍ଷିଣ ଓଡ଼ିଶା ଶ୍ରୀକାକୁଳମଠାଏ ସୁଲତାନଙ୍କ ଅଧୀନକୁ ଚାଲିଗଲା । (୧୭) କହିବା ବାହୁଲ୍ୟ ମାତ୍ର—ମହେନ୍ଦ୍ରଗିରି ହସ୍ତୀଦୁର୍ଗ ଓ ଗିରିଦୁର୍ଗର ଅବହେଳା ଓ ଗୋକର୍ଣ୍ଣେଶ୍ୱରଙ୍କ ନିରାଜନାର ଅଭାବରେ ଉତ୍କଳ ନରପତିଙ୍କ ପତନ ଘଟିଲା ।

## ମହେନ୍ଦ୍ରାଞ୍ଚଳର ବିଭକ୍ତିକରଣ ଓ ଶାସନର ବିକେନ୍ଦ୍ରୀକରଣ :

"କପିଳେନ୍ଦ୍ର ଦେବଙ୍କ ସିଂହାସନ ଆରୋହଣକାଳୀନ ଉପାଧିହେଲା "ଗଜପତି ଗୌଡେଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର" ପୂର୍ବଗଙ୍ଗ ଏହି ଉପାଧି ଗ୍ରହଣ କରିନଥିଲେ । କିନ୍ତୁ ନରସିଂହ (୧ମ) ଗୌଡ଼େଶ୍ୱର ଉପାଧି ନେଇଥିଲେ । କପିଳେନ୍ଦ୍ର ଦେବ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ଅଧିକାର କରିଥିବା ଇତିହାସରୁ ପ୍ରମାଣ ମିଳେ । ପାରଳାଖେମୁଣ୍ଡିରୁ ଅନତିଦୂରରେ ନୀଳକଣ୍ଠେଶ୍ୱର ମନ୍ଦିର ଶିଳାଲେଖ ଏହାର ପ୍ରମାଣ ଦିଏ । ଏହି ସମୟରେ କେତେକ ଗ୍ରାମକୁ ନେଇ ଏକ ମୁଠା ଓ କେତେକ ମୁଠାକୁ ନେଇ ଏକ ତାଲୁକ ଗଠିତ ହୋଇଥିଲା । ଏହି ମୁଠାମାନଙ୍କ ମଧ୍ୟରେ ମହେନ୍ଦ୍ରଗିରି ଅଞ୍ଚଳ ନିମ୍ନଲିଖିତ ମୁଠାର ଅଧୀନ ଥିଲା । (୧) ରୁମ୍ଭା, (୨) ଜଲନ୍ତର, (୩) ବୁଡ଼ାରସିଂ,

(୧୭) ବୈଷ୍ଣବ ଧର୍ମର ଅନୁପ୍ରବେଶ ଓ ଅଭ୍ୟୁତ୍ଥାନ—ପଣ୍ଡିତ ସତ୍ୟରାଜ ଆଚାର୍ଯ୍ୟ ଶର୍ମା
D.S.S. P. 17

୪) ସାବା, ୫) ଲବଣ୍ୟଗଡ଼, ୬) ଗଣ୍ଡାହାଟି, ୭) କଇଁପୁର, ୮) ଜିରଙ୍ଗ, ୯) ନାରାୟଣପୁର, ୧୦ ରାୟଗଡ଼ । ଏଗୁଡ଼ିକ ମଧ୍ୟରୁ ପୂର୍ବଦିଗେ ଦକ୍ଷିଣରେ ୩, ପଶ୍ଚିମରେ ୧, ଉତ୍ତରରେ ୧, କେନ୍ଦ୍ରରେ ୨, ମହେନ୍ଦ୍ର ଅଂଚଳରେ ବିଭିନ୍ନ ରାଜାଙ୍କ ଅଧୀନରେ ଶାସିତ ହେଉଥିଲା । ତାହା ନବମଠାରୁ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଗୋଟିଏ ଦଳେ ନ ଗୋଟି ଗଡ ଅନ୍ୟଦଳେ ୫ଟି (ଏଥିରେ ଅଜୟଗଡ଼, ସେରଙ୍ଗ, ଗୁମ୍ମାଯୋଗ ହେବ) ଗଡ଼ ଧାରାବାହିକ ଭାବେ ଶାସିତ ହୋଇ ଆସୁଥାଏ । ତାହା ବୋଧହୁଏ ଚୂଡ଼ଗଙ୍ଗ ଭାନୁଦେବଙ୍କ ପରେ ମଧ୍ୟ ସେହିଭଳି ରହିଥିଲା । ଏ ସଂକ୍ରାନ୍ତରେ ନିମ୍ନଲିଖିତ ମତ ଦ୍ରଷ୍ଟବ୍ୟ ।

"Mahendra Bhogo Vishaya of the time of Mathara kings of Kalinga was in course of time divided into five tribal vishayas, such as Jeerango, Koinpur, Lahuniagodo, Rayagado, Narayanapur, each being under a vishoyi. In the 9th or 10th century AD. All these five parts were governed by some Khsetriya Princes who belonged to the Kadamba Princes entitled Ranaka and "Panchavishaydhipati" from their inscriptions we get the following names Dharmakhedi, Nagakhedi, Udayakhedi etc.

In the 15th century A.D. when Kapilendradeva of the solar dynasty had firmly established his rule in Orissa, the boundaries of these fire Vishayas weie re-organised and transformed into fire small principalities (Zamindaries) (1) Tekkali (2) Tarala (3) Buddharsingi (4) Manjusha (5) Jalantara. Mahendra divided into two parts (1) Kalinga Ganga area South, (2) Svekallganga area North (98)

ଏହାଦ୍ଧି ପରବର୍ତ୍ତୀ ସମୟରେ ଏଠାର ସମସ୍ତ ପାଇକଙ୍କୁ ଏକଜୁଟ ହେବାପାଇଁ ସାହସ କମିଗଲା ଓ ପ୍ରତାପରୁଦ୍ରଙ୍କ ସମୟରେ ପଞ୍ଚଦଣ୍ଡୀ ଦେବାପାଇଁ ବାଧ୍ୟ ହେଲେ ।

---

(98) Pride of Eastern Chats b) OFS Page 109. Ref. article of Dr. S. N. Rajguru.

## ମୋଗଲ ମରହଟ୍ଟା ବ୍ରିଟିଶ୍ ଆକ୍ରମଣରେ ମହେନ୍ଦ୍ରଗିରିର ଦୁର୍ଗତି :

୧୯୧୪ରେ ମହେନ୍ଦ୍ରଗିରିର ଶିଖର ଓ ମନ୍ଦିର ଭଗ୍ନାବସ୍ଥା ଦର୍ଶନ କରି କବିଶେଖର ଚନ୍ଦ୍ରମଣି ଏସବୁ କଳାପାହାଡ଼ ଓ ତାଙ୍କ ଅନୁଚରଙ୍କ କାମ ବୋଲି କହିଛନ୍ତି । (୯୯)

ମୋଗଲମାନେ ଓଡ଼ିଶାରେ ୧୭୫ ବର୍ଷ ରାଜତ୍ୱ କଲାପରେ ମରହଟ୍ଟାମାନେ କ୍ଷମତାକୁ ଆସିଲେ । ୧୭୫୫ ଖ୍ରୀ:ରେ ନବାବ ଅଲିବର୍ଦ୍ଦି ଖାଁ ଏକ ଚୁକ୍ତିଦ୍ୱାରା ଓଡ଼ିଶାର ଗୋଟିଏ ଅଂଶକୁ ନାଗପୁର ଭୋଁସଲଙ୍କୁ ହସ୍ତାନ୍ତର କରିଦେଲେ ଓ ମେଦିନୀପୁର ଅଞ୍ଚଳକୁ ନିଜ ଶାସନରେ ରଖିଲେ । ଏହି ସମୟରେ ମହେନ୍ଦ୍ରାଞ୍ଚଳ ସମେତ ଦକ୍ଷିଣ ଓଡ଼ିଶାର ଗଞ୍ଜାମ, ଚିକାକୋଲ, ଭିଇଜାଗପଟ୍ଟମ୍ ଅଂଚଳ ଗୋଲକୁଣ୍ଡା ସୁଲତାନଙ୍କ ଅଧିକୃତ ହେଲା । ସୁଲତାନ ଇଛାପୁରକୁ କେନ୍ଦ୍ର କରି ମହେନ୍ଦ୍ରାଞ୍ଚଳ ନିଜତତ୍ତ୍ୱାବଧାନରେ ରଖିଲେ । ମହେନ୍ଦ୍ରାଞ୍ଚଳ ଇଚ୍ଛାପୁର ଯାଏ କର୍ଣ୍ଣାଟକ ଯୁଦ୍ଧ ଫଳରେ ଇଂରାଜୀ ଇଷ୍ଟଇଣ୍ଡିଆ କଂପାନୀ ଅଧୀନକୁ ଆସିଲା । ଏମାନେ ସୈନିକବାସ ପାଇଁ ମହେନ୍ଦ୍ର-ଗିରିକୁ ସ୍ଥିରକଲେ । ବାରମ୍ବାର ବିଶୃଙ୍ଖଳା ହେବା ଫଳରେ ଏହି ସୈନିକବାସ ସିମଲକୁ ସ୍ଥାନାନ୍ତର କଲେ । ବ୍ରିଟିଶ୍ ଶାସକମାନେ ଏହି ବିସ୍ତୃତ ଓଡ଼ିଆ ଅଞ୍ଚଳକୁ ଭାଙ୍ଗିଦେଇ ବଙ୍ଗଳା, ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ବିହାରରେ ମିଶାଇ ଦେଲେ । ଏହି ଥର ଓଡ଼ିଆର ଦୁର୍ଗ ମହେନ୍ଦ୍ରଗିରି ଦାସତ୍ୱ ବନ୍ଧନରେ ରହିଲା । ମହେନ୍ଦ୍ରଗିରି ୧୮୦୩ ମସିହାରୁ ୧୯୩୬ରେ ଓଡ଼ିଶା ପ୍ରଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ମାନ୍ଦ୍ରାସ ପ୍ରେସିଡ଼େନ୍ସିରେ ରହିଲା ।

ଓଡ଼ିଆ ଶାସକଙ୍କ ବିପର୍ଯ୍ୟୟ ଓ ସାମ୍ରାଜ୍ୟର ପତନ ପରେ ପରେ ପଡ଼ୋଶୀ ରାଜ୍ୟମାନଙ୍କ ସାଂସ୍କୃତିକ ତାଡ଼ନା ଫଳରେ ଓଡ଼ିଆ ନିଜ ସତ୍ତା ହରାଇଲା । ଏହି ମହେନ୍ଦ୍ରାଞ୍ଚଳର ଅବସ୍ଥା ୧୭୭୬ରୁ ୧୮୦୩ ଯାଏ ଓ ୧୮୦୩ରୁ ୧୮୩୪ ଯାଏ, ପାରଳା ଘୁମୁସରର ରକ୍ତପାତ ସହିତ ଜଡ଼ିତ ରହି ତାର ପୂର୍ବ ପାଇକ ବଂଶଧର (ଯେଉଁମାନେକି ସଂଗ୍ରାସବାଦୀ ହିସାବରେ ପରିଗଣିତ ହେଲେ)ଙ୍କୁ ଆଶ୍ରୟ ଦେଲା । ଅନେକ ଥର ଏଠାରେ ଆତ୍ମଗୋପନ କଲେ । ୧୭୬୭ରେ ପାରଳା ଗଜପତି ନାରାୟଣ ଦେବ ଇଂରେଜମାନଙ୍କ ବଶତା ସ୍ୱୀକାର କଲେ ନାହିଁ ଇଂରେଜ କମ୍ପାନୀ ପାରଳା ରାଜାଙ୍କ ବିରୁଦ୍ଧାଚରଣ କଲେ (୧୦୦) ଏହାର ପ୍ରତିବାଦରେ ନବଗଡ଼ ଦୁର୍ଗ ବଶୋସ୍ୱୀଙ୍କ ସହିତ ଇଂରେଜ ସୈନ୍ୟଙ୍କ ସଂଗ୍ରାମ ଚାଲିଲା । ଗଡ଼ଦୁର୍ଗର ଶକ୍ତି ଛିନ୍ନ କରିବା ପାଇଁ ବ୍ରିଟିଶ୍ ସରକାର ନବଗଡ଼

---

(୯୯) ମହେନ୍ଦ୍ର କାବ୍ୟ : କବିଶେଖର ଚନ୍ଦ୍ରମଣି ।
(୧୦୦) ଓଡ଼ିଶାର ରାଜନୈତିକ ଇତିହାସ : ଶ୍ରୀ ବଳରାମ ମହାନ୍ତି, ପୃ ୩୯

ଦୁର୍ଗକୁ ନିଜର ପଲିଟିକାଲ ଏଜେଣ୍ଟ ଦ୍ୱାରା ଶାସନ ଚଳାଇଲେ । ଗଞ୍ଜାମ ଏଜେନ୍‌ସି ମହାରାଜାଙ୍କଠାରୁ ଅଲଗା ହେବା ଦେଖି ଘୋର ବିପ୍ଳବ ହେଲା । (ଏହା ସ୍ୱତନ୍ତ୍ର ପ୍ରସଙ୍ଗ ଅଟେ) ଗୌରଚନ୍ଦ୍ର ଗଜପତିଙ୍କ ପୁତ୍ର କୃଷ୍ଣଚନ୍ଦ୍ର ଗଜପତି ଶାନ୍ତି ସ୍ଥାପନା କରିଥିଲେ (୧୮୬୯) । (୧)

ମହେନ୍ଦ୍ରଗିରି ପାଶ୍ଚାତ୍ୟ ଶାସକମାନଙ୍କଦ୍ୱାରା ଶୈଳନିବାସ ରୂପେ ବ୍ୟବହୃତ ହେଉଥିବା ସମୟରେ ମଧ୍ୟ ତାର ଆଧ୍ୟାତ୍ମିକ ଆକର୍ଷଣ ଅକ୍ଷୁଣ୍ଣ ରହିଥିଲା । ଏଠାରେ ଶୈବ, ଶାକ୍ତ, ବୈଷ୍ଣବ ଓ ଅବଧୂତମାନଙ୍କର ସମାଗମ ଯୁଗେ ଯୁଗେ ଅବ୍ୟାହତ । ଏ ବିଷୟରେ ପରବର୍ତ୍ତୀ ପର୍ଯ୍ୟାୟରେ ସବିଶେଷ ଆଲୋଚନା କରାଯାଉଛି । ତେବେ ମହେନ୍ଦ୍ରଗିରିରେ ବିଭିନ୍ନ ରାଜବଂଶର ଶାସକଙ୍କ କୀର୍ତ୍ତିକଳାପ ସମ୍ପର୍କରେ ଆଲୋଚନା ବିନା ଏହାର ଐତିହାସିକ ଭୂମିକା ଅପୂର୍ଣ୍ଣ ରହିଯିବାର ସମ୍ଭାବନା ଦୃଷ୍ଟିରୁ ଏଠାରେ ତାହାର କିଞ୍ଚିତ୍ ଆଭାସ ଦେବା ଉଚିତ ମନେହୁଏ ।

## (ଖ) ବିଭିନ୍ନ ଶାସକଙ୍କ କୀର୍ତ୍ତିରାଜି

### (୧) ଗୁପ୍ତଯୁଗୀୟ କୀର୍ତ୍ତି :

ମହେନ୍ଦ୍ରାଞ୍ଚଳରେ ବର୍ତ୍ତମାନ ଯେଉଁ କେତୋଟି ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ଓ କେତେକ ଅକ୍ଷତ ମନ୍ଦିର ପ୍ରାଚୀନ କୀର୍ତ୍ତିର ଧ୍ୱଜା ବହନ କରିଛି, ସେଗୁଡ଼ିକ ମଧ୍ୟରେ ଶିଖର ପ୍ରଦେଶରେ ଅବସ୍ଥିତ (୧) ଭୀମଦେଉଳ (୨) ଯୁଧିଷ୍ଠିର ମନ୍ଦିର (୩) ଗୋକର୍ଣ୍ଣେଶ୍ୱର ମନ୍ଦିର ପ୍ରଧାନ । କିନ୍ତୁ ଏ ତିନୋଟି ମନ୍ଦିରର ଗଠନ ପ୍ରଣାଳୀରେ ବୈଷମ୍ୟ ପରିଲକ୍ଷିତ ହୁଏ । ଗୋକର୍ଣ୍ଣେଶ୍ୱର ମନ୍ଦିରର ଗଠନ ପ୍ରଣାଳୀ ଓ କାରୁକାର୍ଯ୍ୟ ଏକାମ୍ରତୀର୍ଥର ଲିଙ୍ଗରାଜ ମନ୍ଦିର ସଦୃଶ । ଯୁଧିଷ୍ଠିର ମନ୍ଦିରର ଗଠନ ପ୍ରଣାଳୀ ସୌରାଷ୍ଟ୍ରର ବା ଭୁବନେଶ୍ୱରର ପର୍ଶୁରାମେଶ୍ୱର ମନ୍ଦିର ଭଳି ଏବଂ ଭୀମଦେଉଳ ଗୁପ୍ତଯୁଗୀୟ କଳାର ନିଦର୍ଶନ ।

ଓଡ଼ିଶାର ସ୍ଥାପତ୍ୟ ଓ କଳାକୃତି ଦୃଷ୍ଟିରୁ ଆଦିମ ଯୁଗରୁ ଅର୍ଥାତ୍ ଅତି ପୁରାତନ ପଦ୍ଧତିରେ ନିର୍ମିତ ଗୁମ୍ଫା ସଦୃଶ ମନ୍ଦିରମାନ ମଧ୍ୟ ମହେନ୍ଦ୍ର ଶିଖରରେ ଦୃଷ୍ଟିଗୋଚର ହୁଏ । (ଭୀମଦେଉଳ ଚିତ୍ର ନଂ ୫ ଦ୍ରଷ୍ଟବ୍ୟ) ଏଗୁଡ଼ିକ ମଧ୍ୟରେ ଭୀମ ମନ୍ଦିର ପ୍ରଧାନ । ଏହି ମନ୍ଦିରରେ ବିଶାଳ ଶିଳାମାନ (ଗ୍ରାନାଇଟ୍ ପଥର) ଗୋଟିକ ପରେ ଗୋଟିଏ ଖଞ୍ଜା ଏବଂ ସେ ଗୁଡ଼ିକ କାରୁକାର୍ଯ୍ୟବିହୀନ । ସେଥିରେ କେତେକ

---

(୧) ଓଡ଼ିଶାର ରାଜନୈତିକ ଇତିହାସ—ଶ୍ରୀ ବଳରାମ ମହାନ୍ତି, ପୃ ୩୯

ରେଖାହିଁ ପରିଦୃଷ୍ଟ ହୁଏ । ସର୍ବୋପରି ମନ୍ଦିର ଚୂଡ଼ାରେ ଗୋଟିଏ ଆମଳକ ଶିଳା ଶୋଭାପାଏ । ସେହି ଅଁଳାଶ୍ରୀରେ ମଧ୍ୟ ରେଖା ବ୍ୟତୀତ ଅନ୍ୟ କାରୁକାର୍ଯ୍ୟ ଦୃଶ୍ୟମାନ ହୁଏ ନାହିଁ । ଏହି ମନ୍ଦିରର ଉଚ୍ଚତା ପ୍ରାୟ ୨୫ ଫୁଟ । ଏଥିରେ ବ୍ୟବହୃତ ବୃହତ୍ତମ ପ୍ରସ୍ତର ଖଣ୍ଡଟିର ଦୈର୍ଘ୍ୟ ୯ ଫୁଟ, ପ୍ରସ୍ଥ ପ୍ରାୟ ୪ ଫୁଟ ଏବଂ ଘନତା ୩ ଫୁଟ ଅର୍ଥାତ୍ ଏହା ୧୦୦ ଘନ ଫୁଟବିଶିଷ୍ଟ ଏକ ବିଶାଳ ଶିଳାଖଣ୍ଡ । ଭୀମ କଜେ ଲିଙ୍ଗ ସ୍ଥାପନପୂର୍ବକ ପୂଜାର୍ଚ୍ଚନା କରୁଥାନ୍ତି ବୋଲି ଏହି ଲିଙ୍ଗର ନାମ ଭୀମେଶ୍ୱର ଅଟେ । ମନ୍ଦିରର ପଛପଟେ ଯେଉଁ ଫାଟ ଅଛି, ସେହି ବାଟଦେଇ ପାପୀମାନେ ଯାଇପାରନ୍ତି ନାହିଁ ବୋଲି କିମ୍ବଦନ୍ତୀ ରହିଛି ।

ପୃଥିବୀରେ ଯଦି ସପ୍ତାଶ୍ଚର୍ଯ୍ୟ ପରେ କୌଣସି ଅଷ୍ଟାଶ୍ଚର୍ଯ୍ୟ ସ୍ଥାନ ପାଇଥାଏ, ତେବେ ତାହାପାଇଁ ଭୀମଦେଉଳକୁ ଗ୍ରହଣ କରାଗଲେ ଅଯୌକ୍ତିକ ହେବନାହିଁ । ଏହାହିଁ ଗବେଷକଙ୍କର ଗବେଷଣାର ସାମଗ୍ରୀ ଅଟେ । ପୃଥିବୀର ଯାତ୍ରୀମାନଙ୍କ ପାଇଁ ଏ ମନ୍ଦିରର ଗଠନ ପ୍ରଣାଳୀ, କୌଶଳ ଏକ ଆହ୍ୱାନ । ଏହି ମନ୍ଦିରଟି ସର୍ବମୋଟ ଊଣେଇଶି ଗୋଟି ପଥରରେ ନିର୍ମିତ ଏବଂ ଏଥିରେ ଚୂନ ବା ଅନ୍ୟ କୌଣସି ପ୍ରଲେପ ବ୍ୟବହୃତ ହୋଇନାହିଁ । ମନ୍ଦିର ଚୂଡ଼ାକୁ ଲକ୍ଷ୍ୟକରି ଐତିହାସିକମାନେ ଏହି ମନ୍ଦିରର କଳା ଗୁପ୍ତଯୁଗରେ ଗଠିତ ବୋଲି ମତ ଦିଅନ୍ତି । ବର୍ତ୍ତମାନ ମନ୍ଦିର ମଧ୍ୟରେ ଶିବଲିଙ୍ଗ ରହିଛନ୍ତି ମାତ୍ର ପାର୍ଶ୍ୱଦେବ ବିଗ୍ରହ ନାହାନ୍ତି । ଏହାର ନିର୍ମାଣ ବରଂ ଅପୂର୍ଣ୍ଣ ଶିଖର ଦେଉଳ ଓ ଗୁପ୍ତଯୁଗରେ ନିର୍ମିତ ବୋଲି କୁହାଯାଇ ପାରିବ ।

ଏହି କ୍ଷୁଦ୍ର ମନ୍ଦିରର ଗଠନ ପ୍ରଣାଳୀ ଗୁପ୍ତଯୁଗରେ ଏ ଅଞ୍ଚଳରେ ଅନୁସୃତ ହେଉଥିଲା । ଗବେଷକଙ୍କ ମତରେ ଏ ଧରଣର ଆଉ ଗୋଟିଏ ମନ୍ଦିର ଅବିଭକ୍ତ କୋରାପୁଟ ଜିଲ୍ଲାନ୍ତର୍ଗତ ପଡ଼ୁପୁର ଗ୍ରାମ ନିକଟସ୍ଥ ଜଗମଣ୍ଡା ପାହାଡ଼ ଉପରେ ଦେଖିବାକୁ ମିଳେ (୧) କିନ୍ତୁ ଏହି ମନ୍ଦିରଟି ନଅଗୋଟି ଶିଳାରେ ନିର୍ମିତ । ଏଠାରେ ନୀଳକଣ୍ଠେଶ୍ୱର ଶିବ ଅଛନ୍ତି । (ପ୍ଲେଟ ୧.୨) ତୁଳନାରୁ ଜଣାଯାଏ ଯେ ଜଗମଣ୍ଡା ପାହାଡ଼ ସ୍ଥିତ ମନ୍ଦିରଟି ପରବର୍ତ୍ତୀ ୭ମ ଶତାବ୍ଦୀରେ ନିର୍ମିତ । କାରଣ ଏଥିରେ ଚକ୍ରକଟ ଶିଳା ବ୍ୟବହୃତ ହୋଇଛି । (ପରବର୍ତ୍ତୀ ଅଧ୍ୟାୟରେ ସୂଚିତ)

ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତାନୁଯାୟୀ ପ୍ରାଚୀନ ଗୁପ୍ତକାଳୀନ କୃତି ଗଞ୍ଜାମ ଜିଲ୍ଲାର ମହେନ୍ଦ୍ର ପର୍ବତରେ ଶିଖର କିମ୍ବା ରେଖା ମନ୍ଦିର ଦେଖିବାକୁ ମିଳେ । ମହେନ୍ଦ୍ରଗିରିର ସ୍ଥାପତ୍ୟର ଧ୍ୱଂସାବଶେଷ ଭାରତବର୍ଷର ପ୍ରାଚୀନ ଗୁପ୍ତକାଳୀନ

---

(୧) ମଞ୍ଜୁଷା ପାଠାଗାର ସ୍ମରଣିକା, ୧୯୭୭

ମନ୍ଦିର ନିର୍ମାଣ ପଦ୍ଧତିର ଆଦ୍ୟରୂପ ଭାବରେ ପରିଚିତ । ଯେଉଁ ଭାସ୍କର୍ଯ୍ୟ ଓ କଳାବିଜ୍ଞାନ କ୍ଷୁଦ୍ର ପ୍ରସ୍ତର ନିର୍ମିତ ମନ୍ଦିର ମହେନ୍ଦ୍ରଗିରି ଶିଖର ପ୍ରଦେଶରେ ପରିଦୃଷ୍ଟ ତାହା ଶିଖର ଶ୍ରେଣୀର ନୁହେଁ । ଏହା ଗୋଟିଏ ବିଶାଳ ଶିଳାଦ୍ୱାରା ଆଚ୍ଛାଦିତ ପ୍ରସ୍ତର ନିର୍ମିତ କୁଠି ମାତ୍ର । ଏହା ପୂର୍ବ ଗୁପ୍ତକାଳୀନ କଳାର ନିଦର୍ଶନ (୧) ଅର୍ଥାତ୍ ୪ର୍ଥ ଶତାବ୍ଦୀର କଳାକୃତି ବୋଲି ସମସ୍ତ ଐତିହାସିକ ଏକମତ ହୁଅନ୍ତି ।

ଗୋକର୍ଣ୍ଣେଶ୍ୱର ଦେଉଳ ଭୀମଦେଉଳ ନିମ୍ନରେ ଅବସ୍ଥିତ । ଯଥାର୍ଥରେ ସମୁଦ୍ରଗୁପ୍ତଙ୍କ ଅଭିଯାନ ଫଳରେ ଗୁପ୍ତଯୁଗୀୟ ସ୍ଥାପତ୍ୟ କଳା କଳିଙ୍ଗ କଳାର ପ୍ରଭାବରେ ଏକ ନୂତନ ରୂପରେ ପରବର୍ତ୍ତୀ ଗଙ୍ଗଯୁଗରେ ଆତ୍ମପ୍ରକାଶ କଲା ଯାହାର ନମୁନା ଗୋକର୍ଣ୍ଣେଶ୍ୱର ଓ ଯୁଧିଷ୍ଠିର ମନ୍ଦିର । (୨)

(୬) ମାଠରବଂଶୀୟ କୀର୍ତ୍ତି :

ମହେନ୍ଦ୍ରଗିରିରେ ଗୁପ୍ତଯୁଗୀୟ ଶାସକମାନଙ୍କର ଶୈବକୀର୍ତ୍ତି ସଙ୍ଗକୁ ସମକାଳୀନ ମାଠରମାନଙ୍କ ସେଠାରେ ବିଷ୍ଣୁ ବିଗ୍ରହ ଓ ହନୁମାନ ବିଗ୍ରହ ପ୍ରତିଷ୍ଠା ଏହି କ୍ଷେତ୍ରର ଆଧ୍ୟାତ୍ମିକ ଉତ୍କର୍ଷର ଯେଉଁ ଅଭିବୃଦ୍ଧି ସାଧନ କରିଛି ତାହା ନିତାନ୍ତ ପ୍ରଣିଧାନଯୋଗ୍ୟ ।

---

(୧) ଓଡ଼ିଶାର ଇତିହାସ : ଡ଼କ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପୃ-୩୭୧

"The small stone temple representing the shrine of Bhima still to be found on the top of Mahendra Mountain in the Ganjam District is devoid of sculptures, but it is not a Sikhara temple. It is a flat roofed stone structure built with no circumbulary covered path to be generally seen in the early Gupta temple."

The Cult of Jagannath : Page 6. Dr K.Ch. Mishra with reference to ଓଡ଼ିଶାର ଦେବଦେବୀ, ପୃ-୧୧

କିଟ୍ଟୋ ୧୮୩୮ରେ ଓ ଖ୍ରୀ ୧୯୧୮ରେ କବିଶେଖର ଚିନ୍ତାମଣିଙ୍କ ମନ୍ତବ୍ୟ ।

(୨) (କ) ଓଡ଼ିଶାର ଇତିହାସ : ଡକ୍ଟର ହରେକୃଷ୍ଣ ମହତାବ, ପୃ-୨୩୫

(ଖ) I T.D.A Souvenir, Parlakhemundi 83, Page 49.

(ଗ) ଉତ୍କଳର ପ୍ରାଚୀନକୀର୍ତ୍ତି : ଫଲ୍‌ଗୁ ପୃ-୨୦

ମହାରାଜା ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ଅଭିଯାନର ଅଳ୍ପ କାଳପରେ କଳିଙ୍ଗର ମାଠର (ପିତୃଭକ୍ତ) ବଂଶୀୟ ରାଜାମାନେ ପ୍ରାଧାନ୍ୟ ବିସ୍ତାର କଲେ । ଏମାନେ ତୃତୀୟ ବା ଚତୁର୍ଥ ଶତାବ୍ଦୀରୁ ଆରମ୍ଭ କରି ପ୍ରାଚୀନ ଗଙ୍ଗବଂଶୀୟ ରାଜାମାନେ ଏହି ଅଞ୍ଚଳକୁ ଆସିବା ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ବଂଶର ମହାରାଜା ଉମାବର୍ମା ଏବଂ ଭେଙ୍ଗିର ଶାଳଙ୍କାୟନ ବଂଶୀ ଶାସକମାନେ କ୍ଷୁଦ୍ରକ୍ଷୁଦ୍ର ରାଜ୍ୟରେ ପରିଣତ ହୋଇଥିବା କଳିଙ୍ଗକୁ ଅଧିକାର କରି ନିଜକୁ କଳିଙ୍ଗାଧିପତି ଆଖ୍ୟାଦେଇ ଶାସନ କରିବାକୁ ଲାଗିଲେ । ପାରଳାଖେମୁଣ୍ଡି ନିକଟସ୍ଥ କର୍ଣ୍ଣିଶ୍ରୀ ତାମ୍ରଶାସନରୁ ଜଣାଯାଏ ଯେ ମାଠରବଂଶର ରାଜାମାନେ ଶାସନ ଦାନ କରୁଥିଲେ । ଏହି ବଂଶର ଉମାବର୍ମାଙ୍କ ପରେ ଅନନ୍ତବର୍ମା ମଧ୍ୟ ବ୍ରାହ୍ମଣମାନଙ୍କ ପ୍ରତି ଉଦାରଭାବ ଦେଖାଇଥିଲେ । ତା ପରେ ଚଣ୍ଡବର୍ମା ପରମ ଭାଗବତ ଅର୍ଥାତ୍ ବୈଷ୍ଣବ ଧର୍ମାବଲମ୍ବୀ ଥିବା ପ୍ରମାଣ ମିଳେ । ଗୁପ୍ତବଂଶର ରାଜାମାନେ ମଧ୍ୟ ପରମ ଭାଗବତ ରୂପେ ପରିଚିତ ହୋଇଥିବା ଜଣାଯାଏ । ମହେନ୍ଦ୍ରର ଗୋକର୍ଣ୍ଣେଶ୍ୱର ମନ୍ଦିର ସମୁଖସ୍ଥ ବିଷ୍ଣୁ ଓ ବାରେଶ୍ୱର ଶିବ ତଥା ଚତୁର୍ଭୁଜ ବିଷ୍ଣୁ ଓ ବାସୁଦେବଙ୍କର ପ୍ରତିମା ଦେଖିଲେ ଯଥାର୍ଥରେ ମନେହୁଏ ଏହା ମାଠର ବଂଶ ରାଜତ୍ୱ ସମୟର କୀର୍ତ୍ତି । (ଚିତ୍ର ନଂ ୧୨ ଓ ୧୩) ଏହା ଭାଗବତ ଧର୍ମର ପ୍ରତୀକ । ଏହାକୁ ଶାଶ୍ୱତ ଧର୍ମ କୁହାଯାଉଥିଲା । (୧)

ଭେଙ୍ଗିର ରାଜାମାନେ ମାତୃଭକ୍ତ । ପିତୃଭକ୍ତ ମାଠର ବଂଶୀୟ ରାଜାମାନେ କଳିଙ୍ଗର ରାଜାମାନଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରିଥିବା ହେତୁ ମହେନ୍ଦ୍ରରେ ଶିବ ଓ ଶକ୍ତିଙ୍କର ପୂଜା ପ୍ରଚଳନ ଥିବା ନିଃସନ୍ଦେହରେ କୁହାଯାଇପାରେ । ଏମାନେ ନିଜକୁ ପରମ ଭାଗବତ ଓ ପରମ ଦୈବତ ଭାବରେ ପରିଚିତ କରାଇଥିବା ଦୃଷ୍ଟିରୁ, ଯେହେତୁ 'ଦୈବତ' ପଦ ସୂର୍ଯ୍ୟଙ୍କ ପ୍ରତି ପ୍ରଯୁଜ୍ୟ, ତେଣୁ ବିଷ୍ଣୁ ମନ୍ଦିର ସାମନାରେ ଥିବା 'ସପ୍ତଅଶ୍ୱ ଚାଳିତ ଭଗ୍ନ ସୂର୍ଯ୍ୟ ବିଗ୍ରହ' (ଚିତ୍ର ୧୭) ନିଶ୍ଚିତ ରୂପେ ଏହି ମାଠର ବଂଶୀୟ ରାଜାମାନଙ୍କର କୀର୍ତ୍ତି ଅଟେ । ନାଗାର୍ଜୁନୀ କୋଣ୍ଡାରୁ ପ୍ରାପ୍ତ ଖ୍ରୀ:ଅ: ତୃତୀୟ ଶତାବ୍ଦୀର ଏକ ଅଭିଲେଖରେ ନାରାୟଣଙ୍କୁ ପରମଦେବ ଆଖ୍ୟା ଦିଆଯାଇଛି । ଏଭଳି ଏକ ନାରାୟଣ ବିଗ୍ରହ ମହେନ୍ଦ୍ରଗିରିରେ ମଧ୍ୟ ପୂଜିତ । ସେଥିରୁ ପ୍ରମାଣିତ ହୁଏ ଯେ ମାଠର ବଂଶୀୟ ରାଜାମାନେ ନାରାୟଣଙ୍କ ସଙ୍ଗେ ସଙ୍ଗେ ସୂର୍ଯ୍ୟୋପାସକ ମଧ୍ୟ ଥିଲେ । ଏହି ବିଗ୍ରହ ତନୋଟିକୁ ଲକ୍ଷ୍ୟକରି ଶକ୍ତି ବର୍ମାଙ୍କର ଅନ୍ଧବରମ୍ ତାମ୍ରଶାସନକୁ ବିଚାର କଲେ ସେଥିରେ ଉଲ୍ଲିଖିତ "କମଳ ନିଳୟାକାନ୍ତ ବକ୍ଷସ୍ତ ନାରାୟଣ ସ୍ୱାମୀନଃ ପାଦଭକ୍ତଃ" ପଦାବଳୀରୁ ମାଠରବଂଶୀୟ ରାଜାମାନେ ଲକ୍ଷ୍ମୀନାରାୟଣଙ୍କୁ ଇଷ୍ଟଦେବତା ରୂପେ ଗ୍ରହଣ କରି ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିବାର ପ୍ରମାଣ ମିଳେ ।

---

(୧) ଓଡ଼ିଶାର ଇତିହାସ : ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପୃ-୨୦୭

ଏ ସମ୍ପର୍କରେ ପଦ୍ମଶ୍ରୀ ରାଜଗୁରୁ କହନ୍ତି "କାଳକ୍ରମେ ସେହି ଶାବର ପ୍ରତିଷ୍ଠିତ ଦାରୁବିଗ୍ରହଙ୍କୁ ମାଠରବଂଶୀୟ ରାଜାମାନେ ପୁରୁଷୋତ୍ତମ ନାରାୟଣ ରୂପେ ପୂଜା କରୁଥିଲେ ତାହା ପରବର୍ତ୍ତୀ ଗଙ୍ଗବଂଶୀୟ ଶୈବ ରାଜାମାନଙ୍କ ଦ୍ୱାରା ଗୋକର୍ଣ୍ଣେଶ୍ୱର ଶିବ ମୂର୍ତ୍ତିରେ ପରିଣତ ହେଲେ ।" ପ୍ରାଚୀନ ପ୍ରଥାରେ ଧର୍ମ ରାଜାନୁଗତ ଥିଲା । ରାଷ୍ଟ୍ର ଦେବତାଙ୍କୁ ପୂଜା ଆରାଧନା ଅନିବାର୍ଯ୍ୟ । ତେଣୁ ରାଷ୍ଟ୍ରଦେବତାଙ୍କୁ ବିଭିନ୍ନ ନାମରେ ପୂଜା କରିବା ଦେଖାଯାଏ । (୧)

ବିଷ୍ଣୁ ବିଗ୍ରହ ୧.୩୦ m × ୪୫ cum ଓ ନୀଳମାଧବ (୦.୮୫ cum × ୩୫ cum) ବର୍ତ୍ତମାନ ସୁରକ୍ଷିତ । ନାରାୟଣ ବିଗ୍ରହ ଭଗ୍ନାବସ୍ଥା, ମନ୍ଦିର ମଧ୍ୟ ଭଗ୍ନାବସ୍ଥାରେ ରହିଛି ।

ବିଷ୍ଣୁ ମନ୍ଦିର ସମ୍ମୁଖରେ ଥିବା ହନୁମାନ ମୂର୍ତ୍ତି ଏହି ମାଠର ବଂଶୀୟ କୃତ । ଏହିପରି ମହାରାବଣ ବଧ ସୂଚକ ହୋଇଥିବା ଗୋଟିଏ ବୃଶଫୁଟ ଉଚ୍ଚତାବିଶିଷ୍ଟ ହନୁମାନ ବିଗ୍ରହ "ପାଧିକରାସ୍ତ ସ୍ୱାମୀ" (ଚିତ୍ର ୧୫) ହିସାବରେ କୋଷର୍ଣ୍ଣା ନିକଟବର୍ତ୍ତୀ ପାଟକୁଟ ଗଡ଼ (ପାଟିକୋଟା) ନିକଟରେ ପୂଜିତ ହୁଅନ୍ତି । ଏହା ବ୍ୟତୀତ ପାରଲା ସହରର ନଅ ଗୋଟି ହନୁମାନ ଓ ପାର୍ଶ୍ୱବର୍ତ୍ତୀ ମହେନ୍ଦ୍ରାଞ୍ଚଳରେ ପ୍ରାୟ ଏକୋଇଶିଟି ବିଗ୍ରହ ପ୍ରାଚୀନ କଳାକୃତିର ନିଦର୍ଶନ ହେଲେ ମଧ୍ୟ ଅଦ୍ୟାପି ପୂଜାପାଇ ଆସୁଛନ୍ତି । ଭକ୍ତମଣ୍ଡଳୀ ତର୍ଜନୀ ହନୁମାନ ବୋଲି ନାମକରଣ କରିଥାଆନ୍ତି, ମନୋବାଞ୍ଛା ପୂର୍ଣ୍ଣ ନିମିତ୍ତ ସ୍ୱତନ୍ତ୍ର ଦିବସ ଓ ସନ୍ଧ୍ୟାମାନଙ୍କରେ ପୂଜାର୍ଚ୍ଚନା ହୁଏ । ଅଷ୍ଟଫର କଥା ଏଠାରେ ତନ୍ତ୍ର ପୂଜା ସହିତ ପଶୁବଳୀ ମଧ୍ୟ ଦିଆଯାଇଥାଏ । ତତ୍ ନିକଟବର୍ତ୍ତୀ ମର୍କଣ୍ଡା ଗ୍ରାମରେ 'ମର୍କଣ୍ଟେଶ୍ୱର' ମଧ୍ୟ ଈଶ୍ୱର ଲିଙ୍ଗ ରୂପରେ ପୂଜା ପାଆନ୍ତି । ଏହିଭଳି ଗୋଟିଏ ବିରାଟ ପ୍ରସ୍ତର ଖିମଦେଉଳ ନିକଟରେ ଓ ମହେନ୍ଦ୍ରରେ ହନୁମାନ ଖୋଲ ନିକଟରେ ପୂଜା ପାଆନ୍ତି ।

ମାଠର ରାଜବଂଶ ପରେ ଗଙ୍ଗବଂଶୀ ଶାସକମାନେ ଶୈବ ଓ ବୈଷ୍ଣବ ଉପାସନା ଲାଗି ଏଠାରେ ମନ୍ଦିରମାନ ନିର୍ମାଣ କରି ମହେନ୍ଦ୍ରଗିରିର ମହତ୍ତ୍ୱକୁ ଦୀପ୍ତିମନ୍ତ କରିଛନ୍ତି ।

### (୩) ଗଙ୍ଗବଂଶୀୟ କୀର୍ତ୍ତି :

ଉତ୍କଳର ଗୌରବ ଓ କଳାର ଉତ୍କର୍ଷ ତଥା ସମୃଦ୍ଧ ସଂସ୍କୃତିର ପ୍ରମାଣ ଯୋଗାଏ ଓଡ଼ିଶାର ମନ୍ଦିରମାଳା । ମହେନ୍ଦ୍ରର ପ୍ରାଚୀନ କଳାକୃତି ଗୋକର୍ଣ୍ଣେଶ୍ୱର

---

(୧) ଓଡ଼ିଶାର ଇତିହାସ : ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପୃ-୨୧୭

ମନ୍ଦିର ଶ୍ୱେତକ ଗଙ୍ଗଙ୍କ ସମୟରେ ନିର୍ମିତ (୧) କିନ୍ତୁ କେତେକ ଐତିହାସିକ ଗଙ୍ଗ ଓ ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କର ତାମ୍ରଶାସନଗୁଡ଼ିକରେ ମହେନ୍ଦ୍ରର ପ୍ରଶଂସା ଦେଖି ଏହାକୁ ସପ୍ତମ ଶତାବ୍ଦୀର ଗଠନ କଳାବୋଲି ଭ୍ରମାତ୍ମକ ମତ ଦିଅନ୍ତି ।

ଖ୍ରୀ:ଅ: ୫୮୪ରେ ଅନନ୍ତବର୍ମାଙ୍କ ପୁତ୍ର ଦେବେନ୍ଦ୍ରବର୍ମା 'ବସ୍ରହବର୍ତ୍ତିକା' ବିଷୟରେ (ଆଧୁନିକ ଚିକାକୋଲ ତାଲୁକାରେ ଗୋଟିଏ ଗ୍ରାମ) ଦେବେନ୍ଦ୍ରବର୍ମା ତିନିଶହ ବ୍ରାହ୍ମଣଙ୍କୁ ଗୋକର୍ଣ୍ଣେଶ୍ୱର ପୂଜାପାଇଁ ଦାନ କରିଥିଲେ । ମହେନ୍ଦ୍ର ପର୍ବତ ଉପରେ ଗୋକର୍ଣ୍ଣେଶ୍ୱର ମହାଦେବଙ୍କ ମନ୍ଦିର ବୋଧହୁଏ ଦେବେନ୍ଦ୍ର ବର୍ମାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହା ବୋଧହୁଏ ଗଙ୍ଗାବଂଶର ପ୍ରଥମ କୀର୍ତ୍ତି । (୨) ଅର୍ଜୁନ ଗୋହତ୍ୟାରୁ ମୁକ୍ତ ହେବାପାଇଁ ଏହି ସ୍ଥଳଟି ନିର୍ଣ୍ଣୟ କରିଥିଲେ ବୋଲି ପୁରାଣରୁ ସ୍ପଷ୍ଟ । ଗଙ୍ଗରାଜା ଇନ୍ଦ୍ରବର୍ମାଙ୍କ ତାମ୍ରଶାସନରେ ଉଲ୍ଲେଖ ଅଛି, ମହେନ୍ଦ୍ରାଞ୍ଚଳ ନିକଟରେ "ସୌମ୍ୟବନ" ନାମରେ ଗୋଟିଏ ବନଥିଲା । ଗୋକର୍ଣ୍ଣେଶ୍ୱର ବିଖ୍ୟାତ ମାଠର, ଗଙ୍ଗ, ଶୈଳୋଦ୍ଭବ, କେଶରୀ ବଂଶ ରାଜାମାନଙ୍କର [ଖ୍ରୀ:ଅ: ୫ମ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ପାଏଁ] କୁଳଦେବତା ହିସାବରେ ପୂଜାପାଉଥିଲେ । ଏହି ମହେନ୍ଦ୍ରଗିରି ଏକ କୋଟିଲିଙ୍ଗବିଶିଷ୍ଟ । ଏହା ଦକ୍ଷିଣର କାଶୀ ରୂପେ ମଧ୍ୟ ପ୍ରଖ୍ୟାତ । ଗୋକର୍ଣ୍ଣେଶ୍ୱର ମନ୍ଦିରଠାରୁ ଦାରୁବ୍ରହ୍ମ ଫାଟକର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ପଞ୍ଚପାଣ୍ଡବ ପର୍ବତାରୋହଣ ସମୟରେ କୁନ୍ତୀ ମହେନ୍ଦ୍ରଗିରିର ନିମ୍ନଦେଶରେ କିଛୁଦିନ ଅବସ୍ଥାନ କରିଥିଲେ ସେଠାରେ ଗୋଟିଏ ପଡ଼ା (ଶବର ପଲ୍ଲୀ) ନିର୍ମାଣ କରିଥିଲେ । ସେହି ପଡ଼ା ଅଧୁନା କଇଁପୁର (ଶବର ଭାଷାରେ = କଇଁତାପୁର = କୁନ୍ତୀପୁର) ନାମରେ ପରିଚିତ । ମହାଭାରତ ବନପର୍ବରେ ସହଦେବ ମାତାଙ୍କୁ ମୋକ୍ଷପ୍ରଦାୟକ କ୍ଷେତ୍ର ମହେନ୍ଦ୍ର ବିଷୟରେ କହିବାକୁ ଯାଇ ମହେନ୍ଦ୍ରର ମହିମାଗାନ କରିଛନ୍ତି । (୩)

"ମହେନ୍ଦ୍ରଗିରି ଏହାର ନାମ ଆଟଗା ମାତ ।
ଅମୋକ୍ଷ ଜନ ଏଠାରେ ହୁଅନ୍ତି ମୁକତ ॥"

ଏଠାରେ ଏବେ ଏକାଧାରରେ ଶିବ ଓ ଶକ୍ତିଙ୍କର ପୂଜା ସମ୍ପନ୍ନ ହେଉଅଛି । ଗୋକର୍ଣ୍ଣେଶ୍ୱର ମନ୍ଦିର (ଚିତ୍ର ନଂ ୭) କୁନ୍ତୀଙ୍କ ନାମରେ ଉତ୍ସର୍ଗ କରାଯାଇଥିବା ଯୋଗୁଁ ଏହାର ନାମ କୁନ୍ତୀ ମନ୍ଦିର ହୋଇଅଛି ।

---

(୧) History of Orissa : K. Ch. Panigrahi, Page 371.

(୨) —Ibid— Dr. H. K. Mahatab, Page 70.

(୩) ମହାଭାରତ ବନପର୍ବ : ୮୫/୧୭ ଜ୍ଞାନକୋଷ : ଉତ୍କଳ ବିଶ୍ୱବିଦ୍ୟାଳୟ ।

ଏହି ମନ୍ଦିରର ଉଚ୍ଚତା ୩୦ ଫୁଟ ଓ ଏହା ଶିଖର ବା ରେଖା ଦେଉଳ ଆକାରର । କଳିଙ୍ଗ ଶୈଳୀରେ ସୂଚନା ଦିଏ । ମନ୍ଦିରଟି ପଶ୍ଚିମାଭିମୁଖୀ । ପାର୍ଶ୍ୱଦେବମାନେ ହେଲେ ଗଣେଶ (ଚିତ୍ର ନଂ ୭), କାର୍ତ୍ତିକେୟ (ଚିତ୍ର ନଂ ୮) ଓ ଦୁର୍ଗା । ଗଣେଶ ଓ କାର୍ତ୍ତିକେୟ କଳାମୁଗୁନି ପଥରରେ ତିଆରି କିନ୍ତୁ ଦୁର୍ଗା ବିଗ୍ରହଟି ଚୋରି ହୋଇଯାଇଛି । ଏବଂ ତା ସ୍ଥାନରେ ସାଦୃଶ୍ୟ ମୂର୍ତ୍ତି ବଦଳରେ ଗୋଟିଏ ମାଙ୍କଡ଼ା ପଥରର ମୂର୍ତ୍ତି ରଖାଯାଇଛି । ଦ୍ୱାର ସମ୍ମୁଖରେ ନବଗ୍ରହ ମୂର୍ତ୍ତି ଖୋଦିତ (ଚିତ୍ର ନଂ ୧୦) ହୋଇଛି । ମନ୍ଦିରର ଗଠନ ପ୍ରଣାଳୀକୁ ଲକ୍ଷ୍ୟକରି ଏହା ସିଦ୍ଧାନ୍ତ ନିଆଯାଇପାରେ ଯେ ପଞ୍ଚରଥ ସଦୃଶ୍ୟ ମନ୍ଦିରର ସ୍ଥାପତ୍ୟ କଳିଙ୍ଗ ପଦ୍ଧତି ଅଟେ । (୧) ଏଠାରେ ସୂଚନା ଦିଆଯାଇପାରେ ଯେ ଗଣେଶ ବିଗ୍ରହଟି ଦଶମ ଶତାବ୍ଦୀର ପ୍ରଥମାର୍ଦ୍ଧର କଳାକୃତି ଯାହାକି ଦକ୍ଷିଣ ପାର୍ଶ୍ୱଦେବ ଅଟନ୍ତି । ମନ୍ଦିର ପଶ୍ଚାତ୍ ପାର୍ଶ୍ୱଦେବ ହେଲେ କାର୍ତ୍ତିକେୟ । ଏହା ଅଷ୍ଟମଠାରୁ ନବମ ଶତାବ୍ଦୀ ମଧ୍ୟରେ ପ୍ରସିଦ୍ଧି ଲାଭ କରିଥିବା ନିଷ୍ପତ୍ତି । (୨) ମନ୍ଦିରର ଦ୍ୱାରଦେଶର ଦୁଇପାର୍ଶ୍ୱରେ ଥିବା ଦୁଇଟି ଶିଳାଲେଖର ଲିପିକ ପ୍ରଣାଳୀ ଓ ସମସ୍ତ ଶକାବ୍ଦ ୧୦୪୫ ଓ ୧୦୫୫ ଦିଆଯାଇଛି । ଅର୍ଥାତ୍ ଏହା ଦ୍ୱାଦଶ ଶତାବ୍ଦୀର । ଅତଏବ ମନ୍ଦିରଟି ଦୁଇ ତିନି ଥର ଧ୍ୱଂସ ହେବାପରେ ପୁନଃନିର୍ମାଣ ମଧ୍ୟ ହୋଇଥିବା ସଙ୍କେତ ମିଳେ । କାରଣ ଏଥିରେ ନୂତନ ପଦ୍ଧତିର ଚୂନ ଲେପ ଦେଖାଯାଏ । ଏହି ଗୋକର୍ଣ୍ଣେଶ୍ୱର ମନ୍ଦିର ଶିଖର ଦେଶ ପୂର୍ବେ ସ୍ୱର୍ଣ୍ଣ ଖଚିତ ହୋଇଥିବା ବିଷୟ ଗଙ୍ଗରାଜାଙ୍କ ଦାନ ପତ୍ରାବଳୀର ପ୍ରଶସ୍ତିରୁ ଜଣାଯାଏ । ଯଥା—

"ମହେନ୍ଦ୍ର ଚଳାମଳ କନକ ଶିଖର ପ୍ରତିଷ୍ଠିତସ୍ୟ ସଚରାଚର ଗୁରୋ"··· ଏହି ଗୋକର୍ଣ୍ଣେଶ୍ୱର ମନ୍ଦିର ନିର୍ମାଣ ସମ୍ପର୍କରେ ଅର୍ବାଚୀନ ମତ ଅନେକଗୁଡ଼ିଏ ମିଳିଛି । ଯେମାନଙ୍କ ମଧ୍ୟରେ ବରିଷ୍ଠ ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତକୁ ସ୍ୱୀକାର କରିଯାଇପାରେ । (୩) ଏହା ଗଙ୍ଗବଂଶ ଶାସନ କାଳର ଅର୍ଥାତ୍ ୫ମରୁ ଷଷ୍ଠ ଶତାବ୍ଦୀ ବୋଲି ଧରିଯାଇପାରେ ଓ ଅଷ୍ଟମ କିମ୍ବା ଦଶମ ଶତାବ୍ଦୀରେ ମରାମତି ହୋଇ ଥାଇପାରେ ।

---

(୧) Archaeological remains of Bhubaneswar. Dr. K Ch. Panigrahi P 51.

(୨) —ଏକନ—

(୩) (କ) The shrine of Gokarneswar at the same (Mahendra Bhima daula area) place is very ancient and it is frequently mentioned in the copper plate records of

ମହେନ୍ଦ୍ରଗିରିସ୍ଥ ଅନ୍ୟତମ ପ୍ରସିଦ୍ଧ ଅକ୍ଷତ ମନ୍ଦିର ଯୁଧିଷ୍ଠିର ମନ୍ଦିର (ଚିତ୍ର ନଂ ୧୧) ଷଷ୍ଠ ଶତାବ୍ଦୀର ଶେଷଭାଗରେ କଳାକୃତ ବୋଲି ଐତିହାସିକ Dr. K. Ch. Panigrahi ଓ ଅନ୍ୟମାନେ ମତ ଦିଅନ୍ତି । ଏହାର ଗଠନ ପ୍ରଣାଳୀ ମୁଖଲିଙ୍ଗର ସୋମେଶ୍ୱର ଓ ମଧୁକେଶ୍ୱର ମନ୍ଦିର ସଦୃଶ୍ୟ ହେଲେହେଁ ମୁଖଲିଙ୍ଗସ୍ଥ ମଧୁକେଶ୍ୱର ମନ୍ଦିର ଯୁଧିଷ୍ଠିର ମନ୍ଦିରର କାରୁକାର୍ଯ୍ୟଠାରୁ ଅଧିକାଂଶ ମାର୍ଜିତ । ତେଣୁ ପରବର୍ତ୍ତୀକାଳୀନ (୧) ଯୁଧିଷ୍ଠିର ମନ୍ଦିରରେ ପାର୍ଶ୍ୱଦେବ ନାହାନ୍ତି । ବୌଦ୍ଧ ସ୍ଥାପତ୍ୟ କଳା ସଦୃଶ୍ୟ

---

the Ganga kings of Svetaka dating back to the fifth century A.D.
Hist of Orissa : Dr K. Ch. Panigrahi, Page 371
Art and architecture.

(ଖ) ଏହି ଗୋକର୍ଣ୍ଣେଶ୍ୱର ମନ୍ଦିର ଦେବେନ୍ଦ୍ରବର୍ମାଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏହା ହୁଏତ ଗଙ୍ଗବଂଶର ପ୍ରଥମ କୀର୍ତ୍ତି ।
ଓଡ଼ିଶାର ଇତିହାସ : ଡ଼ଃ ହରେକୃଷ୍ଣ ମହତାବ, ପୃ ୭୦

(ଗ) "ସାମନ୍ତବର୍ମାଙ୍କ ଦ୍ୱାରା ଷଷ୍ଠ ଶତାବ୍ଦୀର ମଧ୍ୟଭାଗ ।"
ଓଡ଼ିଆ ଜାତିର ଇତିହାସ : ଡ଼ଃ ନବୀନକୁମାର ସାହୁ, ପୃ-୩୬୭

(1) Orissa Historical Journal Vol XXII No. 3 and 4, Page 96
The temple is of the tri-ratha type. It rises abruptly from the ground and has a tapering projection (Yudhisthira temple). The top of the temple is adorned with an amalaka (fluted finial) and an ayudha (weapon). Probably this temple was intended to have sculptured walls, but it was left un-finished. One pecular thing about this temple is that no deities are to be found on the sides. Four chaitya archs adorn from the four sides of the "Sikhara" temple (Tower) The front door lintel contains an inscription of the Cholo kings Rajendracholo".

Canons of Orissan Architecture : Sri N. K. Bose. PP. 92-93.

ବର୍ତ୍ତମାନର ଅବସ୍ଥା ବିଂଶ ଶତାବ୍ଦୀର ଆରମ୍ଭର ଅବସ୍ଥାଠାରୁ ଅନେକ ଭିନ୍ନ । ଅସଂଖ୍ୟ ଲିଙ୍ଗ ଚୋରି ହୋଇଯାଇଛି । ଲୌହ କବାଟ ନାହିଁ । କବିଶେଖର ଚନ୍ଦ୍ରମଣି ମହାନ୍ତି (୧୯୧୪) ଏଠାରେ ଗ୍ରୀଷ୍ମେ ରାତି ଯାପନ କରିଥିଲେ ଓ ଗଦ୍‌ଗଦ୍‌ କଣ୍ଠରେ ଲେଖିଥିଲେ । (୧)

"ଯୁଧିଷ୍ଠିର ଦେବାଳୟ ଦକ୍ଷିଣ ଅଗ୍ରତେ
ଆକଟି କାନନେ ମଗ୍ନ ଇନ୍ଦୀବର କୋଳେ
ସ୍ତମ୍ଭକ ଚନ୍ଦ୍ରିକା କମ୍ରା ଆଲୋକୋଲ୍ଲେଖନ,
ଭଗ୍ନଚୂଡ଼ ଦେବାଳୟେ ଥିଲା ସ୍ୱର୍ଣ୍ଣଚୂଡ
ଦୁରନ୍ତ ଯବନ କଲା ଅପହରି ତାହା । (୨)
ଅଛି ଅଧମ କୀର୍ତ୍ତି ରଖିଛି କହାଇ
ଅଛି କଳଂକିତ ନାମ କେବଳ ତାହାର ।

× × ×

ମନ୍ଦିର ସମ୍ମୁଖରେ ଥିବା ଭଗ୍ନ ବୃଷଭ ଇତସ୍ତତଃ ପଡ଼ିରହିଥିବା ଭଗ୍ନ ବିଗ୍ରହମାନ ଦେଖିଲେ ମନେହୁଏ ଯେ ଆହୁରି ଅନେକ ପ୍ରାଚୀନ କୀର୍ତ୍ତି କାଳ ପ୍ରବାହରେ ଧ୍ୱଂସପ୍ରାପ୍ତ ହୋଇଛି । ଏହି ମନ୍ଦିର ସମ୍ମୁଖସ୍ଥ ଅବକ୍ଷୟ ପ୍ରାପ୍ତ ଶିଳାଲେଖର ପାଠୋଦ୍ଧାର ହୋଇସାରିଛି । ସେଥିରେ ଚୋଳରାଜ ରାଜେନ୍ଦ୍ର ଚୋଳଙ୍କ ବିଜୟ ଗାଥା ବର୍ଣ୍ଣିତ । ଏହି ଶିଳାଲେଖ ସହିତ ରାଜେନ୍ଦ୍ରଚୋଳଙ୍କ ଆକ୍ରମଣକାଳୀନ "କଳିଙ୍ଗତ୍ତୁ ପରଣି" ତାମିଲ୍ କାବ୍ୟର ବିଷୟବସ୍ତୁ ସଙ୍ଗେ ସାମଞ୍ଜସ୍ୟ ପରିଲକ୍ଷିତ । ଏହି ଶିଳାଲେଖ ବିଷୟ ପୂର୍ବବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ।

---

This temple can be compared with the Satrughaneswara Group of temples at Bhubaneswar which are roughly assigned to the last part of the 6th century AD.—Dr. K. Ch. Panigrahi.

6th to 7th century Dr. G, C. Chaulay, Suptd. Orissa Museum BBSR.

(୧) କବିଶେଖର ଚନ୍ଦ୍ରମଣି ରାତି ଯାପନ ସମୟରେ ୧୯୧୮ରେ ଏଠାର ବଙ୍ଗଳା ବାସୋପଯୋଗୀ ଥିଲା ।

(୨) ମହେନ୍ଦ୍ରକାବ୍ୟ : କବିଶେଖର ଚନ୍ଦ୍ରମଣି, ଚନ୍ଦ୍ରମଣି ଗ୍ରନ୍ଥାବଳୀ ପୃ ୭୨୮

ଏତଦ୍‌ବ୍ୟତୀତ ତତ୍କାଳୀନ ରାଜାମାନଙ୍କର ବାସସ୍ଥାନ ସହ ଜନପଦ ଥିବା ପ୍ରମାଣ ମଧ୍ୟ ମିଳୁଛି । କାରଣ ଏଠାରୁ ପ୍ରାପ୍ତ 'ପୋଡ଼ାଇଟା' କେତେକ (ଏଠାରେ ସୁରକ୍ଷିତ) ତାହା ଅନ୍ଧ୍ରର ବଂଶଧାରା ନଦୀକୂଳରେ ଥିବା ବୌଦ୍ଧସ୍ତୂପ ଶାଳହୁଣ୍ଡମ୍ ଓ କଳିଙ୍ଗପଟଣା ବନ୍ଦରସ୍ଥ 'ବାନ୍ଦାରପେଟା'ର ବୌଦ୍ଧସ୍ତୂପ (ପ୍ରତ୍ନତତ୍ତ୍ୱ ବିଭାଗଦ୍ୱାରା ସୁରକ୍ଷିତ)ର ଇଟା ସହିତ ସମାନ । ଆହୁରି ମଧ୍ୟ ଯୁଧିଷ୍ଠିର ମନ୍ଦିରର ନିମ୍ନରେ ମହେନ୍ଦ୍ର ଉଦ୍ୟାନର ଚିହ୍ନ 'ପୋଖରୀ ଓ ଗହ୍ୱର ଭିତ୍ତି' ମଧ୍ୟ ଦୃଷ୍ଟିଗୋଚର ହୁଏ । ଅଦ୍ୟାବଧି ବୈଦିକ ଯେକୌଣସି ସାଧନା ପାଇଁ ଏଠାରେ କେହି କେହି ସହିଥିବା କିମ୍ବା ସାଧନାରତ ଥିବା ଦେଖାଦେଇଥାଏ । ବର୍ତ୍ତମାନ ଶୈଳୋଦ୍ଭବ ପଦଚିହ୍ନ ଭଣ ଅଛି ବିଚ୍ଛିନ୍ନ ।

## (୪) ଶୈଳୋଦ୍ଭବ ବଂଶୀୟ କୀର୍ତ୍ତି :

ଶୈଳୋଦ୍ଭବ ବଂଶର ଉତ୍ପତ୍ତି ସମ୍ବନ୍ଧରେ ପୂର୍ବରୁ ବର୍ଣ୍ଣିତ ହୋଇଛି । ଏହି ବଂଶର ଗୃହଦେବତା ଥିଲେ ଗୋକର୍ଣ୍ଣେଶ୍ୱର ମହାଦେବ ।[୧] ଶୈଳୋଦ୍ଭବ ବଂଶୀୟ ରାଜାମାନେ ଗ୍ରହଦୋଷ ନିବାରଣାର୍ଥେ ଏଠାରେ ଯଜ୍ଞାନୁଷ୍ଠାନ କରିଥିବା ପ୍ରମାଣିତ । (୧) ଯୁଧିଷ୍ଠିର ମନ୍ଦିରର ଦକ୍ଷିଣ ଭାଗରେ ଯେଉଁ ବିରାଟ ଯଜ୍ଞକୁଣ୍ଡ ରହିଛି, ତାହା ଜମଦଗ୍ନି ଯଜ୍ଞକୁଣ୍ଡ ନାମରେ ଖ୍ୟାତ । (୨) ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କର ଶାସନଗତ ସଦର ମହକୁମା ତଥା ଧାର୍ମିକ ଓ ସାଂସ୍କୃତିକ କେନ୍ଦ୍ର ଥିଲା ଏହି ମହେନ୍ଦ୍ରଗିରି । ଐତିହାସିକମାନେ ମତ ଦିଅନ୍ତି, କୁନ୍ତୀ (ଗୋକର୍ଣ୍ଣେଶ୍ୱର) ମନ୍ଦିରର ଦ୍ୱିତୀୟଦ୍ୱାର ମଣ୍ଡପ ତଥା ସେଥିରେ ଯେଉଁ ପାର୍ଶ୍ୱଦେବ ଅଛନ୍ତି ତାହା ଅଷ୍ଟମ ଶତାବ୍ଦୀର କୀର୍ତ୍ତି । ଏଥିରେ ଶୈଳୋଦ୍ଭବ ବଂଶୀୟ କଳା ପରିସ୍ଫୁଟ । ଭୀଷ୍ମ ମନ୍ଦିରର ସିଂହବାହିନୀ ଦୁର୍ଗା ଓ ଅନ୍ୟାନ୍ୟ ଭଗ୍ନବିଗ୍ରହ ବାଣପୁରର ଜଙ୍ଗଲରେ ମଧ୍ୟ ପରିଦୃଷ୍ଟ ।

ଇତିହାସରୁ ପୁଣି ସ୍ପଷ୍ଟ ହୋଇଛି ଯେ ମହେନ୍ଦ୍ରାଞ୍ଚଳ କାଦମ୍ବ, ସ୍ୱେତକ ଓ ଅନ୍ୟାନ୍ୟ ରାଜନ୍ୟବର୍ଗଙ୍କ ଦ୍ୱାରା ଶାସିତ । ତେଣୁ ସେହି କୃତ ଅଞ୍ଚଳରେ ପ୍ରଭାବ ପଡ଼ାଇ ଥାଇପାରେ । ତେଣୁ ଅନ୍ୟାନ୍ୟ ରାଜନ୍ୟବର୍ଗଙ୍କ କଳାକୃତି ଆଲୋଚନ ଆବଶ୍ୟକ ।

## (୫) ଅନ୍ୟାନ୍ୟ ରାଜବଂଶର କୀର୍ତ୍ତି :

ମହେନ୍ଦ୍ରଗିରିର ପ୍ରାଚୀନ କୀର୍ତ୍ତି ଇତିହାସରେ କଳାକୃତିର ସୁରକ୍ଷା କରିବା ପାଇଁ କାଦମ୍ବବଂଶୀୟ ରାଜାମାନଙ୍କ କୃତ ମଧ୍ୟ ବିଚ୍ଛିନ୍ନ । ଏମାନେ ମନ୍ତ୍ରୁଟାଠାରୁ ଜୟନ୍ତୀପୁର

---

୧ । Inscription of Orissa Vol-I Part-II P-180.
ଯଜ୍ଞାପ୍ତୈରଣମେଧ ପ୍ରଭୃତଭିର ମଗଲମୁକ୍ତା ସ୍ତୁପ୍ତିମୂର୍ତ୍ତିମ୍"

୨ । ଭାଗବତ ପୁରାଣ—୧୦ମ-୭୯, ୧୨; ୧୧ଶ ୬—୬ ।

ଅଞ୍ଚଳରେ ରାଜତ୍ୱ କରୁଥିବା ସମୟରେ ମହେନ୍ଦ୍ରଗିରିକୁ ସାଧନାପୀଠ ଓ ଗିରିଦୁର୍ଗ ହିସାବରେ ବ୍ୟବହାର କରୁଥିଲେ । ଏମାନଙ୍କ ଶାସନ କାଳରେ ମହେନ୍ଦ୍ରଗିରିରୁ ଅନେକ ଦେବଦେବୀ ବିଗ୍ରହ ସ୍ଥାନାନ୍ତର ହୋଇଯାଇଥିବା ଅନୁମେୟ । ମଂଜୁଷାର ରାଧାକୃଷ୍ଣ ମନ୍ଦିର (ବାସୁଦେବ ମନ୍ଦିର)ର କାରୁକାର୍ଯ୍ୟ ତଥା ପାର୍ଶ୍ୱସ୍ଥ ଦଶ ଅବତାର ବିଗ୍ରହ (ବୁଦ୍ଧ ନୃସିଂହାବତାର, ବରାହ ଅବତାର କେବଳ ଅକ୍ଷତ ରହିଅଛି) ଦୁର୍ଗ । ବିଗ୍ରହ ବର୍ତ୍ତମାନ ନାହିଁ । ମହେନ୍ଦ୍ରରୁ ଅଣାଯାଇ ଏଠାରେ ପୂଜା କରାଯାଉଥିଲା ବୋଲି ଜଣାଯାଏ । ବର୍ତ୍ତମାନ ମଞ୍ଜୁଷାଠାରେ ପରିଲକ୍ଷିତ ନିମ୍ନଲିଖିତ କୀର୍ତ୍ତିଗୁଡ଼ିକ ଏମାନଙ୍କ ପୂର୍ବରୁ ମହେନ୍ଦ୍ରଠାରେ ନିର୍ମିତ କୀର୍ତ୍ତିମାନଙ୍କ ସହ ସାମଞ୍ଜସ୍ୟ ରକ୍ଷାକରେ ।

୧ । ପିଡ଼୍ ମଞ୍ଜୁଷାର ଖିଲମଣ୍ଡା ଭୁମ୍ନେଶ୍ୱରୀ

୨ । ଉଆସ ମଧ୍ୟର ଲକ୍ଷ୍ମୀଶାଳାର ପାର୍ଶ୍ୱମୂର୍ତ୍ତି

୩ । ଉଆସ ମଧ୍ୟରେ ଖିଲମଣ୍ଡା ପୀଠ ।

୪ । ବାସୁଦେବ ମନ୍ଦିର (ପୋଡ଼ାହାଡ଼ ଦେଉଳ)

୫ । ବାସୁଦେବ ମନ୍ଦିର ନିକଟରେ ହନୁମାନ ବିଗ୍ରହ ।

ଏତଦ୍ ବ୍ୟତୀତ ମହେନ୍ଦ୍ରର 'ପାଦଦେଶର ତାଡ଼କେଶ୍ୱର' ଧ୍ୱଂସ (ଚିତ୍ର ନଂ ପ୍ଲେଟ୍ ୩.୧) ଭୁତାରସିଂଠାରୁ ଭୂମ୍ପାଯାଏ ସମସ୍ତ ଶାକ୍ତପୀଠ ସହିତ ଶବରମାନଙ୍କ ଜରଭୁଙ୍ଗ ସହିତ ଲିଙ୍ଗପୂଜା ଓ ଫାର୍ଣ୍ଣୀ ଓ ଧନୁପୂଜା ପୀଠ, ବାଣୀ ସାହିର ଜଗନ୍ନାଥ ବଳଭଦ୍ର ସୁଭଦ୍ରାଙ୍କ ସହିତ ଶ୍ରୀ ଲୋକନାଥ ପୀଠ (ଚିତ୍ର ନଂ. ୧୯), ସହିତ ଅସଂଖ୍ୟ ଦାରୁପୂଜା; ଏ ସମସ୍ତ ଅନ୍ୟାନ୍ୟ ରାଜବଂଶର କୀର୍ତ୍ତି । ଦାରୁପୂଜା ବା କାଷ୍ଠପୂଜା ପୁଷ୍ପ ସୁଦର୍ଶନ ସହିତ ସମାନ ଥିବା ପରିଲକ୍ଷିତ । (୧) ଶ୍ରୀକୂର୍ମମ୍ ମୁଖଲିଙ୍ଗମଠାରୁ ମହେନ୍ଦ୍ରର ଚତୁଃପାର୍ଶ୍ୱରେ ଯେଉଁ ମନ୍ଦିରମାଳା ରହିଛି ତାହା କାଦମ୍ବ ରାଜବଂଶର କୀର୍ତ୍ତି ବୋଲି କହିଲେ ମଧ୍ୟ ଉଭୟ ଉତ୍ତରଭାରତ ଓ ଦକ୍ଷିଣ ଭାରତର କଳାର ସମାହାର ମହେନ୍ଦ୍ର-ଗିରି ଅଟେ । ଯଥାର୍ଥରେ ମହେନ୍ଦ୍ରର କୀର୍ତ୍ତି ହିଁ ଉତ୍କଳର କୀର୍ତ୍ତି ।



୧ । ଓଡ଼ିଶାର ଇତିହାସ : ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପୃ. ୩୫୮

# ଚତୁର୍ଥ ପରିଚ୍ଛେଦ

# ଧର୍ମପୀଠ ମହେନ୍ଦ୍ରଗିରି

ସମଗ୍ର ବିଶ୍ୱରେ ଭାରତବର୍ଷ ଏକ ପବିତ୍ର ଆଧ୍ୟାତ୍ମିକ ପୀଠ । ବିଭିନ୍ନ ଧର୍ମର ବିଭିନ୍ନତା ମଧ୍ୟରେ ଏକ ଅନ୍ତର୍ନିହିତ ଯୋଗସୂତ୍ର ବଳରେ ଭାରତର ଆଧ୍ୟାତ୍ମିକ ସଂସ୍କୃତି ଏକ ଅଦ୍ୱିତୀୟ ଓ ମହାନ୍ ଧର୍ମ ଚେତନାର ବାହକ । ଶୈବ, ଶାକ୍ତ, ବୈଷ୍ଣବ, ବୌଦ୍ଧ, ଗାଣପତ୍ୟ, ସୌର ସୂର୍ଯ୍ୟୋପାସକ, ସହଜ ସାଧକ, ତନ୍ତ୍ରସାଧକ, ହନୁମାନ ଭକ୍ତ ସର୍ବୋପରି ସର୍ବଧର୍ମର ସମନ୍ୱୟର ସଙ୍କେତ ପୁରୁଷୋତ୍ତମତତ୍ତ୍ୱ ଭାରତ ବିଶେଷତଃ ଉତ୍କଳର ଆଧ୍ୟାତ୍ମିକ ଉତ୍କର୍ଷ । ଶ୍ରୀକ୍ଷେତ୍ର ନୀଳାଚଳଧାମ ଭଳି ମହେନ୍ଦ୍ରଗିରି ମଧ୍ୟ ଯୁଗେ ଯୁଗେ ଏ ସମସ୍ତ ଧର୍ମ ଭାବଧାରାର ଏକ ମୂଳଉତ୍ସ । ଏ ବିଷୟରେ ଏଠାରେ ସଂକ୍ଷେପରେ ଅବତାରଣା କରାଗଲା ।

## (କ) ଶୈବପୀଠ :

ମହାଭାରତରୁ ଜଣାଯାଏ ଯେ ମହେନ୍ଦ୍ରଗିରି ପ୍ରସିଦ୍ଧ ଏକ ଶୈବପୀଠ ଥିଲା । ପରଶୁରାମଙ୍କ ଆସ୍ଥାନ ହିସାବରେ ଏହା ସତ୍ୟଯୁଗରୁ ଶୈବକ୍ଷେତ୍ର ରୂପେ ଖ୍ୟାତି ଅର୍ଜନ କରିଅଛି । ମହେନ୍ଦ୍ର ଶିଖରରେ ଯେଉଁ ବୀରେଶ୍ୱର ଶିବ (ଚିତ୍ର ନଂ ୧୬) କେତେକଙ୍କ ମତରେ ଶିବଙ୍କର ଭୈରବୀ ବିଗ୍ରହ (ଏହା ୩'-୬ ଇଞ୍ଚ ଉଚ୍ଚତାବିଶିଷ୍ଟ ଏକ ଅଂଶ ମୁଣ୍ଡମାଳା ଶୋଭିତ ଏବଂ ଗଙ୍ଗା ପ୍ଲାବିତ ଓ ଅର୍ଦ୍ଧାଂଶ ଜଟାଜୁଟଯୁକ୍ତ) ଦର୍ଶନ କଲେ ଏହାର ସତ୍ୟତା ପ୍ରମାଣିତ ହୁଏ । ମୁଖଲିଙ୍ଗମ୍‌ର ମନ୍ଦିର ଓ ଏକାମ୍ର ତୀର୍ଥାଦି ତୁଳନାରେ ଏଠାକାର କଳାକୃତି ସର୍ବପ୍ରାଚୀନ । ଏଠାରେ ସହସ୍ରାଧିକ ଲିଙ୍ଗ ବିରାଜମାନ । ଉପରୋକ୍ତ ବିଗ୍ରହ ଦର୍ଶନ କଲେ ଏହା ପ୍ରତୀୟମାନ ହୁଏ ଯେ, ମହାଦେବ ଶିବ ଏଠାରେ (ଭୈରବ ରୂପ ଧାରଣ କରିଥିଲେ ଓ ଗୋହତ୍ୟା ପାପମୋଚନ ପାଇଁ ସପ୍ତଯୁଗ ସାଧନରତ ଥିଲେ । ତେଣୁ ଏହା ହିମାଳୟସ୍ଥ ବଦ୍ରୀନାରାୟଣ ତୀର୍ଥ ଭଳି ଏକ ପ୍ରାଚୀନ ତୀର୍ଥକ୍ଷେତ୍ର । ହିମାଳୟଠାରୁ ପ୍ରାଚୀନ ମହେନ୍ଦ୍ରାଚଳସ୍ଥିତ ଗୋକର୍ଣ୍ଣେଶ୍ୱର ହେଉଛନ୍ତି ପୁରାଣଯୁଗରୁ ଆରାଧ୍ୟ । ଶୈବ ମତବାଦ ଅନ୍ତର୍ଗତ ଶିଶ୍ନଦେବ ବା ଲିଙ୍ଗପୂଜା ମଧ୍ୟ ବୈଦିକ ଯୁଗରୁ ଆରମ୍ଭ ହୋଇଥିବା ଶ୍ୱେତାଶ୍ୱେତର ଉପନିଷଦରୁ ଜଣାଯାଏ ।

ପ୍ରାଚୀନ କଳିଙ୍ଗର ମଧ୍ୟଭାଗରେ ମହେନ୍ଦ୍ରଗିରିର ଅବସ୍ଥିତି ହେତୁ ତାହା ଏକ ରାଜନୈତିକ କେନ୍ଦ୍ର ହେବା ସଙ୍ଗେ ସଙ୍ଗେ ଗୋଟିଏ ଧର୍ମପୀଠ ରୂପେ ମଧ୍ୟ ପ୍ରତିଷ୍ଠା ଲାଭ କରିଥିଲା । ଆଦିମଯୁଗରେ ସେଠାକାର ଆଦିବାସୀ ଶବରମାନେ ଯେଉଁ ଦାରୁ ଦେବତାଙ୍କୁ ପୂଜା କରୁଥିଲେ, କାଳକ୍ରମେ ଆର୍ଯ୍ୟ ଓ ଦ୍ରାବିଡ଼ୀୟ ଜାତିମାନଙ୍କର ପ୍ରାଧାନ୍ୟ ହେତୁ ତାହା ହିନ୍ଦୁ ଦେବତାରେ ପରିଣତ ହେଲେ । ମଧ୍ୟଯୁଗରେ ତାହା ଗୋକର୍ଣ୍ଣେଶ୍ୱର ଶିବ ନାମରେ ଆଖ୍ୟାତ ହୋଇ ଭାରତର ଏକ ତୀର୍ଥକ୍ଷେତ୍ର ରୂପେ ପରିଚିତ ହୋଇଥିଲା । ଏକ ସମୟରେ ସହ୍ୟଗିରିର ଉଦ୍‌ଗୀରଣ ଫଳରେ ଗୋକର୍ଣ୍ଣ-କ୍ଷେତ୍ର ଜଳମଗ୍ନ ହେଲା । କିମ୍ବଦନ୍ତୀ କହେ—ସେହି ସମୟରେ ଋଷିମୁନିଙ୍କ କାତର ପ୍ରାର୍ଥନା ବଳରେ ପରଶୁରାମଙ୍କ ଆବିର୍ଭାବ ଘଟିଥିଲା ଏବଂ ସେ ବରୁଣଙ୍କୁ ପ୍ରାର୍ଥନା କରିବା ସତ୍ତ୍ୱେ ସେଥିପ୍ରତି କର୍ଣ୍ଣପାତ ନ କରିବାରୁ ପରଶୁରାମ ଆଗ୍ନେୟାସ୍ତ୍ର ଧାରଣ କରି ବରୁଣଙ୍କ ଗତିରୋଧ କରିଥିଲେ । କିମ୍ବଦନ୍ତୀ ପ୍ରକାରେ ପରଶୁରାମ ବାରପାଦ ଲମ୍ଫଦେଇ ନିଜର ପରଶୁ ଫୋପାଡ଼ିଥିବା ଯୋଗୁଁ ତାଙ୍କୁ ସ୍ମରଣ କରିବା ପାଇଁ ବାରପଦର ଅଦ୍ୟାପି ମହେନ୍ଦ୍ରରେ ବିଦ୍ୟମାନ । ପରେ ବରୁଣ (ବଙ୍ଗୋପସାଗର) ନିର୍ଦ୍ଦେଶାନୁଯାୟୀ ବାରୁଆ ଯାଏଁ ଘୁଞ୍ଚିଯାଇ କେରଳ ପର୍ଯ୍ୟନ୍ତ ବ୍ୟାପିଗଲା । ମହେନ୍ଦ୍ର ପାଦଦେଶରେ ବାରୁଆ ଗ୍ରାମ ଅବସ୍ଥିତ । ମହେନ୍ଦ୍ର ଶିଖରରେ ଗୌତମ ଋଷିଙ୍କର ଆଶ୍ରମ ଥିଲା ଓ ସେ ଗୋକର୍ଣ୍ଣେ-ଶ୍ୱରଙ୍କ ଉପାସକ ଥିଲେ । ଏହା ବାୟୁ ପୁରାଣରେ ବର୍ଣ୍ଣିତ (୧) । ଏଠାରେ ହନୁମାନ୍ ଗୋକର୍ଣ୍ଣେଶ୍ୱରଙ୍କୁ ପୂଜା କରି ବରପ୍ରାପ୍ତ ହୋଇ ଲଙ୍କାକୁ ଯାତ୍ରା ଆରମ୍ଭ କରିଥିଲେ । ଅଦ୍ୟାପି ସେହି ହନୁମାନ ଝୋଲ ନିକଟରେ, ମହେନ୍ଦ୍ରଗିରି ଶୀର୍ଷରେ ପ୍ରଣାମ କରି ଭକ୍ତମଣ୍ଡଳୀ ମହାଶିବରାତ୍ରୀରେ ଜାଗର ରଖିଥାନ୍ତି । ନିଜେ ମହାବୀର ପରଶୁରାମ ମଧ୍ୟ ନରହତ୍ୟା ଅପରାଧରୁ ମୋଚନ ପାଇଁ ଗୋକର୍ଣ୍ଣେଶ୍ୱର ମହାଦେବଙ୍କୁ ପୂଜା କରିଥିଲେ । ଯେହେତୁ ପରଶୁରାମ ଏଠାରେ ଅମର ହୋଇଛନ୍ତି, ତାଙ୍କ ନାମାନୁସାରେ ଏହା ପରଶୁରାମ କ୍ଷେତ୍ରରୂପେ ମଧ୍ୟ ପରିଚିତ । ମହେନ୍ଦ୍ରରେ ପ୍ରାପ୍ତ ଅସଂଖ୍ୟ ଶିବଲିଙ୍ଗ, ଭଗ୍ନ ଦେବାଳୟ ଓ ଅକ୍ଷତ ଦେବାଳୟମାନଙ୍କରୁ ଏଠାକାର ଶୈବ ସଂସ୍କୃତି ସମ୍ପର୍କୀୟ ସୂଚନା ମିଳେ । ଶ୍ରୀକାକୁଲମ୍, ଗଞ୍ଜାମ ଓ ଗଜପତି ଜିଲ୍ଲାମାନଙ୍କରେ ଯେତେ ଶିବଲିଙ୍ଗ ରହିଛନ୍ତି, ସେ ସମସ୍ତ ମହେନ୍ଦ୍ରରୁ ହିଁ ସ୍ଥାନାନ୍ତରିତ । ଗଙ୍ଗବଂଶୀୟ ରାଣୀ ଗଙ୍ଗାଦେବୀ ଗୋକର୍ଣ୍ଣେଶ୍ୱରଙ୍କୁ ଆରାଧନା କରି ତ୍ରୈଳଙ୍ଗ ନାମକ ପୁତ୍ର ଲାଭ କରିଥିଲେ । ଏହି ତ୍ରୈଳଙ୍ଗ କଳିଙ୍ଗ, ଉତ୍କଳ ଓ କୋଶଳ ରାଜ୍ୟମାନଙ୍କୁ ଏକତ୍ରିତ କରି ଏକ ବିଶାଳ ସାମ୍ରାଜ୍ୟ ଗଠନ କରିଥିଲେ ଏବଂ ସ୍ୱରାଜ୍ୟର ରାଜଧାନୀ ମହେନ୍ଦ୍ର ନିକଟସ୍ଥ ଗଙ୍ଗାବାଡ଼ିଠାରୁ ବିଡାନାସୀକୁ ଉଠାଇ ନେଇଥିଲେ । ସୁତରାଂ ପ୍ରାଚୀନ ଗଙ୍ଗବଂଶୀୟ ସମ୍ରାଟମାନେ ଶୈବ ଥିଲେ (୨) ।

---

(୧) ଓଡ଼ିଶାର ଇତିହାସ : ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପୃ ୭୦

(୨) ଗଞ୍ଜାମର ଧର୍ମଧାରା : ଡକ୍ଟର ପ୍ରହ୍ଲାଦ ପଣ୍ଡା, ପୃ ୧୨

ଏହାର ପ୍ରମାଣ ମାଦଳା ପାଞ୍ଜିରୁ ମଧ୍ୟ ମିଳେ । ଗଙ୍ଗବଂଶର ଉତ୍ପତ୍ତି ସମ୍ପର୍କରେ ପାଞ୍ଜିରେ ଉଲ୍ଲେଖ ଅଛି ଯେ, କେଶରୀ ବଂଶର ଶେଷରାଜା ଶୂନ୍ୟ କେଶରୀଙ୍କ ସହିତ ତାଙ୍କ ଅମାତ୍ୟ ବାସୁଦେବ ରଥ ବା ବାସୁଦେବ ବାହିନୀପତିଙ୍କର କଳହ ହେବାରୁ ସେ କେଶରୀ ବଂଶର ଧ୍ୱଂସ କାମନା କରି ଭୁବନେଶ୍ୱର ମହାଦେବଙ୍କ ଆଜ୍ଞାରେ ଚୋଡ଼ଗଙ୍ଗ ଓଡ଼ିଶାର ରାଜା ହୋଇଥିଲେ । ଏଥିକୁ ଭୁବନେଶ୍ୱର ଦେବଙ୍କ ଆଜ୍ଞା ହୋଇଲା, ତୁ ଦକ୍ଷିଣ ଯାଇ ଗୋକର୍ଣ୍ଣେଶ୍ୱର ବୀର୍ଯ୍ୟରୁ ଯେ ଗଣ୍ଡିପୁଅ ଚୋରଗଙ୍ଗ ଅଛି ତାକୁ ଆମ୍ଭ ଆଜ୍ଞାରେ ଆଣି ଓଡ଼ିଶାରେ ରାଜଛତ୍ର କରାଇବୁ । ଏମନ୍ତ ସେ ବ୍ରାହ୍ମଣ ଦକ୍ଷିଣକୁ ଯାଇ ଦେଖିଲା, ଗଣ୍ଡିପୁଅ ଚୋଡ଼ଗଙ୍ଗ ଟୋକାସଙ୍ଗରେ ଖେଳରେ ରାଜା ହୋଇଛି । (୩) ଯଥାର୍ଥରେ ଚୋଡ଼ଗଙ୍ଗ ଦେବଙ୍କ କାର୍ଯ୍ୟକଳାପ ଓଡ଼ିଶାର ସାମାଜିକ ଓ ଧାର୍ମିକ ପରମ୍ପରାରେ ଏକ ବୈପ୍ଳବିକ ପରିବର୍ତ୍ତନ ମହେନ୍ଦ୍ରଗିରିକୁ କେନ୍ଦ୍ରକରି ହିଁ ସମ୍ଭବ ହୁଏ ।

ଓଡ଼ିଶାରେ ଶିବପୂଜା ପ୍ରଚଳନ ସମ୍ବନ୍ଧରେ ଅନୁସନ୍ଧାନ କଲେ ଜଣାପଡ଼େ କୁଶାଣଯୁଗ ଶେଷ ଭାଗରେ ଓ ଗୁପ୍ତଯୁଗର ପ୍ରାରମ୍ଭରେ ଶିବମୂର୍ତ୍ତି ଗଠନ ହୋଇ ପୂଜା ପାଇଥିଲେ । ଗୁପ୍ତଯୁଗରେ ବୈଷ୍ଣବ ଧର୍ମରେ ବିଶେଷ ପ୍ରସାର ହୋଇଥିଲେ ମଧ୍ୟ ଶୈବଧର୍ମ ତିଷ୍ଠି ପାରିଥିଲା । ବୈଦିକ ଯୁଗରେ ମଧ୍ୟ ଶୈବଧର୍ମ ପ୍ରସାର ଲାଭ କରିଥିଲା । ଶିବ ଭାରତର ପୂର୍ବାଞ୍ଚଳରେ ଭବ, ଦକ୍ଷିଣରେ ସର୍ବ, ଉତ୍ତରରେ ଉଗ୍ର ଏବଂ ପଶ୍ଚିମରେ ପଶୁପତି ନାମରେ ପୂଜିତ ହେଉଥିଲେ । ଏଥିରୁ ଜଣାଯାଏ ଯେ, ଦକ୍ଷିଣରେ ସର୍ବ ଶୈବଧର୍ମ ପ୍ରଚଳିତ ଥିଲା । (୪) ଋକ୍‌ବେଦ ଓ ଅଥର୍ବବେଦରୁ ଜଣାଯାଏ ଯେ, ରୁଦ୍ର ରୋଗହାରୀ ଅଟନ୍ତି । (୫) କୃଷ୍ଣ ଯଜୁର୍ବେଦର ମୈତ୍ରାୟଣୀ ସଂହିତାରେ ମହାଦେବ ରୁଦ୍ର ମହାପୁରୁଷ ରୂପେ ପରିଗଣିତ । (୬) ଶ୍ୱେତାଶ୍ୱେତର ଉପନିଷଦରୁ ଜଣାଯାଏ ଯେ, ଲିଙ୍ଗପୂଜା ବୈଦିକ ଯୁଗରୁ ପ୍ରଚଳିତ ଥିଲା । (୭) ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀବେଳକୁ ଶୈବଧର୍ମ ସମଗ୍ର ଭାରତରେ ଖ୍ୟାତି ଅର୍ଜନ କରିପାରିଥିଲା । ମହର୍ଷି ପତଞ୍ଜଳିଙ୍କ ରଚିତ

---

(୩) ମାଦଳା ପାଞ୍ଜି : ଗଙ୍ଗବଂଶ ଏକ ଅନୁଧ୍ୟାନ : ଆର୍ତ୍ତବଲ୍ଲଭ ମହାନ୍ତି—ବାଉଁଶବନ୍ଧ କର, ପୃ ୨୫

(୪) Early Indian Religious, P. 31

(୫) Evolution of Hindu Sect, P. 97

(୬) ମୈତ୍ରାୟଣୀ ୨।୯।୧

(୭) Saivism through ages, P. 59

ମହାଭାଷ୍ୟରେ ମୌର୍ଯ୍ୟୋତ୍ତରକାଳୀନ ଶିବପୂଜା ବିଷୟ ବର୍ଣ୍ଣିତ। (୧) କଳିଙ୍ଗରେ ଯେଉଁ କଦମ୍ବବଂଶୀୟ ରାଜାମାନେ ଗଙ୍ଗମାନଙ୍କ ଅଧୀନରେ ମହେନ୍ଦ୍ର ପର୍ବତର ପାଶ୍ୱପାର୍ଶ୍ୱିକ ଅଞ୍ଚଳରେ ରାଜତ୍ୱ କରୁଥିଲେ, ସେମାନଙ୍କର ଜଣେ ପୂର୍ବପୁରୁଷ ମହାରାଷ୍ଟ୍ରର ପ୍ରଥମ ରାଷ୍ଟ୍ରବଣରାଷ୍ଟ୍ରୀରୁ ଏଠାକୁ ଆସିଥିଲେ। ତାହାପରେ ବଂଶାନୁକ୍ରମେ ନନ୍ଦାର୍ଣ୍ଣବ, ଭୀମଖେଣ୍ଡ, ଧର୍ମଖେଣ୍ଡ, ଉଗ୍ରଖେଣ୍ଡ, ଉଦୟଖେଣ୍ଡି—ଏହି ରାଜାମାନେ ମହେନ୍ଦ୍ରାଚଳକୁ ଶାସନ କରୁଥିଲେ। (୨) କଦମ୍ବବଂଶର ରାଜାମାନେ ଶୈବଧର୍ମକୁ ରାଜଧର୍ମ ରୂପେ ଗ୍ରହଣ କରିଥିଲେ। (୩) ତେଣୁ ଏହି କଦମ୍ବ ପରିବାର ମହେନ୍ଦ୍ରାଞ୍ଚଳରେ ଶୈବଧର୍ମ ପ୍ରଚାର କରି ନିଜ ସ୍ୱାତନ୍ତ୍ର୍ୟ ଅର୍ଜନ କରିଥିଲେ ଏଥିରେ ସନ୍ଦେହ ନାହିଁ। ଗୁପ୍ତଯୁଗର ପରବର୍ତ୍ତୀ ସମୟରେ ଶୈବଧର୍ମ ଦୁଇ ଭାଗରେ ଅର୍ଥାତ୍ ଲକୁଳୀଶ ଓ କାପାଳିକ ଦୁଇ ଶାଖାରେ ବିଭକ୍ତ ହୋଇଥିଲା ଏବଂ କାପାଳିକ ଧର୍ମଟି ଦକ୍ଷିଣ ଭାଗରେ ପ୍ରସାର ଲାଭ କରିଥିଲା। (୪)

ଭୌମମାନଙ୍କ ଇଙ୍ଗିତରେ 'କାପାଳିକ' ଶେଷଭାଗରେ କଳିଙ୍ଗରେ ପ୍ରସାର ଲାଭ କରିଥିଲା ଏବଂ ତତ୍ ସଙ୍ଗେ ସଙ୍ଗେ ମହେନ୍ଦ୍ରାଞ୍ଚଳରେ ମଧ୍ୟ ପ୍ରସାରିତ ଥିଲା। (୫) ଆଗମ ଶୈବଗଣ ତାନ୍ତ୍ରିକ ଆଦର୍ଶବାଦକୁ ଭିତ୍ତିକରି ପରବର୍ତ୍ତୀ ସମୟରେ ଶଙ୍କରାଚାର୍ଯ୍ୟ ସ୍ୱମତବାଦ ପ୍ରଚାର କରିଥିଲେ। (୬) କେତେକ ତାମ୍ରଶାସନରେ ପ୍ରମାଣିତ ଯେ, ପ୍ରାଚୀନ କଳିଙ୍ଗର କେନ୍ଦ୍ରସ୍ଥଳରେ ଥିବା ମହେନ୍ଦ୍ରଗିରିରୁ ହିଁ ଶୈବଧର୍ମର ଉତ୍ପତ୍ତି ଓ ତାର ପ୍ରଭାବ ସାରା ଉତ୍କଳ ତଥା ଅନ୍ୟ ଅଞ୍ଚଳରେ ପ୍ରତିଫଳିତ। ଜିର୍ଜିଙ୍ଗ ତାମ୍ରଶାସନରୁ ଜଣାଯାଏ ପ୍ରଥମ ଗଙ୍ଗରାଜା ଇନ୍ଦ୍ରବର୍ମା ପରମେଶ୍ୱରଙ୍କୁ ଗୃହଦେବତା ଏବଂ ରାଷ୍ଟ୍ରଦେବତା ରୂପେ ଗ୍ରହଣ କରି ସକଳ ଭୁବନରେ ଅଧିକାରୀ ହୋଇ ପାରିଛନ୍ତି। ଅତଏବ ପୁରୁଷୋତ୍ତମ କ୍ଷେତ୍ରର ମନ୍ଦିର ନିର୍ମାଣରେ ପ୍ରମାଣ ଏହି ମହେନ୍ଦ୍ରାଞ୍ଚଳର ହିଁ ପ୍ରଭାବ ଯାହାକି ମାଦଳାପାଞ୍ଜି ପ୍ରମାଣ ଦିଏ। ଶ୍ରୀକାକୁଳମ ଜିଲ୍ଲାର ତାମ୍ରଶାସନରୁ ଜଣାଯାଏ

---

(୧) ବ୍ୟାକରଣ ମହାଭାଷ୍ୟ : Killharm Vol. II P. 429

(୨) ଓଡ଼ିଶାର ଇତିହାସ : ଡ. ସତ୍ୟନାରାୟଣ ରାଜଗୁରୁ, P. 357

(୩) ଓଡ଼ିଶାର ଧର୍ମ : ଡ଼. ଭଗବାନ ପଣ୍ଡା, ପୃ ୫୮

(୪) Ibid.

(୫) କଳିଙ୍ଗର ଆତ୍ମକଥା : ଡ଼. ସତ୍ୟନାରାୟଣ ରାଜଗୁରୁ, ପୃ ୪୪

(୬) ଓଡ଼ିଶାର ଧର୍ମ : ଡ଼. ଭଗବାନ ପଣ୍ଡା, ପୃ ୫୮

ଯେ, ଗଙ୍ଗବଂଶର ରାଜା ଇନ୍ଦ୍ରବର୍ମା ଗୋକର୍ଣ୍ଣେଶ୍ୱରଙ୍କ ପ୍ରଶସ୍ତି ଗାନ କରିଛନ୍ତି । (୭) ଗଙ୍ଗରାଜାମାନେ ମହେନ୍ଦ୍ରାଞ୍ଚଳରୁ ହିଁ ଶୈବଧର୍ମ ପ୍ରଚାର କରିଥିବା ନିଶ୍ଚିତ ମନେ ହୁଏ । (୮) ମୁଦ୍ଗଲ ବଂଶର ରାଜାମାନେ ମଧ୍ୟ ଶୈବଧର୍ମ ଅନୁସରଣ କରିଥିଲେ । ସୋର ଏବଂ ପଂଚିଆଖୋଲ ତାମ୍ରଶାସନରୁ ଜଣାଯାଏ ଯେ, ଏହି ବଂଶର ରାଜା ଶମ୍ଭୁଯଶ ଶିବଙ୍କୁ ପରମ ଦୈବତ ଏବଂ ପରମ ମାହେଶ୍ୱର ବୋଲି ବର୍ଣ୍ଣନା କରିଛନ୍ତି । (୯) ଏଥିରୁ ଜଣାଯାଏ ଯେ, ମୁଦ୍ଗଲ ବଂଶର ଶାସନ ସମୟରେ ମହେନ୍ଦ୍ରାଞ୍ଚଳରେ ଶୈବଧର୍ମ ପ୍ରତିଷ୍ଠା ଅର୍ଜନ କରିଥିଲା । ଶଶାଙ୍କଙ୍କ ଶାସନ କାଳରେ ମଧ୍ୟ ଶୈବଧର୍ମ ଦକ୍ଷିଣ ଭାରତରେ ପ୍ରସାର ଲାଭ କରିଥିଲା । (୧୦)

ନତ୍ତଆପଲ୍ଲୀ ତାମ୍ରଶାସନରେ 'ଶୈଳୋଦ୍ଭବ ରାଜାମାନଙ୍କର ଶୈବଧର୍ମ ପ୍ରଚାର ବିଷୟ ବର୍ଣ୍ଣିତ । (୧୧) ସପ୍ତମ ଶତାବ୍ଦୀ ବେଳକୁ ମତ୍ସ୍ୟେନ୍ଦ୍ରର ଶୈବଧର୍ମ ଶୈବଗୁରୁ ପ୍ରଥମାଚାର୍ଯ୍ୟ ଏବଂ ତାଙ୍କ ଶିଷ୍ୟ ଶୂଳପାଣିଙ୍କଦ୍ୱାରା ଦକ୍ଷିଣ ଭାରତରେ ପ୍ରସାର ଲାଭ କରିଥିଲା । ଓଡ଼ିଶାର ସୋମବଂଶ, ବୈଷ୍ଣବ ଧର୍ମାବଲମ୍ବୀ, ଭଞ୍ଜବଂଶ ଓ ବୌଦ୍ଧଧର୍ମାବଲମ୍ବୀ ଭୌମକର ରାଜାମାନେ ଶୈବଧର୍ମରେ ପ୍ରଭାବିତ ହୋଇଥିଲେ । (୧୨) ପୁନଶ୍ଚ ମହାଭାରତର ଆଦ୍ୟପର୍ବରେ ଯେଉଁ ଲିଙ୍ଗପୂଜାର ବର୍ଣ୍ଣନା ପ୍ରଦତ୍ତ, ସେଥିରୁ ଏହା ତ୍ରେତୟାଯୁଗରୁ ଶୈବପୀଠ ହିସାବରେ ପ୍ରସିଦ୍ଧି ଲାଭ କରିଥିବା ସୂଚିତ ହୁଏ । ବର୍ତ୍ତମାନ ମହେନ୍ଦ୍ରର ପାଦଦେଶରେ ବାଘାଯାହିଠାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତନୋଟି ଲିଙ୍ଗରୂପେ ପୂଜା ପାଇବା ସଙ୍ଗେ ସଙ୍ଗେ ସେଠାରେ ମହାଦେବଙ୍କ ଲିଙ୍ଗ ପୂଜିତ । (ଚିତ୍ର ନଂ ୧୯) ମହେନ୍ଦ୍ରଗିରି ପାଦଦେଶ ବାଘାସାହି ପଲ୍ଲୀର ଲିଙ୍ଗ ପ୍ରମାଣ ଯୋଗାଏ । ଏଥିରୁ ନିଃସନ୍ଦେହ ଭାବରେ ଜଣାଯାଏ ଯେ, ମହେନ୍ଦ୍ରାଞ୍ଚଳରେ ଶୈବଧର୍ମର ପ୍ରସାର ଲାଭ କରିଥିଲା । ଗୋକର୍ଣ୍ଣେଶ୍ୱରଙ୍କ ଆଶୀର୍ବାଦରେ କଳିଙ୍ଗ ସାମ୍ରାଜ୍ୟ ସୁଶାସିତ ହୋଇ ପାରିଥିଲା ।

---

(୭) ଓଡ଼ିଶାର ଧର୍ମ : ଡ. ଭଗବାନ ପଣ୍ଡା, ପୃ ୬୯

(୮) ଓଡ଼ିଶାର ସାଂସ୍କୃତିକ ଇତିହାସ : ଓଡ଼ିଶା କଲଚରାଲ ଫୋରମ, ଭୁବନେଶ୍ୱର ପୃ ୭୧

(୯) ଓଡ଼ିଶାର ଧର୍ମ : ଡ଼. ଭଗବାନ ପଣ୍ଡା, ପୃ ୭୦

(୧୦) Inscription of Orissa Vol. I, P. 323

(୧୧) ଓଡ଼ିଆ ଜାତିର ଇତିହାସ, ପୃ ୩୩୯

(୧୨) ଓଡ଼ିଶାର ଧର୍ମ : ଡ଼. ଭଗବାନ ପଣ୍ଡା, ପୃ ୭୪

(ଖ) ଶାକ୍ତପୀଠ :

ଏକେ ଭଗବାନ ପର୍ଶୁରାମ ଭୈରବୀଙ୍କ ଉପାସକଥିବାରୁ ପ୍ରାଚୀନ ଗୋକର୍ଣ୍ଣେଶ୍ୱର ପୀଠରେ ଭୈରବୀଙ୍କ ମୂର୍ତ୍ତି ବିଦ୍ୟମାନ । ଅତଏବ ଶକ୍ତି ଉପାସନା ଶିବ ଉପାସନା ଭଳି ପ୍ରାଚୀନତମ ବୋଲି ଅନୁମାନ କରାଯାଇପାରେ । କାରଣ ଶିବ ଶକ୍ତିଙ୍କର ଶବ ସ୍କନ୍ଧରେ ଧାରଣ କରି ଯେଉଁ ତାଣ୍ଡବ ରଚନା କଲେ, ତାର ଫଳରେ ସତୀଙ୍କ ମୃତ ଶରୀର ଖଣ୍ଡ ବିଖଣ୍ଡିତ ଅବସ୍ଥାରେ ବିଭିନ୍ନ ସ୍ଥାନରେ ପଡ଼ି ଶକ୍ତିପୀଠ ସୃଷ୍ଟି କଲା । ସେହି ସମୟରୁ ଓଡ଼ିଶାରେ ନାଭି ଓ ସ୍ତନ ପୀଠର ସୃଷ୍ଟି ବୋଲି ଧାର୍ମିକ ଜନତାର ଦୃଢ଼ବୋଧ ହୋଇଛି । ଅଧିବାସୀମାନେ ଗଞ୍ଜାମର ବହୁ ଶାକ୍ତପୀଠର ଉପାସକ । ଏତଦ୍ ବ୍ୟତୀତ ଗଞ୍ଜାମର ଅନ୍ୟାନ୍ୟ ଦେବଦେବୀଙ୍କ ପୀଠର ପ୍ରସିଦ୍ଧି ମଧ୍ୟ ଉଲ୍ଲେଖଯୋଗ୍ୟ । (୧୩) କଳିଙ୍ଗରେ ଶକ୍ତିପୂଜା ଆବହମାନକାଳରୁ ପ୍ରଚଳିତ । ମହାଭାରତ, ଅଷ୍ଟାଦଶ ପୁରାଣ, ବିଭିନ୍ନ ଲୋକଗାଥା, କାହାଣୀ, ବ୍ରତକଥା, ପ୍ରବାଦ, ପ୍ରବଚନ, ଢଗଢମାଳୀ, ଗୀତ, କାନ୍ଦଣା, ଦୋଳି ଗୀତ, କରମା ଗୀତ, ପର୍ବ ଗୀତ ପ୍ରଭୃତିରୁ ଏହା ପ୍ରମାଣିତ । (୧୪) ଶକ୍ତିପୀଠମାନଙ୍କରେ ମଧ୍ୟ ତନ୍ତ୍ରସାଧନା ପ୍ରବେଶ କରିଛି । ଏତଦଗରେ ଚର୍ଯ୍ୟାପଦ ସିଦ୍ଧ କବିଙ୍କ ସାଧନା ଗ୍ରହଣୀୟ । ଡ. କଶୀକୁମାର ସାହୁ, ଭାଷାଦୃଷ୍ଟିରୁ କିଛି ଆଲୋଚନା କରିନଥିଲେ ମଧ୍ୟ ଧର୍ମ ଓ ଇତିହାସ ଭିତରେ ଚର୍ଯ୍ୟାଲେଖକ ବହୁସିଦ୍ଧ କବିମାନଙ୍କୁ ଉତ୍କଳୀୟ ରୂପେ ଏବଂ ଓଡ଼ିଶାକୁ ତାନ୍ତ୍ରିକ ବୌଦ୍ଧଧର୍ମର ପ୍ରଧାନ ପୀଠଭୂମି ଓ ଉଡ଼୍ଡୀୟାନ ରୂପେ ପ୍ରମାଣ କରିଛନ୍ତି ।

ନାରୀ ଶକ୍ତିକୁ ସହଜଯାନ ସାହିତ୍ୟରେ ଚଣ୍ଡାଳୀ, ଡୋମ୍ବୀ, ଶବରୀ, ଯୋଗିନୀ, ନୈରାତ୍ମା, ସହଜ ସୁନ୍ଦରୀ ଆଦି ନାନା ଆଖ୍ୟା ଦିଆଯାଇଛି । (୧୫) ଅତଏବ ମହେନ୍ଦ୍ରାଞ୍ଚଳ, ଶବର ନିବାସ ଅଞ୍ଚଳ, ଯାହାକି କଳିଙ୍ଗର ପ୍ରାଣକେନ୍ଦ୍ରରେ ଅବସ୍ଥିତ ଥିଲା । ବ୍ରାହ୍ମଣ ଓ ବୌଦ୍ଧଯୁଗରେ ଦେବୀ ଉପାସନା ବିଶେଷ ଭାବରେ ପ୍ରାଧାନ୍ୟ ଲାଭ କରିଥିଲା । 'ମହାପୀଠ' ଗ୍ରନ୍ଥରେ ସମସ୍ତ ପ୍ରକାର ସାଧନା ବର୍ଣ୍ଣିତ । ଏହାଛଡ଼ା ଅନ୍ୟାନ୍ୟ ତନ୍ତ୍ର ଏବଂ କେତେକ ପୁରାଣମାନଙ୍କରେ ଶକ୍ତିପୀଠ ବିଷୟରେ ବର୍ଣ୍ଣିତ । (ଶକ୍ତିପୀଠର ଉତ୍ପତ୍ତି ସହିତ ପୁରାଣ ବର୍ଣ୍ଣିତ ଦକ୍ଷ ପ୍ରଜାପତି ଉପାଖ୍ୟାନ ପ୍ରଣିଧାନଯୋଗ୍ୟ) । ପୁରାଣ ଓ ତନ୍ତ୍ର ଗ୍ରନ୍ଥମାନଙ୍କରେ ଅସଂଖ୍ୟ ଶକ୍ତିପୀଠର ଉଲ୍ଲେଖ ରହିଛି । ସେଥିମଧ୍ୟରୁ ୫୧ଟି

---

(୧୩) ଗଞ୍ଜାମରେ ଧର୍ମଧାରା : ଡ. ପ୍ରହ୍ଲାଦ ପଣ୍ଡା, Geeta Mandir Souvenir, Berhampur.

(୧୪) ଓଡ଼ିଆ ଗୀତିକାବ୍ୟ : ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ପୃ ୨୪

(୧୫) ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ : ଅଧ୍ୟାପକ ବୃନ୍ଦାବନ ଆଚାର୍ଯ୍ୟ

ପ୍ରସିଦ୍ଧ । ଏଥିରୁ ଜଣାଯାଏ ଯେ, ଭାରତ ବର୍ଷରେ ଏକଦା ଶକ୍ତିସାଧନା ପ୍ରଚଳିତ ଥିଲା । ଜ୍ଞାନାର୍ଣ୍ଣବ ତନ୍ତ୍ରରେ ଯେଉଁ ଶାକ୍ତପୀଠମାନଙ୍କର ବିବରଣୀ ରହିଛି, ସେଥିରେ ଏକାମ୍ର, ବିରଜା, ମହେନ୍ଦ୍ର ଆଦି ଉତ୍କଳୀୟ ପୀଠର ନାମୋଲ୍ଲେଖ ଥିବାର ଦେଖାଯାଏ । କାମାର୍ଣ୍ଣବ ତନ୍ତ୍ରରେ ଏକାମ୍ର ବିରଜା ଓଡ଼ିଶା ଆଦି ଆଠଗୋଟି ପୀଠର ବର୍ଣ୍ଣନା ରହିଛି । ବୃହନ୍ନୀଳ ତନ୍ତ୍ରରେ ବର୍ଣ୍ଣିତ ଅଛି ଯେ, ଶକ୍ତିଙ୍କର ଦକ୍ଷିଣ ଜାନୁ ଓଡ଼ିଶାରେ ଦକ୍ଷିଣପାର୍ଶ୍ୱ ମହେନ୍ଦ୍ରରେ ଓ ହୃଦ୍‌ଦାଦି ଦକ୍ଷକର ଉଡ୍ଡୀୟାନରେ ପଡିଥିଲା । (୧୬) ହିନ୍ଦୁ ତନ୍ତ୍ରରେ ଏହା ମଧ୍ୟ ଏକ ଶ୍ରେଷ୍ଠପୀଠ ଥିବାର କାଳିକା ପୁରାଣରୁ ପ୍ରମାଣିତ । ଓଡ଼ିଶାରେ କାରୁକାର୍ଯ୍ୟମଣ୍ଡିତ ଅସଂଖ୍ୟ ବୌଦ୍ଧ ଓ ହିନ୍ଦୁକୀର୍ତ୍ତି ସମ୍ବନ୍ଧରେ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ, ବ୍ରାହ୍ମଣ୍ୟ ଓ ବୌଦ୍ଧତନ୍ତ୍ର ସମାନ୍ତରାଳ ଭାବରେ ହିନ୍ଦୁ ଓ ବୌଦ୍ଧ ସମ୍ପ୍ରଦାୟରେ ଲୋକପ୍ରିୟତା ଅର୍ଜନ କରିଥିଲା । ଏକା ସମୟରେ ହିନ୍ଦୁଦେବୀ କାଳୀ, ତାରା, ମହାକାଳୀ, କରାଳୀ, ଦୁର୍ଗା, କାତ୍ୟାୟନୀ, ମହିଷମର୍ଦ୍ଦିନୀ, ଭୈରବୀ, ଭୁବନେଶ୍ୱରୀ ଏବଂ ବୌଦ୍ଧଦେବୀ ତାରା, ନୀଳ ସରସ୍ୱତୀ, ଅପରାଜିତା, ମାରୀଚ, ପର୍ଣ୍ଣଶବରୀ, ପ୍ରଜ୍ଞା, ପାରମିତା ପୂଜା ପାଉଥିଲେ । (୧୭) ଏହି ପରିପ୍ରେକ୍ଷୀରେ ମହେନ୍ଦ୍ରାଞ୍ଚଳରେ ଥିବା ସିଂହବାହିନୀ ଦୁର୍ଗା ହିଁ (ଚିତ୍ର ନଂ ୧୬) ଯଥେଷ୍ଟ ପ୍ରମାଣ ଯୋଗାଏ । ଏଠାକାର ଶାବର ସଂସ୍କୃତି ହିଁ ଶକ୍ତି ଉପାସନାର ପ୍ରକୃଷ୍ଟ ନିଦର୍ଶନ ।

ମହେନ୍ଦ୍ରରେ ସାଧନା କଲେ ବ୍ୟକ୍ତି ସମସ୍ତ ଶକ୍ତି ପ୍ରାପ୍ତହୁଏ, ଯେପରି ପର୍ଶୁରାମ ପ୍ରାପ୍ତ ହୋଇଛନ୍ତି । ମହେନ୍ଦ୍ରାଞ୍ଚଳର ଶବର ଆଦିବାସୀ ଅଞ୍ଚଳର ପ୍ରତ୍ୟେକ ଗ୍ରାମର ଗ୍ରାମଦେବୀ (ଦାରୁ ବିଗ୍ରହ) ସେମାନଙ୍କର ବ୍ରତ ଉପାସନା ଓ ନୂଆଖିଆ ପର୍ବ ଏହି ସମସ୍ତ ପୂଜା ପଦ୍ଧତିରେ ଯେଉଁ ପ୍ରଣାଳୀ ଅବଲମ୍ବନ କରାଯାଇଛି ତାହା ଅନୁଧ୍ୟାନ କଲେ ଜଣାଯାଏ ଯେ, ସେଥିରେ ପ୍ରକୃତି ଓ ପ୍ରତୀକ ପୂଜାହିଁ ମୁଖ୍ୟସ୍ଥାନ ଅଧିକାର କରିଛି । ଓଡିଶାର ଅନ୍ୟାନ୍ୟ ଆଦିବାସୀ ଅଞ୍ଚଳର ଶକ୍ତି ଉପାସନାକୁ ଲକ୍ଷ୍ୟକରି ମହେନ୍ଦ୍ରର ଆଦିବାସୀମାନଙ୍କର ପୂଜା ପଦ୍ଧତିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏମାନଙ୍କ ପ୍ରକୃତି ପୂଜାର ନିଦର୍ଶନ ହେଉଛି ଧରଣୀ, ମେଘ, ପର୍ବତ, ଜଙ୍ଗଲ, ସୂର୍ଯ୍ୟ ଓ ଚନ୍ଦ୍ରାଦିଙ୍କର ପୂଜା । ଏହି ପ୍ରକୃତି ପୂଜାର ବିଭିନ୍ନ ବିଭାଗକୁ ଲକ୍ଷ୍ୟ କଲେ ଜଣାଯାଏ, ଯେଉଁଠାରେ ରୋଗ ପ୍ରାକୃତିକ ବିତ୍ପାତ, ଅନାବୃଷ୍ଟି ଅଥବା ଅତିବୃଷ୍ଟି, ଅଗ୍ନିର ଉତ୍ପୀଡ଼ନ ତଥା ବିଭିନ୍ନ ଅଲୌକିକ କାରଣରୁ ଜୀବନ ସଙ୍କଟମୟ ହୁଏ, ସେଠାରେ ଶକ୍ତିପୂଜା କରାଯାଏ । ଏହି ଅଞ୍ଚଳରେ ସେହି ଶକ୍ତିକୁ ପଥରର ଲିଙ୍ଗ ଆକାରରେ ବା ଦାରୁସ୍ତମ୍ଭ ଆକାରରେ ପୂଜା କରାଯାଇଥାଏ । ଏହି ପ୍ରକାର ନିଦର୍ଶନ ମହେନ୍ଦ୍ରର

---

[୧୬] ଓଡ଼ିଶାରେ ଶକ୍ତି ଉପାସନା : ଡ. ହରିଶ୍ଚନ୍ଦ୍ର ଦାସ, ପୃ ୩୬

[୧୭] ଓଡ଼ିଶାର ଶାକ୍ତ ସଂସ୍କୃତି : କଲଚରାଲ ଫୋରମ, ଭୁବନେଶ୍ୱର ପୃ ୫୦

ବାରଘରଠାରୁ ଆରମ୍ଭ କରି ଦାରୁବ୍ରହ୍ମର ଫାଟକଯାଏ ବହୁସ୍ଥାନରେ ଦୃଷ୍ଟିଗୋଚର ହୋଇଥାଏ ।

ଅତଏବ ଏହି ପରିପ୍ରେକ୍ଷୀରେ ଏହି ଶାକ୍ତପୀଠ ମହେନ୍ଦ୍ରଗିରି ଉତ୍କଳୀୟ ସମାଜ ଓ ଧାର୍ମିକ ପରମ୍ପରାରେ ଯେଉଁ ପ୍ରଭାବ ପକାଇଛି, ଗୁପ୍ତଯୁଗରେ ଶକ୍ତି ଉପାସନାର ପ୍ରସାର ଲାଭ, ଭୌମକରମାନଙ୍କ ରାଜତ୍ୱକାଳରେ ଶକ୍ତିପୀଠ, ମାତୃକା ଉପାସନା, କେଶରୀ ରାଜାମାନଙ୍କର ବୈଷ୍ଣବ, ଶୈବ ଓ ଶାକ୍ତ ଧାରାର ଉପାସନା ଇତ୍ୟାଦି ଅନୁସନ୍ଧାନ କଲେ ଜଣାଯାଏ ଯେ, ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱକାଳରେ ଶୈବ, ଶାକ୍ତ ଓ ବୈଷ୍ଣବଧାରାର ସମନ୍ୱୟ ସାଧିତ ହୋଇଥିଲା । ତତ୍କାଳୀନ ମହେନ୍ଦ୍ରର ପଶ୍ଚିମର ଗଙ୍ଗରାଜାମାନଙ୍କ ରାଜଧାନୀ, ଗିରିଦୁର୍ଗ ଓ ସାଂସ୍କୃତିକ କେନ୍ଦ୍ର ଥିଲା । (୧୮) ଓଡ଼ିଶାର ଲୋକେ ସ୍ୱରପଲ୍ଲୀରୁ ଆରମ୍ଭ କରି ସମୁଦ୍ରକୂଳ ପର୍ଯ୍ୟନ୍ତ ପଞ୍ଚଯାଣିରେ ଦେବୀଙ୍କୁ ପୂଜା ଆରାଧନା କରୁଥିଲେ । ଅନେକ ସ୍ଥାନରେ ସେ ଏବେ ମଧ୍ୟ କୁଳଦେବୀ ରୂପେ ପୂଜା ପାଆନ୍ତି । ବିଶେଷକରି ମହେନ୍ଦ୍ରାଞ୍ଚଳର ପ୍ରତ୍ୟେକ ଗ୍ରାମ ଓ ପଡ଼ାରେ ଶକ୍ତି ଉପାସନା ବହୁଳଭାବରେ ଦେଖାଯାଏ ।

ଅଭିଲେଖରେ ପ୍ରଥମେ ବିରଜା ନାମ ୭ମ ଶତାବ୍ଦୀର ଶେଷ ଭାଗରେ ଥିବା ପୃଥିବୀ ମହାରାଜାଙ୍କ ତାମ୍ରଫଳକରେ ମିଳିଥାଏ । ଉଦ୍ଭବ କେଶରୀ (୭ମ ଶତାବ୍ଦୀ), ତାଙ୍କ ରାଜଧାନୀ ବିରଜା କ୍ଷେତ୍ରକୁ ପ୍ରତିଷ୍ଠା କରିଥିଲେ । ଭୌମକର ରାଜାଙ୍କ ଅଭିଲେଖରୁ ଜଣାପଡ଼େ ଯେ ଶାନ୍ତିକର ଦେବ 'ବିରଜା'ର ଅଧିବାସୀ ଥିଲେ । ଏହି ବଂଶର ପୂର୍ବତନ ରାଜାମାନେ ବୌଦ୍ଧଥିଲେ । କିନ୍ତୁ ପରବର୍ତ୍ତୀ ରାଜାମାନେ ଶୈବ ଓ ଶାକ୍ତଥିବାର ପ୍ରମାଣ ମିଳେ । ଭୌମକରଙ୍କ ପରେ ସୋମବଂଶୀ ରାଜାମାନେ ଆସିଥିଲେ । ସେମାନେ ମଧ୍ୟ ଶାକ୍ତଧର୍ମ ପ୍ରତି ଆସକ୍ତ ଥିଲେ । ଏଥିରୁ ପ୍ରତୀୟମାନ ହୁଏ ପାରଳାଠାରୁ ବିରଜା ପର୍ଯ୍ୟନ୍ତ ଯେଉଁ ଶାକ୍ତପୀଠମାନ ପ୍ରତିଷ୍ଠା ଲାଭ କରିଛି ତାହାର କେନ୍ଦ୍ରରେ ମହେନ୍ଦ୍ର ଥିବାର ଅନୁମେୟ । ସମ୍ଭବତଃ ଏହି ରାଜାମାନଙ୍କ ପୃଷ୍ଠପୋଷକତା ଯୋଗୁଁ ମହେନ୍ଦ୍ରକୁ କେନ୍ଦ୍ର କରି ସମସ୍ତ ପର୍ବତ ଶୃଙ୍ଗର ନାମଗୁଡ଼ିକ ଶକ୍ତିଙ୍କର ନାମାନୁସାରେ ନାମିତ । (ତନ୍ତ୍ରପୀଠ ଅନୁଚ୍ଛେଦରେ ସେ ସବୁର ନାମୋଲ୍ଲେଖ କରାଯାଇଛି) ।

ଶୈଳୋଦ୍ଭବ ବଂଶର ପତନ ପରେ, ଭୌମବଂଶୀୟ ରାଜାମାନଙ୍କ ଶାସନ ସମୟରେ ଯେଉଁ କେତେକ ଶକ୍ତିପୀଠ ଏହି ମହେନ୍ଦ୍ରଗିରିରେ ପ୍ରତିଷ୍ଠା କରାଯାଇଥିଲା, ତାହାର ଧ୍ୱଂସାବଶେଷ କେବଳ ବିଦ୍ୟମାନ ।

---

[୧୮] ଓଡ଼ିଶାର ଶାକ୍ତ ସଂସ୍କୃତି, ପୃ ୧ : ଓଡ଼ିଶାର କଲଚରଲ ଫୋରମ, ଭୁବନେଶ୍ୱର

ଭୌମକର ଶାସନ କାଳରେ କାପାଳିକମାନେ ଅଦ୍ଭୁତ ଶକ୍ତିସମ୍ପନ୍ନ ଯୋଗୀ ରୂପେ ଆତ୍ମପ୍ରକାଶ କରିଥିବାରୁ ପ୍ରଜାପୁଞ୍ଜ ସେମାନଙ୍କୁ ଅତ୍ୟନ୍ତ ଭୟ କରୁଥିଲେ । ସେହି ଦୁର୍ନୀତିର ଫଳ ସ୍ୱରୂପ ଭୌମ ରାଜବଂଶ ଧ୍ୱଂସମୁଖରେ ପତିତ ହେଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । [୧୯]

ପ୍ରକୃତରେ ଏହି ତନ୍ତ୍ରସାଧନା ଓ ମାତୃକା ପୂଜା ଗଙ୍ଗବଂଶ ରାଜତ୍ୱ କାଳରେ ହିଁ ଶବରମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲା । ବୌଦ୍ଧଧର୍ମର ପ୍ରଭାବକୁ ଧ୍ୱଂସ କରିବା ପାଇଁ ତନ୍ତ୍ର ଓ ଯୋଗର ବହୁଳ ପ୍ରଚାର ହୋଇଥିଲା । ଶୈଳଗଙ୍ଗ ଦେବ ଜଣେ ପ୍ରଧାନ ତାନ୍ତ୍ରିକ ଥିଲେ ଏବଂ ତାଙ୍କ ନାମରେ ମନ୍ତ୍ରମାନ ଦେଖାଯାଏ × × × ଗଙ୍ଗବଂଶ ଅମଳରେ ଓଡ଼ିଶାରୁ ବୌଦ୍ଧ ପ୍ରଭାବ ପୂରା ଭାବରେ ଲୋପ ପାଇଥିଲା ଏବଂ ତନ୍ତ୍ର ଓ ଯୋଗର ପ୍ରଭାବ ବହୁ ପରିମାଣରେ ବୃଦ୍ଧି ପାଇଥିଲା । ଗଙ୍ଗବଂଶର ରାଜତ୍ୱର ଶେଷ ଭାଗରେ ଓ ସୂର୍ଯ୍ୟବଂଶ ରାଜତ୍ୱର ପ୍ରଥମ ଭାଗରେ ତନ୍ତ୍ର ଓ ଯୋଗର ପ୍ରଭାବ ଏ ସମୟର ଲେଖକମାନଙ୍କ ରଚନାରେ ଦେଖଯାଏ । [୨୦]

ଯଥାର୍ଥରେ ଦକ୍ଷିଣ ଭାରତର ଏକ ମହାନ୍ ଶକ୍ତିପୀଠ ହିସାବରେ ଅଦ୍ୟାପି ମହେନ୍ଦ୍ରଗିରିର ଯଥେଷ୍ଟ ପ୍ରାଧାନ୍ୟ ରହିଛି । ଦାକ୍ଷିଣାତ୍ୟର ଏହି ପ୍ରଭାବକୁ ଗଙ୍ଗରାଜାଗଣ ପୁରୁଷୋତ୍ତମ କ୍ଷେତ୍ରକୁ ବହନ କରିନେଇଛନ୍ତି ବୋଲି କୁହାଯାଇପାରେ । ମହେନ୍ଦ୍ରଗିରି ଆରୋହଣ ପ୍ରାରମ୍ଭରେ କର୍ପୂରର ନିମ୍ନରେ ଆର୍ଶିଲିଙ୍ଗ ଘାଟିଠାରେ ଅବସ୍ଥିତ ସପ୍ତମାତୃକା 'ସାତ ଭଉଣୀ' ପୀଠ ସଂପର୍କରେ ଲୋକଙ୍କ ବିଶ୍ୱାସ ରହିଛି ଯେ ଯନକୃଷ୍ଣ ରାତିରେ ଏଠାରୁ ସାତୋଟି ଦୀପାଲୋକ ଗୁପ୍ତସ୍ଥାନକୁ ଗମନ କରନ୍ତି ଓ କ୍ରମଶଃ ଗାରବନ୍ଧ ନିକଟସ୍ଥ "ପୀଡ଼ା ପର୍ବତ" ଚତୁର୍ଦ୍ଦିଗରେ ଶକ୍ତିପୀଠମାନଙ୍କରେ ଲୀନ ହୋଇଯାନ୍ତି । ମହେନ୍ଦ୍ରଗିରି ଚତୁର୍ଦ୍ଦିଗରେ ଅସଂଖ୍ୟ ଶକ୍ତିପୀଠ ବିଦ୍ୟମାନ । ସେମାନଙ୍କ ମଧ୍ୟରେ କୁରେଇଶୁଣୀ, ମାଣିକେଶ୍ୱରୀ, ଲୋହିତ୍ତି, ଭୈରବୀ, ଦୁର୍ଗା, କାଳୀ ଆଦି ପ୍ରଧାନ । ଦଶହରା ପର୍ବରେ ଅସଂଖ୍ୟ ପଶୁବଳି ଏହି ପୀଠମାନଙ୍କରେ ଦିଆଯାଏ । ମହେନ୍ଦ୍ରାଞ୍ଚଳରେ ପଶୁବଳିକୁ ପ୍ରାଧାନ୍ୟ ଦିଆଯାଏ । ମାଁ ଦୁର୍ଗା ଗ୍ରାମଦେବୀ ହୋଇଛନ୍ତି ଏମାନଙ୍କର ଆରାଧ୍ୟା । ଏହି ଗ୍ରାମଦେବତା ହିସାବରେ ସେମାନେ ଶ୍ରେଷ୍ଠ ରଥ ତିଆରି କରନ୍ତି । ଦାରୁ ମୂର୍ତ୍ତି କେବଳ ନବରତ୍ନର ଭାବେ ଶକ୍ତିଙ୍କ ସଙ୍କେତ ଆକାରରେ ତିଆରି କରନ୍ତି । ତାହା ବୌଦ୍ଧଧର୍ମର ସ୍ତୂପ ଆକାର ଥାଏ । ଶିବଙ୍କ ମସ୍ତକ ଉପରେ

[୧୯] କଳିଙ୍ଗର ଆତ୍ମକଥା : ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପୃ ୪୩-୪୪ ଓଡ଼ିଆ ସାହିତ୍ୟ ଏକାଡ଼େମୀ

[୨୦] ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ୧ମଭାଗ ପୃ ୧୫୩

ଅଭିଷେକରୂଳୀ ଏମାନେ ବଳ୍ଲପତ୍ର, ହଳଦ ସିଞ୍ଚନ କରିଥାନ୍ତି । ଏହି ସ୍ତମ୍ଭ ଏକାସାଙ୍ଗରେ ସାନବଡ଼ ହିସାବରେ ପ୍ରୋଥିତ କରିଥାନ୍ତି, ଯାହା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ସଦୃଶ ଦୃଶ୍ୟମାନ । ଅଧିକାଂଶ ଶବର ମାଣିକେଶ୍ୱରୀ, କୁରେଇଶୁଣୀ ଓ ଲେହଣ୍ଡିଙ୍କୁ ଏକା ପୀଠରେ ପୂଜା କରିଥାଆନ୍ତି । ଉଦାହରଣ ସ୍ୱରୂପ, ମହେନ୍ଦ୍ରର ଗିରିକୋଟର ରାଜ୍ୟରେ ଉତ୍ତର ଦିଗେ ଅର୍ଥାତ୍ ମହେନ୍ଦ୍ରଗିରିର ପାଦଦେଶରେ ଗଣ୍ଡାହାଟି ନିକଟରେ ଯେଉଁ ଧର୍ମଲିଙ୍ଗେଶ୍ୱର ଓ ଏକାମ୍ରେଶ୍ୱର ବିଦ୍ୟମାନ, ତାର ଊର୍ଦ୍ଧ୍ୱରେ ଘୋରଣୀ ନାମକ ସ୍ଥାନରେ ଏହିଭଳି ପୂଜା ଦେଖାଯାଏ । ଏହି ଘୋରଣୀରେ ଗୋଟିଏ ପୀଠରେ ଲେହଣ୍ଡି, ମାଣିକେଶ୍ୱରୀ ଓ କୁରେଇଶୁଣୀ ଦେବୀଙ୍କୁ ପୂଜା କରିଯାଇଥାଏ । ଏଠାରେ ବଳୀ ମଧ୍ୟ ଦିଆଯାଏ । ଏହା ଏକ ଆଶ୍ଚର୍ଯ୍ୟର ବିଷୟ ଯେ ଏହି ଶକ୍ତିପୀଠର ଚତୁର୍ଦ୍ଦିଗ ଅସଂଖ୍ୟ ଶୈବପୀଠରେ ପରିପୂର୍ଣ୍ଣ ।

ଏହି ଶୈବ ଓ ଶାକ୍ତପୀଠମାନଙ୍କରେ ନାରାୟଣଙ୍କୁ ପୂଜା କରିବା ସମୟରେ ଶିବ-ଶକ୍ତିଙ୍କୁ ଆହ୍ୱାନ, ଏ ଏକ ବିଶେଷତା ରହିଛି । ଶୈବ ବ୍ୟବସ୍ଥାରେ ଲିଙ୍ଗ ପୂଜା, ଶକ୍ତି ବ୍ୟବସ୍ଥାରେ ଦେବୀ ପୂଜା ସହ ବୈଷ୍ଣବ ବ୍ୟବସ୍ଥାରେ ନାରାୟଣଙ୍କୁ ପୂଜା; ଏହି ସମସ୍ତର ଜାତୀୟତା ଓ ଜାତୀୟ ସଂହତିର ପ୍ରତୀକ । ଏହି ପ୍ରକାର ବ୍ୟବସ୍ଥା ପୁରୁଷୋତ୍ତମ କ୍ଷେତ୍ରରୁ ମିଳିଥାଏ । ମହେନ୍ଦ୍ରାଞ୍ଚଳର ପର୍ଶୁରାମ କ୍ଷେତ୍ର ଓ ନୀଳାଚଳର ପୁରୁଷୋତ୍ତମ କ୍ଷେତ୍ରର ସାମଞ୍ଜସ୍ୟ ବୈଷ୍ଣବ ବିବର୍ତ୍ତନ ଅନୁଯାୟୀ ଆଲୋଚନାର ପ୍ରାସଙ୍ଗିକତା ରହିଛି ।

ମହେନ୍ଦ୍ରଗିରିରେ ଯେଉଁ ଗୋକର୍ଣ୍ଣେଶ୍ୱର ବିଦ୍ୟମାନ, ସେଥିରେ କେବଳ ଶକ୍ତି ହିଁ ବିରାଜିତା (ଚିତ୍ର ନଂ ୯) । ଦର୍ଶକଙ୍କୁ ସେହି ଶକ୍ତିଙ୍କ ଗର୍ଭରେ ହସ୍ତ ପୂରାଇ ପ୍ରାୟ ଏକହାତ ଗଭୀରରେ ଗୋକର୍ଣ୍ଣାକାର ଲିଙ୍ଗ ପୂଜକମାନେ ସ୍ପର୍ଶ କରାଇଥାନ୍ତି ଯେଉଁଥିରେ ଗୋକର୍ଣ୍ଣାକୃତି ଅନୁଭୂତ । ତଥାପି ଏହି ପଶ୍ଚିମାଭିମୁଖୀ ଶୈବକ୍ଷେତ୍ର ତନ୍ତ୍ରପୀଠ ହିସାବରେ ମଧ୍ୟ ଅଦ୍ୟାପି ବୁଢାରସିଂହର ତାନ୍ତ୍ରିକମାନଙ୍କ ଦ୍ୱାରା ବ୍ୟବହୃତ ହୁଏ । (ଏହା ତନ୍ତ୍ର ଆଲୋଚନା କ୍ରମେ ବର୍ଣ୍ଣିତ) । ଶିବ ଓ ଶକ୍ତି ଏକ ସ୍ଥାନରେ ପୂଜା ପାଇବା ସଂପର୍କରେ ପଶ୍ଚିମାଭିମୁଖୀ ଗୋକର୍ଣ୍ଣେଶ୍ୱର ମନ୍ଦିର ଏକ ପ୍ରକୃଷ୍ଟ ଦୃଷ୍ଟାନ୍ତ । ଏହିଭଳି ଅନ୍ୟ ଏକ ପଶ୍ଚିମାଭିମୁଖୀ ମନ୍ଦିରର ଧ୍ୱଂସାବଶେଷ ଯୁଧିଷ୍ଠିର ମନ୍ଦିରର ଠିକ୍ ପାଦଦେଶରେ ଅର୍ଥାତ୍ ବୁଢାରସିଂଠାରୁ ପ୍ରାୟ ୩ କି.ମି: ଦୂରରେ ଅବସ୍ଥିତ । ଏଠାରେ ମଧ୍ୟ କୁନ୍ତୀ ଦେଉଳର ଶକ୍ତି ଭଳି ଶକ୍ତି ହିଁ ପୂଜାପାଆନ୍ତି । ସେହି ମନ୍ଦିରର ତାଡ଼କେଶ୍ୱର ପୂଜିତ ହୁଅନ୍ତି (ଚିତ୍ର ନଂ ପ୍ଲେଟ ୩.୧ ଦ୍ରଷ୍ଟବ୍ୟ) । ଏହି ବୁଢ଼ାରସିଂ ଅଞ୍ଚଳ ତନ୍ତ୍ର ପୂଜାର ସ୍ଥଳ ଓ ଏହି ତାଡକେଶ୍ୱର ମନ୍ଦିର ମଧ୍ୟ ଏକ ଶକ୍ତିପୀଠ ଅଟେ । ଏଠାରେ ଲିଙ୍ଗ ପୂଜିତ ହୁଅନ୍ତି ନାହିଁ । ଏହି ଶୈବପୀଠ ତଥା ଶକ୍ତି ଆରାଧନାର କେନ୍ଦ୍ର, ନିଶ୍ଚିତ

ରୂପେ ମାଠର ବଂଶ ଶାସନ କାଳରେ ହେବା ସମ୍ଭବ । ତା ନ ହେଲେ ତା'ର ନିକଟରେ ଶକ୍ତି ଶିବଙ୍କ ସହିତ ଜଗନ୍ନାଥ (ଚିତ୍ର ନଂ ୧୯) ପ୍ରତିଷ୍ଠିତ ହୋଇନଥାନ୍ତେ ଓ ବୈଷ୍ଣବ ଭାବଧାରା ପ୍ରକାଶ ପାଇନଥାନ୍ତା ।

## (ଗ) ବୈଷ୍ଣବ ପୀଠ :

ପ୍ରଥମ ଶତାବ୍ଦୀ ବେଳକୁ ଅର୍ଥାତ୍ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବର ବହୁ ପୂର୍ବରୁ ବୈଷ୍ଣବ ମତବାଦ ଆର୍ଯ୍ୟାବର୍ତ୍ତରେ ପରିପ୍ରସାର ଘଟିଥିଲା । ଅଗ୍ନି, ଇନ୍ଦ୍ର, ବରୁଣ, ରୁଦ୍ର, ବିଷ୍ଣୁ ପ୍ରଭୃତି ଦେବତାଙ୍କ ପୂଜା ବେଦ, ଉପନିଷଦରେ ବର୍ଣ୍ଣିତ । ଶ୍ରୀମଦ୍ ଭଗବତ୍ ଗୀତାରେ ବର୍ଣ୍ଣିତ କୃଷ୍ଣ ବାସୁଦେବ ଏବଂ ବୈଦିକ ଯୁଗର ଦେବତା ବିଷ୍ଣୁ ଓ ନାରାୟଣଙ୍କ ଏକ ଓ ଅଭିନ୍ନ ରୂପେ ଗୃହୀତ । •ସାତବାହନ ରାଜା ପ୍ରଥମ ସାତକର୍ଣ୍ଣୀଙ୍କ କେତେକ ଘାଟଗୁମ୍ଫା ଅଭିଲେଖରେ ଭାଗବତ ଧର୍ମ ବିଷୟ ଅନୁସୂଚିତ । ମୌର୍ଯ୍ୟଯୁଗ ପରେ ମଧ୍ୟ ସମଗ୍ର ଭାରତରେ ବୈଷ୍ଣବ ଧର୍ମର ଅଭିବୃଦ୍ଧି ଘଟିଥିଲା । ଏହି ସମୟରେ ମଧ୍ୟ ମହେନ୍ଦ୍ରାଞ୍ଚଳରେ ବୈଷ୍ଣବ ଧର୍ମ ପ୍ରସାର ଲାଭ କରିଥିବା ବିଶ୍ୱାସଯୋଗ୍ୟ । (୨୧) ଯେହେତୁ ସାତବାହନ ରାଜା ସାତକର୍ଣ୍ଣୀଙ୍କର ମହେନ୍ଦ୍ରାଞ୍ଚଳ ଶାସନାଧୀନ ଥିଲା । ଗୁପ୍ତ ଯୁଗରେ ସମ୍ରାଟମାନେ ବୈଷ୍ଣବ ଧର୍ମ ପ୍ରତି ଆସକ୍ତ ଥିଲେ । ଏହି ଯୁଗରେ ବିଷ୍ଣୁଙ୍କର ପୂଜା ନିମିତ୍ତ ବିଭିନ୍ନ ସ୍ଥାନରେ ମନ୍ଦିରମାନ ଅନୁଷ୍ଠିତ ହୋଇଥିଲା । ଏହି ଯୁଗରେ ମଧ୍ୟ ସମୁଦ୍ରଗୁପ୍ତ ଭାରତର ଦକ୍ଷିଣାଞ୍ଚଳ ପ୍ରତି ଦୃଷ୍ଟି ଦେଇଥିଲେ ଏବଂ ସେ ମହେନ୍ଦ୍ର ପର୍ବତକୁ ଆଗମନ କରିଥିଲେ । ତେଣୁ ଗୁପ୍ତଯୁଗରେ ମହେନ୍ଦ୍ରାଞ୍ଚଳରେ ବୈଷ୍ଣବ ଧର୍ମର ପ୍ରସାର ଘଟିଥିବା ନିଃସନ୍ଦେହ । ସାନ୍ତା ବୋମାଲି ତାମ୍ରଶାସନରୁ ଜଣାଯାଏ ଯେ କଳିଙ୍ଗ ରାଜା ଇନ୍ଦ୍ରବର୍ମା ଦ୍ୱିତୀୟ ନିଜକୁ ରାମେଶ୍ୱର ଭଟ୍ଟାରକ ସ୍ୱାମୀ ରୂପେ ଅଭିହିତ କରିଥିଲେ । ପାରଲାଖେମୁଣ୍ଡି ତାମ୍ରଶାସନରେ ଘୋଷିତ ଯେ ଦୁର୍ଜୟବଂଶୀ ରାଜା ପୃଥ୍ୱୀ ମହାରାଜ ପଞ୍ଚମ ଓ ଷଷ୍ଠ ଶତାବ୍ଦୀରେ ଶ୍ରୀରାମଙ୍କ ତୁଲ୍ୟ ଥିଲେ । (୨୨) ଯେହେତୁ ପାରଳା ଅଧୀନରେ ମହେନ୍ଦ୍ରାଞ୍ଚଳ ଅବସ୍ଥିତ ଓ ଉତ୍କଳୀୟ ଏବଂ ଗୌଡ଼ୀୟ ବୈଷ୍ଣବଧାରାରେ ଓତଃପ୍ରୋତ ଭାବେ ଜଡ଼ିତ, ମହେନ୍ଦ୍ରାଞ୍ଚଳ ଏଥିରୁ ବାଦ୍ ଯାଇ ନାହିଁ । କାରଣ ମହେନ୍ଦ୍ରର ଦାରୁବ୍ରହ୍ମଠାରେ ଏବେ ମଧ୍ୟ ନୀଳମାଧବ ପୂଜା କରାଯାଏ । ନୀଳମାଧବ (ଚିତ୍ର ଦ୍ରଷ୍ଟବ୍ୟ) ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ମଧ୍ୟଭାଗରେ ମାଠର ବଂଶ ଶାସନ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ କଳିଙ୍ଗରେ ଭାଗବତ ବା ବୈଷ୍ଣବ ଧର୍ମର ଅଭ୍ୟୁଦୟ ପରିଲକ୍ଷିତ ହୁଏ ।

---

(୨୧) ଓଡ଼ିଶାର ଧର୍ମ : ଡ. ଭଗବାନ ପଣ୍ଡା, ପୃ ୪୯ ଓ ୫୦ ।

(୨୨) —ଏକନ—

ସେତେବେଳେ କଳିଙ୍ଗରେ ବାସୁଦେବ କୃଷ୍ଣ ବା ବିଷ୍ଣୁଙ୍କର ପୂଜା ଅପେକ୍ଷା ନାରାୟଣଙ୍କର ପୂଜା ବିଶେଷ ଲୋକପ୍ରିୟ ଥିଲା । କ୍ରମେ ବିଷ୍ଣୁ ଓ ନାରାୟଣ ଏକ ଏବଂ ଅଦ୍ୱିତୀୟ ରୂପେ ସ୍ୱୀକୃତ ହେଲେ । ପୁନଶ୍ଚ, ଅନୁଶାସନମାନଙ୍କରୁ ଜଣାଯାଏ ଯେ କେତେକ ଗୁପ୍ତ ସମ୍ରାଟ୍ ବିଷ୍ଣୁଙ୍କୁ ମଧ୍ୟ "ମାଧବ" ରୂପରେ ପୂଜା ଅର୍ଚ୍ଚନା କରୁଥିଲେ । ଆଇତୀ ସେନଙ୍କ ଅଫ୍‌ସଡ୍ ଶିଳାଲେଖାନୁସାରେ ଗୁପ୍ତ ସମ୍ରାଟ୍ ମାଧବସେନ ମାଧବ ଭକ୍ତ ଥିବାର ସୂଚନା ମିଳେ । ସେ ସମ୍ରାଟ୍ ହର୍ଷବର୍ଦ୍ଧନ ତଥା କର୍ଣ୍ଣ ସୁବର୍ଣ୍ଣର ରାଜା ଶଶାଙ୍କଙ୍କ ସମସାମୟିକ ଥିଲେ । ସେହି ରାଜାଙ୍କର ଅଧୀନରେ ପ୍ରାଚୀନ କଙ୍ଗୋଦମଣ୍ଡଳ ବା ବର୍ତ୍ତମାନର ଗଞ୍ଜାମ ଜିଲ୍ଲାର ଉତ୍ତରାଂଶ ଓ ପୁରୀ ଜିଲ୍ଲାର ଅଧିକାଂଶ ଅଞ୍ଚଳକୁ ନେଇ ଗଠିତ ଭୂଖଣ୍ଡରେ ଶୈଳୋଦ୍ଭବ ବଂଶୀୟ ରାଜା ମାଧବ ରାଜ ରାଜୁତି କରୁଥିବା ତାଙ୍କ ପ୍ରଦତ୍ତ ଗଞ୍ଜାମ ଅନୁଶାସନରୁ ସୂଚିତ ହୁଏ । ଏହି ମାଧବ ଉପାସନା ସମ୍ପ୍ରଦାୟ କ୍ରମେ ପ୍ରାଚୀନ ଉତ୍କଳରେ ଶୈଳୋଦ୍ଭବ ରାଜାମାନଙ୍କୁ ଅନେକାଂଶରେ ପ୍ରଭାବିତ କରିଥିଲା । (୧୩) । ଏହା ଇତିହାସ ସ୍ୱୀକୃତ ଯେ କଙ୍ଗୋଦ ରାଜ୍ୟର ଶାସନା କର୍ତ୍ତା ଏହି ମହେନ୍ଦ୍ରାଞ୍ଚଳରୁ ସୃଷ୍ଟି ଓ କଙ୍ଗୋଦର ଦକ୍ଷିଣ ସୀମା ହିସାବରେ ମହେନ୍ଦ୍ରାଞ୍ଚଳ ଅବସ୍ଥିତ ଥିବାରୁ ଏଠାରେ ବୈଷ୍ଣବ ଧର୍ମର ସୂତ୍ରପାତ ଘଟିଥିଲା ଏବଂ ତାହା ଏହି ଅଞ୍ଚଳରୁ ଶୈଳୋଦ୍ଭବ ବଂଶର ରାଜାମାନଙ୍କୁ ପ୍ରଭାବିତ କରି ସମଗ୍ର ଉତ୍କଳର ଉତ୍ତର ସୀମାଯାଏ ପ୍ରସାର ଲାଭ କରିଥିଲା । ଗଞ୍ଜାମ ଅଞ୍ଚଳରେ ଅବସ୍ଥିତ ଶ୍ୱେତକ ରାଜ୍ୟ (ବର୍ତ୍ତମାନର ଚିକିଟି ଓ ଖିମିଣ୍ଡି ଅଞ୍ଚଳ)ରେ ରାଜତ୍ୱ କରୁଥିବା ଗଙ୍ଗବଂଶୀୟ ସମ୍ରାଟ୍ ଇନ୍ଦ୍ରବର୍ମାଙ୍କ ସାନଶୈମୁଣ୍ଡିରୁ ପ୍ରାପ୍ତ ଏକ ତାମ୍ର ଶାସନରୁ ଜଣାଯାଏ ଯେ ସେ "ଲୋକ ମାଧବ" ନାମକ ବିଷ୍ଣୁମୂର୍ତ୍ତିଙ୍କ ପୂଜା ପାଇଁ କେତେକ ଭୂମି ଦାନ କରିଥିଲେ । ପରେ ପରେ ଏହି ବଂଶର ଅନନ୍ତ ବର୍ମାଙ୍କ ରାଣୀ ଓ ଯୁବରାଜ ରାଜେନ୍ଦ୍ରବର୍ମାଙ୍କ ମାତା ଲୋକ ମହାଦେବୀ ସଂସ୍କୃତ ରକ୍ଷା ପାଇଁ 'ଶ୍ରୀ ଲୋକ-ମାଧବ' ନାମକ ମାଧବ ମୂର୍ତ୍ତି ଏକ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ଏଥିରୁ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀଠାରୁ ଦକ୍ଷିଣ ଓଡ଼ିଶାରେ ମାଧବ ବିଗ୍ରହ ପ୍ରତିଷ୍ଠା ଓ ପୂଜା ପ୍ରଚଳିତ ହୋଇଥିବାର ନିଃସନ୍ଦେହରେ ପ୍ରମାଣିତ (୧୪) ।

ଏହି ପରିପ୍ରେକ୍ଷୀରେ ମହେନ୍ଦ୍ରରେ ପୂଜା ପାଉଥିବା ନାରାୟଣ ମୂର୍ତ୍ତି (ଫଟ ନଂ ୧୩)ର କାରୁକାର୍ଯ୍ୟରୁ ଅଷ୍ଟମ ଶତାବ୍ଦୀରେ ନିର୍ମିତ ଗାନ୍ଧାରାଡ଼ି ନୀଳମାଧବଙ୍କ ବିଗ୍ରହର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଅଧୁନା ମହେନ୍ଦ୍ରରେ ଗୋକର୍ଣ୍ଣେଶ୍ୱର (ନାମାନ୍ତର କୁନ୍ତୀ ଦେଉଳ) ସମ୍ମୁଖରେ ଯେଉଁ ବିଷ୍ଣୁବିଗ୍ରହ ସ୍ଥାପନ କରାଯାଇଛି, ତାହା ବୌଦ୍ଧଯୁଗର କଳା

---

(୧୩) କୋଣାର୍କ ୭୨ ତମ ସଂଖ୍ୟା ୧୯୮୭ : ଡ଼. ଲକ୍ଷ୍ମଣକୁମାର ପଣ୍ଡା, ପୃ ୧୨

(୧୪) କୋଣାର୍କ —ଏଜନ—ପୃ ୭୮

ବୋଲି ଉକ୍ତିର ସତ୍ୟନାରାୟଣ ରାଜଗୁରୁ ପ୍ରମାଣ ଦିଅନ୍ତି । ବିଷ୍ଣୁଙ୍କ ଅବତାର ପରଶୁରାମ ଏହିଠାରେ ନିବାସ କରିବା ପ୍ରମାଣ ଯଥାର୍ଥରେ ଗ୍ରହଣୀୟ । (୧୫) ପୁନଶ୍ଚ ମହେନ୍ଦ୍ରଗିରିର ଶବରମାନେ ଜଗନ୍ନାଥଙ୍କ ସୃଷ୍ଟି ସହ ଜଡ଼ିତ ବୋଲି ଗବେଷକ ସ୍ୱର୍ଗତ ଅନିରୁଦ୍ଧ ଦାସ ଉଲ୍ଲେଖ କରିଛନ୍ତି । ତଦୁପରି, ଜମଦଗ୍ନି ଇକ୍ଷ୍ୱାକୁ କୁଳୋଦ୍ଭବ ରେଣୁକାଙ୍କ ସହିତ ବିବାହ କରିଥିଲେ । ତାଙ୍କ ଔରସରୁ ସମ୍ପୂର୍ଣ୍ଣ କ୍ଷତ୍ରିୟ ଧ୍ୱଂସକାରୀ ଭଗବାନ ପରଶୁରାମ ଜନ୍ମ ଗ୍ରହଣ କଲେ, ଯେ କି ସକଳ ଲୋକଙ୍କ ଗୁରୁ ଭଗବାନ ନାରାୟଣଙ୍କ ଅଂଶ ଥିଲେ ଓ ରାମାୟଣ ଅନୁସାରେ ମହେନ୍ଦ୍ରଗିରିରେ ତପଶ୍ଚରଣ କରୁଥିଲେ ।

## ପରଶୁରାମ ସାଧନା ପୀଠ

ପୂର୍ବରୁ ସୂଚନା ଦିଆଯାଇଛି କି ଚରୁ ପ୍ରଭାବରୁ ବ୍ରାହ୍ମଣଙ୍କ ପୁତ୍ର ହେଲେ ମଧ୍ୟ ମହାବୀର ପରଶୁରାମ କ୍ଷାତ୍ରକର୍ମା ହୋଇଗଲେ । ବିଷ୍ଣୁଙ୍କ ଆବେଶ ଅବତାର ହେଲେ ମଧ୍ୟ ଶଙ୍କରଙ୍କଭକ୍ତ ଅଟନ୍ତି । ଏହାଙ୍କ ଜନ୍ମବୃତ୍ତାନ୍ତ ଓ କାର୍ଯ୍ୟକଳାପ ପୂର୍ବ ଅଧ୍ୟାୟରେ ବିସ୍ତୃତ (୧୬)। କୃତବୀର୍ଯ୍ୟଙ୍କ ପୁତ୍ର କାର୍ତ୍ତିବୀର୍ଯ୍ୟ ସହସ୍ରାର୍ଜୁନଙ୍କ ହତ୍ୟାକଲି ପରେ ପାପର ପ୍ରାୟଶ୍ଚିତ୍ତ ନିମିତ୍ତ ବିଭିନ୍ନ ତୀର୍ଥାଟନ କରିଥିଲେ । ଏଥି ପୂର୍ବରୁ ମାତୃହତ୍ୟା ଦୋଷର ପ୍ରାୟଶ୍ଚିତ୍ତ ପାଇଁ ତୀର୍ଥସେବନ କରିଥିଲେ । ସାରା ତୀର୍ଥ ଭ୍ରମଣ ଶେଷରେ ମହେନ୍ଦ୍ରରେ ଅବସ୍ଥାପିତ ହେଲେ । ପରେ ରାମଚନ୍ଦ୍ର କଳାହରଣ କରିବା ପରେ ପୁନର୍ବାର ତୀର୍ଥସେବନ ପୂର୍ବକ ପୁନଃ ଶକ୍ତି ଆହରଣ କରିଥିଲେ । ତା ପରେ କାଶ୍ୟପଙ୍କୁ ପୃଥିବୀ ଦାନ ଦେଇ ତାଙ୍କ ଆଦେଶରେ ମହେନ୍ଦ୍ରଗିରିରେ ସେ ଚିରଞ୍ଜୀବୀ । ମହେନ୍ଦ୍ରାଶ୍ରମ ଆରମ୍ଭ । ଗୁରୁକୁଳାଶ୍ରମ ପ୍ରତିଷ୍ଠା ।

ସାଧକଙ୍କ ମତରେ, (୧୭) ରଞ୍ଜନ ଶକ୍ତିର ନାମ ରାମ । ତେଣୁ ବିଷ୍ଣୁ ଅବତାର ଶ୍ରୀରାମଙ୍କ ମନ୍ତ୍ର—'ରାଂ ରାମାୟ ନମଃ' । କ୍ଷାତ୍ରତେଜରେ ଶ୍ରୀରାମଙ୍କ ଜନ୍ମ । ପରଶୁରାମ ବ୍ରହ୍ମ ତେଜରେ ଦୀପ୍ତିବନ୍ତ । ରଂ ଅଗ୍ନିବୀଜ ଅଟେ । ଏଥିର ଦ୍ରଷ୍ଟା ହେଉଛନ୍ତି କଶ୍ୟପଋଷି (୧୮) ରଂ ଅଗ୍ନିବୀଜ ମନ୍ତ୍ରରେ ଆକାର ଯୋଗ ହେଲେ ରାଂ ହୁଏ । ପଞ୍ଚଭୂତ (କ୍ଷିତି,

---

(୧୫) ଶ୍ରୀବିଷ୍ଣୁ ପୁରାଣ, ସପ୍ତମ ଅଧ୍ୟାୟ ଶ୍ଳୋକ ୩୫/୩୬

(୧୬) ଅଗ୍ନିପୁରାଣ ୪।୪୯, ଗରୁଡ଼ ପୁରାଣ ୧।୧୪୨, ଦେବୀ ଭାଗବତ ୪।୧୬, ପଦ୍ମପୁରାଣ ୫।୨୩, ୬।୧୧୬, ୨୬୮, ବ୍ରହ୍ମ ୧୦୮, ୨୧୩, ବ୍ରହ୍ମାଣ୍ଡ ୨।୨୩ ଶ୍ରୀମଦ୍ ଭାଗବତ ୧।୩, ୨।୭, ୯।୧୫, ୧୧।୪, ମତ୍ସ୍ୟ ୪୭, ବାୟୁ ୨।୩୫,୩୬, ହରିବଂଶ ୧।୪୧, ମହାଭାରତ ୧୨।୩୩୯, ୩୪୦,୩୪୮ ।

(୧୭) ପ୍ରଣବାନନ୍ଦ ତ୍ରିପାଠୀ : ପରଶୁରାମ ପୃ. ୧୮

(୧୮) ଋଷିମାନେ ମନ୍ତ୍ର ଦ୍ରଷ୍ଟା । ମନ୍ତ୍ର ସୃଷ୍ଟି କରନ୍ତି ନାହିଁ । ବେଦ ମନୁଷ୍ୟ କୃତ କି ? ପ୍ରିୟବ୍ରତ ଦାସ

ଅପ୍, ତେଜ, ମରୁତ ଓ ବ୍ୟୋମ)ର ଆସ୍ୱ ଶକ୍ତି ହେଉଛି ଅଗ୍ନି । ଗୋଟିଏ ଭୂତରେ ବସ୍ତୁ ହୋଇପାରିବ ନାହିଁ । ରଂ ନିରାକାର ସ୍ୱରୂପ । ନିରାକାରକୁ ଆକାର ଦେବାକୁ ହେଲେ ଅଗ୍ନିବୀଜଦ୍ୱାରା ଅନ୍ୟ ଚାରୋଟି ଭୂତକୁ ତେଜରେ ତଂଚାଇବାକୁ ହୁଏ । ତେବେ ତାହା ରହିହୁଏ । ଅର୍ଥାତ୍ କୌଣସି ବସ୍ତୁ ନିଜ ଭିତରେ ଉଦ୍‌ବେଳିତ ହେଲେ ଯେଉଁ ବିସ୍ଫୋରଣ ପ୍ରକାଶ ପାଏ ତାହାର ନାମ ରାମ । ସେହି ପରଶୁରାମ କୁରୁକ୍ଷେତ୍ରରେ ପାଞ୍ଚଟି (୩) ସରୋବର ନିର୍ମାଣକରି ପିତୃ ତର୍ପଣ କଲେ ଓ ସମଗ୍ର ପୃଥିବୀକୁ କାଶ୍ୟପଙ୍କୁ (୪) ଦାନଦେଇ ମହେନ୍ଦ୍ରଗିରି ଚାଲି ଆସିଲେ । ମହେନ୍ଦ୍ରର ପରଶୁରାମ କୁଣ୍ଡ (ଚିତ୍ର ନଂ ପ୍ଲେଟ ୨-୧୦) ଏହାର ହିଁ ପ୍ରମାଣ । ଶିବଧନୁ ଭଙ୍ଗ, ସୀତା ସ୍ୱୟଂବର, ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ତେଜ ହରଣ ପୁନଃ ମହେନ୍ଦ୍ରାଚଳ ଗମନ ଇତ୍ୟାଦି ପୂର୍ବେ ବର୍ଣ୍ଣିତ । ପରଶୁରାମ ସାଧନା କରି ଯାବଜ୍ଜୀବନ ବ୍ରହ୍ମଚର୍ଯ୍ୟ ରହିଯାଇ ଅଛନ୍ତି । ତାଙ୍କର ସନ୍ତତି ପରଂପରାରେ କୌଣସି ଉଲ୍ଲେଖ ହୋଇନାହିଁ । କିନ୍ତୁ ଦ୍ରୋଣ, କର୍ଣ୍ଣ ଆଦିଙ୍କୁ ଅସ୍ତ୍ର ଶିକ୍ଷା ଦେବାପରେ ଶାନ୍ତ ଭାବଗ୍ରହଣ କରି ତପସ୍ୟାରେ ମଗ୍ନ ହୋଇଛନ୍ତି ।

ପରଶୁରାମଙ୍କଦ୍ୱାରା ନିର୍ମିତ ଏକ କଳ୍ପସୂତ୍ର ପରଶୁରାମ କଳ୍ପସୂତ୍ର ନାମରେ ଖ୍ୟାତ । ଏଥିରେ ତ୍ରିପୁରଦେବୀଙ୍କ ମହିମା ଓ ପୂଜାବିଧି ପ୍ରଦତ୍ତ । ଏହିବିଦ୍ୟା ପରଶୁରାମ ଦତ୍ତାତ୍ରେୟଙ୍କଠାରୁ ପ୍ରାପ୍ତ ହୋଇଥିବା ବିଷୟ ପୂର୍ବେ ବର୍ଣ୍ଣିତ । ଏହି ବିଷୟ ପୁରାଣମାନଙ୍କରେ ବିଶେଷକରି ତ୍ରିପୁରାରହସ୍ୟ ଖଣ୍ଡରେ ପ୍ରାପ୍ତ ହୋଇ ପାରିବେ । ପୁନଶ୍ଚ ଶ୍ରୀ ଲଳିତୋପାଖ୍ୟାନରେ ମଧ୍ୟ ଏହି ବିବରଣୀ ଦୃଷ୍ଟ । (୫)

ପରଶୁରାମଙ୍କ ଜନ୍ମ ବୈଶାଖ ଶୁକ୍ଳ ତୃତୀୟାରେ (ମତାନ୍ତରେ ଦ୍ୱାଦଶୀ) ହୋଇଥିଲା । ଉକ୍ତଦିନ ଜୟନ୍ତୀ ପାଳିତ ହୁଏ । ତାଙ୍କ ଗୁରୁଙ୍କ (ଦତ୍ତାତ୍ରେୟ) ସହ୍ୟାଦ୍ରୀ (ପଶ୍ଚିମଘାଟ ପର୍ବତମାଳା) ଅତଏବ ଭକ୍ତ, ସାଧକ, ତୀର୍ଥଯାତ୍ରୀଙ୍କ ପାଇଁ ମହେନ୍ଦ୍ରଠାରୁ ସୂର୍ପାରକ ଅର୍ଥାତ୍ ଚମ୍ପେ ପର୍ଯ୍ୟନ୍ତ ଅଞ୍ଚଳକୁ ପରଶୁରାମ କ୍ଷେତ୍ର କୁହାଯାଏ । ଏହି ପରଶୁରାମ କ୍ଷେତ୍ରର ସଦର ମହକୁମା ଚର୍ଚ୍ଚାମର ମହେନ୍ଦ୍ରାଚଳ । ଯୁଗେ ଯୁଗେ ସେ ହେଲେ ସାଧକ ଓ ଦିଗ୍‌ଦର୍ଶକ । ସର୍ବଦା ପରଶୁରାମ ମହେନ୍ଦ୍ରରେ ରହନ୍ତି, ମହୋଦଧୀରେ ସ୍ନାନ

---

(୩) ସମନ୍ତପଞ୍ଚକ ବ୍ୟତୀତ ଅନେକ କୁଣ୍ଡ ଦକ୍ଷିଣ ଭାରତରେ ଦୃଷ୍ଟ । ସେଥିରୁ ନଅଗୋଟି ତର୍ପଣ କୁଣ୍ଡ ମହେନ୍ଦ୍ରଚନ୍ଦ୍ରଙ୍କ ଗର୍ଭରେ ସୁରକ୍ଷିତ । ତାହା ପରଶୁରାମ କୁଣ୍ଡ ନାମରେ ଖ୍ୟାତ ।

(୪) ମହାଭାରତ ଆଦ୍ୟପର୍ବ ୨।୮।୯, ଅଗ୍ନିପୁରାଣ ଅଧ୍ୟାୟ ୬

(୫) ବ୍ରହ୍ମାଣ୍ଡପୁରାଣ—୪୦ ଅଧ୍ୟାୟ

କରନ୍ତି, ସହ୍ୟାଦ୍ରୀରେ ଗୁରୁଙ୍କୁ ଦର୍ଶନ ଓ ପୁରୀରେ ଜଗନ୍ନାଥ ତୀର୍ଥ ସେବନ: ଏସବୁ ଅଦୃଶ୍ୟ ଶକ୍ତିର ପ୍ରଭାବ ।

ଏଠାରେ ପର୍ଶୁରାମଙ୍କ ବିଗ୍ରହ (ଚିତ୍ର ନଂ ୧) ସ୍ଥାପିତ୍ର ସ୍ଥାପନ କାଞ୍ଚିକାମକୋଟୀ ଶଙ୍କରାଚାର୍ଯ୍ୟ ଶ୍ରୀଶ୍ରୀଶ୍ରୀ ଜୟେନ୍ଦ୍ର ସରସ୍ୱତୀଙ୍କ ସ୍ୱପ୍ନକୁ ସାକାର କରାଗଲେ ମଧ୍ୟ ମନ୍ଦିର ନିର୍ମାଣ ହୋଇନାହିଁ । ପର୍ଶୁରାମଙ୍କୁ ଗୁରୁ ହିସାବରେ ପୂଜା କରାଯାଏ । ଭାରତ ବର୍ଷରେ ବିଭିନ୍ନ ସ୍ଥାନରେ ପର୍ଶୁରାମଙ୍କ ପ୍ରତିମା ପୂଜା ହୁଏ । ପୂଜନବିଧି ପର୍ଶୁରାମ ତନ୍ତ୍ରରେ ପ୍ରଦତ୍ତ ।

ପର୍ଶୁରାମଙ୍କ ଗୁରୁ ହେଲେ ଦତ୍ତାତ୍ରେୟ । ତାଙ୍କର ଗତିବିଧି ସମ୍ପର୍କରେ ଦତ୍ତାତ୍ରେୟ ବଜ୍ରକବଚରେ କୁହାଯାଇଛି—

ବାରାଣସୀ ପୁରସ୍ନାୟୀ କୋହ୍ଲାପୁର ଜପାର୍ଦ୍ଦରଃ
ମାହୁରୀପୁର ଭିକ୍ଷାଶୀ ସହ୍ୟଶାୟୀ ଦିଗମ୍ବରଃ । (୭)

ପୁରାଣମାନଙ୍କରୁ ଦତ୍ତାତ୍ରେୟଙ୍କ ଯେଉଁ ସ୍ୱରୂପ ମିଳେ (୮) ସେଥିରୁ ଜଣାଯାଏ କି ସେ ଅବଧୂତ ବିଦ୍ୟାର ଆଦ୍ୟ ଆଚାର୍ଯ୍ୟ ଭଗବାନ ଅଟନ୍ତି । ଅବଧୂତ ବାରାଣସୀରେ

---

(୭) କଲ୍ୟାଣ ୭୩ ପୃ ୪୧୫—ଦତ୍ତାତ୍ରେୟ ବଜ୍ରକବଚ ।

(୮) ଦତ୍ତାତ୍ରେୟଙ୍କ ଜନ୍ମରହସ୍ୟ—ସହ୍ୟାଚଳରେ ଦତ୍ତାତ୍ରେୟ—ଏଜନ—
ଦତ୍ତାତ୍ରେୟଙ୍କ ମାତାଙ୍କ ନାମ ଅନସୂୟା ଓ ପିତାଙ୍କ ନାମ ଅତ୍ରିମୁନି ।
ଦତ୍ତାତ୍ରେୟଙ୍କ ଜନ୍ମରହସ୍ୟ ହିଁ ଅବଧୂତଙ୍କ ଜନ୍ମ ରହସ୍ୟ ଅଟେ ।
ଅନସୂୟାଙ୍କ ପତିବ୍ରତା ପରୀକ୍ଷା କରିବାପାଇଁ ବ୍ରହ୍ମା, ବିଷ୍ଣୁ, ମହେଶ ଛଦ୍ମବେଶରେ ସନ୍ନ୍ୟାସୀ ହୋଇ ଆତିଥ୍ୟ ସ୍ୱୀକାର କରିବା ପାଇଁ ଅନସୂୟାଙ୍କ ଭିକ୍ଷାର୍ଥୀ ହେଲେ । ବିବସ୍ତ୍ର ହୋଇ ଅତିଥିସେବା ପାଇଁ ସଂକଳ୍ପ କରିବା ପାଇଁ ବାଧ୍ୟ କଲେ । ସତୀସାଧ୍ୱୀ ଅନସୂୟା ପତିଙ୍କୁ ସ୍ମରଣ କରି ଛଡ଼ି ସାଧୁମାନଙ୍କ ଉପରେ ପାଦୁକାଜଳ ସିଞ୍ଚନ କରନ୍ତେ ତିନିହେଁ ଶ୍ରେଷ୍ଠ ଶିଶୁ ହୋଇଗଲେ । ଅନସୂୟା ଶିଶୁତ୍ରୟଙ୍କୁ କୋଳରେ ଧାରଣ କରି ନିଜର ସଂକଳ୍ପ ଓ ତ୍ରିମୂର୍ତ୍ତିଙ୍କ ଇଚ୍ଛା ପୂରଣ କଲେ । ଲକ୍ଷ୍ମୀ, ସତୀ ଓ ସରସ୍ୱତୀ ଅନସୂୟାଙ୍କ ନିକଟରେ କାକୁତି ମିନତି କରନ୍ତେ ପୁନର୍ବାର ଜଳ ସିଞ୍ଚନ କରି ପ୍ରକୃତ ରୂପ ଫେରାଇଥିଲେ । ସତ୍ୟ କଳ୍ପ ତ୍ରିମୂର୍ତ୍ତି ଅବତାରରେ ତ୍ରିଶକ୍ତି ଅନସୂୟାଙ୍କ ଗର୍ଭରୁ ଜନ୍ମ ନେଲେ । ସେ ୨୦ ଜଣଙ୍କୁ ଗୁରୁ କରିଥିଲେ । ସେ ଅବଧୂତ ଗୁରୁ ହିସାବରେ କାର୍ତ୍ତିକେୟ, ଶ୍ରୀ ଗଣେଶ, ପ୍ରହ୍ଲାଦ, ଯଦୁ, ଅଲର୍କ,

ସ୍ନାନଯାତ୍ରା, କୋଲ୍ହାପୁର ଦେବୀ ମନ୍ଦିରରେ ଜପଧ୍ୟାନ କରି ମହୁରୀପୁର (ମାତାପୁର)ରେ ଭିକ୍ଷା ଗ୍ରହଣ ପୂର୍ବକ ସହ୍ୟାଦ୍ରିରେ ବିଶ୍ରାମ କରନ୍ତି । ପରମ୍ପରାନୁଯାୟୀ ଭଗବାନ ଧର୍ମଙ୍କ ସହ ସାକ୍ଷାତକାର ଦତ୍ତାତ୍ରେୟଙ୍କଠାରେ ହିଁ ସମ୍ଭବ ଥିଲା । ଏଥିପାଇଁ ସେ 'ଧର୍ମ ଦେହୀ' ନାମରେ ପ୍ରସିଦ୍ଧି ଲାଭ କରନ୍ତି । (ସେ ଶ୍ରୀବିଦ୍ୟାର ପରମ ଆଚାର୍ଯ୍ୟ ଅଟନ୍ତି । ପରଶୁରାମଙ୍କୁ ଶ୍ରୀବିଦ୍ୟାର ପ୍ରକୃତ ଅଧିକାରୀ ଜାଣି ଦତ୍ତାତ୍ରେୟ ଶ୍ରୀବିଦ୍ୟାର ଉପଦେଶ ଦେଇଥିଲେ) ଏହାଙ୍କ ପରାବିଦ୍ୟାର ରହସ୍ୟ ମହାତ୍ମ୍ୟରେ ବର୍ଣ୍ଣିତ । ସେ ସିଦ୍ଧପୁରୁଷମାନଙ୍କ ପରମ ଆଚାର୍ଯ୍ୟ ଅଟନ୍ତି । ଦାସୋପନ୍ତ, ମହାନୁଭାବ, ଗୋସାଇଁ ତଥା ଗୁରୁ ଚରିତ ନାମରେ ଦକ୍ଷିଣ ଭାରତରେ ଅନେକ ସମ୍ପ୍ରଦାୟ ଅଛନ୍ତି । ଗିରନାର ଦତ୍ତାତ୍ରେୟଙ୍କର ସିଦ୍ଧପୀଠ ଓ ଗନ୍ଧମାଦନରେ ଆଶ୍ରମ ଅବସ୍ଥିତ । ଏଠାରେ ତାଙ୍କ ପାଦୁକା ପୂଜାହୁଏ । ଏହାଙ୍କ ବୀଜମନ୍ତ୍ର 'ଦ୍ରାଂ' । ଏବେ ମଧ୍ୟ ଦତ୍ତାତ୍ରେୟଙ୍କ ଦର୍ଶନ ସମ୍ଭବ ହୁଏ (ମହେନ୍ଦ୍ରାଦି ପର୍ଯ୍ୟାଲୋଚନରେ) ସେ ପୃଥିବୀର ସର୍ବଜ ବିଜ୍ଞାନମାନ । ଦତ୍ତାତ୍ରେୟଙ୍କ ଶ୍ରୀବିଦ୍ୟା (୮) ପ୍ରଥମେ ପରଶୁରାମ ଶିକ୍ଷା କରିଥିଲେ । ଅତଏବ ଏହି ପରଶୁରାମ ସାଧନାପୀଠରେ ଶ୍ରୀବିଦ୍ୟା ସାଧନ ସହଜସାଧ୍ୟ । ଯେତେ ପ୍ରକାର ତନ୍ତ୍ର ସାଧନା ଏହି ସ୍ଥାନରେ ହିଁ ସଫଳ ହୁଏ । ଭାବ ଓ ଆତ୍ମର ସିଦ୍ଧି (୨-୩) ପାଇଁ

---

ରାଜା ପୁରୁରବା, ଆୟୁ ପରଶୁରାମ ତଥା ହୈହୟ ଆଦିଙ୍କୁ ଯୋଗଶିକ୍ଷା ଓ ଅଧ୍ୟାତ୍ମ ବିଦ୍ୟା ଶିକ୍ଷା ଦେଲେ (ଭାଗବତ ୧୧ରେ ଅବଧୂତଙ୍କ ୨୪ ଗୁରୁ ବିଷୟ ପ୍ରସଙ୍ଗ) ଭଗବାନ ଶଙ୍କରାଚାର୍ଯ୍ୟ, ଗୋରକ୍ଷନାଥ ତଥା ସିଦ୍ଧ ନାଗାର୍ଜୁନାଦି ତାଙ୍କର କୃପାପାତ୍ର ହୋଇଥିଲେ ।

(୮) କାମେଶି ଲଳିତା ବାଳା ମହାତ୍ରିପୁର ସୁନ୍ଦରୀ,
ତ୍ରିପୁର ଭୈରବୀ ହ୍ୟେତା ଉର୍ଦ୍ଧାମ୍ନାୟ ସମାଶ୍ରିତାଃ । (ବଡ଼ବାନଳ ତନ୍ତ୍ର)
" 'ଶ୍ରୀ' ସ୍ୱୟଂ ମହାତ୍ରିପୁର ସୁନ୍ଦରୀ ଅଟନ୍ତି"
ଶ୍ରୀ ବିଦ୍ୟାର ୭୪ କ୍ରମ ରହିଛି । (କଲ୍ୟାଣ—୭୪ ଅଂକ)

(୨-୩) କ୍ରମଶଃ : ଅର୍ଥାତ୍ କାମେଶ୍ୱରୀ, ଲଳିତା ବାଳା—

ବାଳାରୁ—
ବାଳା ତ୍ରିପୁରା, ବାଳା ସୁନ୍ଦରୀ, ବାଳା ତ୍ରିପୁରେ ସୁନ୍ଦରୀ ତଥା ମହା ତ୍ରିପୁର ସୁନ୍ଦରୀ, ତ୍ରିପୁରା, ତ୍ରିପୁରାରୁ ତ୍ରିପୁରାଭୈରବୀ, ବାଳ ତ୍ରିପୁରା, ମହାଲକ୍ଷ୍ମୀ ତ୍ରିପୁରା, ତ୍ରୈଲୋକ୍ୟମୋହିନୀ ତ୍ରିପୁରା, ଇତ୍ୟାଦି ଅନ୍ୟ ତ୍ରିପୁରା, ଭୈରବୀରୁ ଭୈରବୀଙ୍କ ଭେଦ—ବାଳାଭୈରବୀ, ସମ୍ପଦପ୍ରଦା ଭୈରବୀ, ଚୈତନ୍ୟ ଭୈରବୀ, କାମେଶ୍ୱରୀ ଭୈରବୀ, ଅଘୋର ଭୈରବୀ ଆଦି ଅନ୍ୟ ଭୈରବୀ ଭେଦ, ମହାତ୍ରିପୁର

ମହେନ୍ଦ୍ର ହିଁ ପ୍ରକୃଷ୍ଟ ସ୍ଥଳ । ପୂର୍ବରୁ ସୂଚିତ ଯେ କୁମାରୀ ମନ୍ଦିରରେ ଶିବ ଓ ଶକ୍ତିଙ୍କ ପୂଜା ଏକାସ୍ଥାନରେ ହୋଇଥାଏ । କୁହାଯାଇଛି ଶ୍ରୀବିଦ୍ୟାର ଉପାସକ ପକ୍ଷେ ଭୁକ୍ତି ଓ ମୁକ୍ତି ସମ୍ଭବ । (୦) ନୋଗୁରୁରେ ଏହି ବିଦ୍ୟା ଆସ୍ବାଦ ଅସମ୍ଭବ । ତଥାପି କୁଳାର୍ଣ୍ଣବ

---

ତ୍ରିପୁରାରୁ ଶ୍ରୀ ଲଳିତା, ମହାତ୍ରିପୁର ସୁନ୍ଦରୀ, ଶ୍ରୀ କଲିତା ରାଜରାଜେଶ୍ୱରୀ, ଷୋଡ଼ଶୀ, ମହାଷୋଡ଼ଶୀ, ସପ୍ତସତୀ ତଥା ଷୋଡଶୀଙ୍କ ଅନ୍ୟ ଭେଦ—ଏ ସମସ୍ତ ଶ୍ରୀବିଦ୍ୟା ନାମରେ ନାମିତ, ଉପାସନା ଉଦ୍ଧ୍ୱାମ୍ନାୟରେ ହୁଏ ।

(୩) ତନ୍ତ୍ରଶାସ୍ତ୍ରରେ ଭାବ ଓ ଆଚାର ପ୍ରତି ବିଶେଷ ଗୁରୁତ୍ୱ ଦିଆଯାଏ । ଭାବ ୩ ଭାଗ ଅଟେ—୧ ଦିବ୍ୟଭାବ, ୨ ବୀରଭାବ, ୩ ପଶୁଭାବ, ବିଶ୍ୱସାରତନ୍ତ୍ର ୨୪ ପଟଳରେ ଉପରୋକ୍ତ ତିନିଭାବ ବ୍ୟତୀତ ସାତପ୍ରକାର ଆଚାର କୁହାଯାଇଛି । ସାଧକ ଏଥିପ୍ରତି ଧ୍ୟାନ ଦେବା ଉଚିତ । ୧ ବେଦାଚାର, ୨ ବୈଷ୍ଣବାଚାର, ୩ ଶୈବାଚାର, ଦକ୍ଷିଣାଚାର (ପଶୁଭାବ), ୫ ବାମାଚାର, ୬ ସିଦ୍ଧାନ୍ତାଚାର (ବୀରଭାବ), ୭ କୌଳାଚାର (ଦିବ୍ୟଭାବ) ପୃ ୪୯୮ କଲ୍ୟାଣ ଶକ୍ତି ଉପାସନାଙ୍କ ୬୧ ।

(୪) ଶ୍ରୀ ତ୍ରିପୁରା ସେବନ ତତ୍ପରାଣାଂ
ଭୋଗଶ୍ଚ ମୋକ୍ଷଶ୍ଚ କରସ୍ଥ ଏବ ।
ଦେବାନାଂ ତ୍ରିତୟଂ ତ୍ରୟୀ ହୁତଭୁଜାଂ ଶକ୍ତିତ୍ରୟଂ ତ୍ରିସ୍ୱରା
ତ୍ରୈଲୋକ୍ୟ ତ୍ରିପଦୀ ତ୍ରିପୁଷ୍କର ମଥୋ ତ୍ରିବ୍ରହ୍ମବର୍ଣ୍ଣାସ୍ତ୍ରୟଃ
ଯତ୍ କିଂଚିତ୍ ଜଗତି ତ୍ରିଧା ନିୟମିତଂ ବସ୍ତୁ ତ୍ରିବର୍ଗାଦିକଂ
ତତ୍ସର୍ବଂ ତ୍ରିପୁରେତି ନାମ ଭଗବତ୍ୟନ୍ୱେତି ତେ ତତ୍ତ୍ୱତଃ ।

(ଲଘୁସ୍ତବ) କଲ୍ୟାଣ ୬୧, ପୃ ୭୪

ଅର୍ଥାତ୍—ବ୍ରହ୍ମା, ବିଷ୍ଣୁ, ମହେଶ—ଏ ତିନିଦେବ
ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର—ଏ ତିନିତେଜ
ମନ୍ତ୍ର, ଉତ୍ସାହ, ପ୍ରଭୁତା—ଏ ତିନିଶକ୍ତି

ଅଥବା

ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ—ଏ ତିନିଶକ୍ତି
ଉଦାତ୍ତ, ଅନୁଦାତ୍ତ, ସ୍ୱରିତ—ତିନିସ୍ୱର
ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ—ଏ ତିନିଲୋକ
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି—ତିନିପଦ

ତନ୍ତ୍ରରେ ପ୍ରଦତ୍ତ ପର୍ଶୁରାମ ତନ୍ତ୍ର (*) ବିଧିଅନୁ ସଙ୍କେତରେ କୁହାଗଲା । ଏହି ତନ୍ତ୍ର ପ୍ରଦତ୍ତ ପ୍ରଣାଳୀରେ ପୂଜାକଲେ ପର୍ଶୁରାମଙ୍କ ସାକ୍ଷାତଲାଭ ସମ୍ଭବ ।

ପରାମ୍ନାର୍ଯ ତ୍ରିପୁରାର ରହସ୍ୟର ବକ୍ତା ହେଉଛନ୍ତି ଦେବାଦିଦେବ ମହାଦେବ । ସେହି ବିଦ୍ୟା ସେ ମହାବିଷ୍ଣୁଙ୍କୁ ଓ ମହାବିଷ୍ଣୁ ବ୍ରହ୍ମ ଦେବଙ୍କୁ ପ୍ରଦାନ କଲେ । ଦତ୍ତାତ୍ରେୟ ମହାବିଷ୍ଣୁଙ୍କ ଅବତାର ହେଉ ସେ ତାହା ପ୍ରାପ୍ତ ହେଲେ । ଦତ୍ତାତ୍ରେୟ ପର୍ଶୁରାମଙ୍କୁ ଦେଲେ । ପରଶୁରାମ ନିଜ ଶିଷ୍ୟ ହାରିତାୟନଙ୍କୁ ଦେଲେ (ଅନ୍ୟନାମ ସୁମେଧା) ହାରିତାୟନ ଏହି ବିଦ୍ୟାକୁ ଗ୍ରନ୍ଥରୂପରେ 'ହାଲସ୍ୟ' ନଗରରେ ପହଞ୍ଚି ସେହି ପରାସ୍ୱା ମୀନାକ୍ଷୀଙ୍କୁ ଉପାସନାରେ ରତ ରହିଲେ । ତା ପରେ ସେ ଅଳର୍କରୂପରେ ଜନ୍ମ ନେଲେ ଓ ବିସ୍ମୃତ ହେଲେ । ନାରଦଙ୍କ ଉପଦେଶରେ ହାରିତାୟନ ପୁନଃ ଜ୍ଞାନପ୍ରାପ୍ତ ହୋଇ ତିନଖଣ୍ଡ ରଚନା କଲେ । ତାହା ୧୪୪ ଅଧ୍ୟାୟ ବିଶିଷ୍ଟ ରଚନା । ତାହାହିଁ 'ତ୍ରିପୁରା ରହସ୍ୟ' ସେହି ସାଧନା ପର୍ଶୁରାମଙ୍କ କୃପାବିନା ସମ୍ଭବ ନୁହେଁ । ଶ୍ରୀବିଦ୍ୟା ଜ୍ଞାନରେ ସାଧନା ଯଦି ଅସମ୍ଭବ ତେବେ ନାମଜପଦ୍ୱାରା ତାହା ସମ୍ଭବପର । ତ୍ରିପୁର ସୁନ୍ଦରୀଙ୍କ ଭକ୍ତ ଭଗବାନ ପରଶୁରାମଙ୍କୁ ଚିନ୍ତାକରି ମହେନ୍ଦ୍ରରେ ସ୍ଥିତ ପର୍ଶୁରାମ ସାଧନପୀଠରେ ଜପକଲେ ଈପ୍ସିତ ଫଳପ୍ରାପ୍ତ ହେବ ।

---

ସୁବର୍ଣ୍ଣ ରଜତାଦିମୟ—ତିନପୁଷ୍କର

ଋକ୍, ଯଜୁଃ, ସାମ—ତିନବ୍ରହ୍ମ (ବେଦ)

ଅ, ଉ, ମ—ତିନବର୍ଣ୍ଣ

ଅର୍ଥ, ଧର୍ମ, କାମ—ତିନବର୍ଗ

ଉପରୋକ୍ତ ସ୍ୱରୂପ ସହିରେ ତିନୋଟି ରୂପର ସମ୍ମିଶ୍ରଣ ତାହା ତ୍ରିପୁରା ନାମରେ ଅଭିହିତ ହୁଏ ।

(*) ମନ୍ତ୍ର ମହାର୍ଣ୍ଣବରେ ପର୍ଶୁରାମ ମନ୍ତ୍ର ନିମ୍ନପ୍ରକାରେ ପ୍ରଦତ୍ତ ।
"ଓଁ ବ୍ରଂବ୍ରଂ ଓଁ ବ୍ରଂବ୍ରଂ ଓଁ ପରଶୁହସ୍ତାୟ ନମଃ"

ପର୍ଶୁରାମ ଗାୟତ୍ରୀ—ଓଁ ଜାମଦଗ୍ନାୟ ବିଦ୍ମହେ ମହାବୀରାୟଧୀମହି ତନଃ ପରଶୁରାମଃ ପ୍ରଚୋଦୟାତ୍ ।

ତ୍ରିପୁରା ରହସ୍ୟର ଆଦିକଥା —କଲ୍ୟାଣ ଇଂ ପୃ ୫୦୦

ଉପର୍ଯ୍ୟୋକ୍ତ ପର୍ଶୁରାମ ଗାୟତ୍ରୀର ଷଡ଼ାଙ୍ଗ ଓ କରନ୍ୟାସ (୧) ସମ୍ପାଦନ ପରେ ପଞ୍ଚ ଉପଚାରରେ, ଦଶ ଉପଚାରରେ କିମ୍ବା ଷୋଡ଼ଶ ଉପଚାରରେ ପୂଜା କରିବା ଉଚିତ । ଜପ ଓ ଧ୍ୟାନ ପ୍ରତି ବିଶେଷ ଗୁରୁତ୍ୱ ଦେବା ଆବଶ୍ୟକ । ଧ୍ୟାନ ହେଉଛି ଅଷ୍ଟାଙ୍ଗ ଯୋଗର ସପ୍ତମ ସୋପାନ । (୨)

ମନ୍ତ୍ର ପ୍ରକାଶରେ କୁହାଯାଇଛି (୩)

"ସନ୍ତାନାର୍ଥି ବିବାହାର୍ଥି କୃଷ୍ୟର୍ଥଂ କର୍ଷଣାସ୍ୟ ଚ
ବିଷୟାର୍ଥଂ ଧନାର୍ଥଂ ଚ ବାକ୍-ସିଦ୍ଧ୍ୟର୍ଥି ମୁଦାହୃତମ୍ ।୨୨।

ସହସ୍ର ମୟୁତ ଲକ୍ଷଂ ପ୍ରଯୁତଂ କୋଟିମେବ ଚ
ସାଧ୍ୟ କୃଚ୍ଛ୍ରେଣ ତ କୃଚ୍ଛ୍ରେଣ ଚ ଦୈବ ସାଧ୍ୟେତ୍ୱସାଧନେ ।୨୩।

ପର୍ଶୁରାମଙ୍କ ଧ୍ୟାନ ତିନପ୍ରକାର—୧ ସାତ୍ତ୍ୱିକ, ୨ ରାଜସିକ, ୩ ତାମସିକ ।

[୧] ସାତ୍ତ୍ୱିକ ଧ୍ୟାନ—

ସାତ୍ତ୍ୱିକଂ ଶ୍ୱେତ-ବର୍ଣ୍ଣଂ ଚ ଭସ୍ମ ଧୂଳିତ ବିଗ୍ରହମ୍ ।
ଅଗ୍ନିହୋତ୍ର-ସ୍ଥଳାସୀନଂ ନାନାମୁନି ଗଣାବୃତମ୍ ।।
କମ୍ବଳାସନ ମାରୂଢ଼ଂ ସ୍ୱର୍ଣ୍ଣତାର କୁଶାଙ୍ଗଳମ୍ ।
ଶ୍ୱେତ-ବସ୍ତ୍ର-ଦ୍ୱୟୋପେତଂ ଜଟିଳଂ ଶାନ୍ତମାନସମ୍ ।।

---

(୧) ଷଡାଙ୍ଗ ଏବଂ କରନ୍ୟାସ—

ଓଁ ଜାମଦଗ୍ନ୍ୟାୟ—ହୃଦୟାୟ ନମଃ...ଅଙ୍ଗୁଷ୍ଠାଭ୍ୟାଂ ନମଃ
ଓଁ ବିଦ୍ମହେ—ଶିରସେ ସ୍ୱାହା...ତର୍ଜନୀଭ୍ୟାଂ ସ୍ୱାହା
ଓଁ ମହାବୀରାୟ—ଶିଖାୟୈ ବୌଷଟ୍...ମଧ୍ୟମାଭ୍ୟାଂ ବଷଟ୍
ଓଁ ଧୀମହି—କବଚାୟ ହୁଁ...ଅନାମିକା ଭ୍ୟାଂ ହୁଁ
ଓଁ ତନ୍ନଃ ପରଶୁରାମୋ—ନେତ୍ରତ୍ରୟାୟ ବୌଷଟ୍...କନିଷ୍ଠାଭ୍ୟାଂ ବୌଷଟ୍
ଓଁ ପ୍ରଚୋଦୟାତ୍—ଅସ୍ତ୍ରାୟଫଟ୍...କରତଳକର ପୃଷ୍ଠାଭ୍ୟାଂ ଫଟ୍

(୨) ଧ୍ୟାନ ମନ୍ତ୍ରରେ ଯେଉଁ ରୂପ କଳ୍ପନା କରାଯାଇଛି, ସାଧକ ନିଜ ନିଜ କାମନା, ଯଥା—ସନ୍ତାନ, କୃଷି, ବର୍ଷା, ଭୋଗବିଳାସ, ଧନବାଞ୍ଛା ଇତ୍ୟାଦି କୌଣସି ଗୋଟିଏ ବିଷୟ ଉପରେ ଧ୍ୟାନ କେନ୍ଦ୍ରୀଭୂତ କରିବା ଆବଶ୍ୟକ—ଏଥିରେ ସିଦ୍ଧି ମିଳେ ।

(୩) ଶ୍ରୀ ମେରୁତନ୍ତ୍ର—ଷଡବିଂଶ ମନ୍ତ୍ର ପ୍ରକାଶ—ପର୍ଶୁରାମ ତନ୍ତ୍ର, ପୃ ୧୫

[୨] ରାଜସ ଧ୍ୟାନ—

ଧ୍ୟାୟେତ୍ ରାଜସ-ରାମଂ କୁଙ୍କୁମାରୁଣ ବିଗ୍ରହମ୍ ।
କଙ୍ଗଟିନଂ କୁଣ୍ଡଳିନଂ ପରଶ୍ୱଦ୍‌ଜ-ବର୍ଷାଭୟାନ୍ ।।
କରୈର୍ଦ୍ଧଧାନଂ ତରୁଣଂ ବିପ୍ରଯୋଗ୍ୟ-ସମ୍ପୁଟମ୍ ।
ପୀତାମ୍ବର-ଧରଂ କାମରୂପଂ ବାଲା କଟାକ୍ଷିଣମ୍ ।।

[୩] ତାମସ ଧ୍ୟାନ—

ଧ୍ୟାୟେଚ୍ଚ ତାମସଂ ଷଣ୍ଡ-ରୁଧିରାକ୍ତ-ପରଶ୍ୱଧମ୍ ।
ଆରକ୍ତ ନେତ୍ରଂ ବର୍ଣ୍ଣସ୍ୟ-ବ୍ରହ୍ମା-ସ୍ତୁତଂ-ଘନପ୍ରଭମ୍ ।।
ଧନୁଷ୍ଟଙ୍କାର ସଂଘୋଷ ସନ୍ତ୍ରସ୍ତ-ଭୁବନ-ତ୍ରୟମ୍ ।
ଚତୁର୍ବାହୁ ମୁଗଲନଂ ସବୃଷ-ଭ୍ରାତୃ-ସଂଯୁତମ୍ ।।

ଏହି ତନ୍ତ୍ରରେ ସାଧନାର ଏକ ସରଳ ଉପାୟ ସାଧକମାନଙ୍କ ପାଇଁ ପ୍ରଦତ୍ତ— ତାହାହେଲା ତ୍ରିସନ୍ଧ୍ୟାରେ ଭକ୍ତିପୂର୍ବକ ପରଶୁରାମଙ୍କର ଦ୍ୱାଦଶ ନାମୋଚ୍ଚାରଣ ।

"ଆଦ୍ୟୋ ରାମୋ ଜାମଦଗ୍ନ୍ୟଃ କ୍ଷତ୍ରିୟାଣାଂ କୁଳାନ୍ତକଃ ।
ପରଶ୍ୱଧ ଧରେଦାତା ମାତୃହା ମାତୃଜୀବକଃ ।୪୧।

ସମୁଦ୍ର-କ୍ଷୀର-ଜଳସ୍ତୋ ମହେଶ-ପଠିତାଖିଳଃ ।
ଗୋତ୍ରାଣ-କୃଦ୍ ଗୋ-ପ୍ରଦାତା ବିପ୍ରକ୍ଷତ୍ର ସ୍ୱ କର୍ମକୃତ୍ ।୪୨।

ଦ୍ୱାଦଶୈତାନି ନାମାନି ତ୍ରିସନ୍ଧ୍ୟାଂ ଯଃ ପଠେନ୍ନରଃ ।
ନାପ-ମୃତ୍ୟୁର୍ନଦାରିଦ୍ର୍ୟଂ ନ ଚ ବଂଶ-କ୍ଷୟୋଭବେତ୍ ।୪୩। (୧)

ଏହି ଜପ, ଧ୍ୟାନ ଓ ସାଧନା ନିମିତ୍ତ ସାଧନାପୀଠର ପରିବେଶ ମଧ୍ୟ ନିତାନ୍ତ ଆବଶ୍ୟକ । ନଚେତ୍ ଧ୍ୟାନ କେନ୍ଦ୍ରୀଭୂତ ନହୋଇ ବିକ୍ଷିପ୍ତ ମନରେ ଇପ୍ସିତ ଫଳ ପ୍ରାପ୍ତିରେ ବାଧା ଉପୁଜିପାରେ । ଏଥିପାଇଁ ପର୍ଶୁରାମ ସାଧନପୀଠ ହିସାବରେ ଉକ୍ତ ପର୍ଶୁରାମ ତନ୍ତ୍ରରେ ନିମ୍ନଲିଖିତ ପୀଠମାନ ସ୍ୱୀକୃତ ।

"ମହେନ୍ଦ୍ରେଚ କାଶ୍ୟାଂଚ ଯୋ ଜପେନ୍ନିର୍ଜନେ ବନେ ।
ବର୍ଷାଦ୍ ର୍ବାକ୍ ତସ୍ୟରାମଃ ପ୍ରତ୍ୟକ୍ଷୋ ଜାୟତେ ଧ୍ରୁବମ୍ ।।

(୧) ପର୍ଶୁରାମ ତନ୍ତ୍ର—୪୧/୪୨, ପ୍ରକାଶକ—କଲ୍ୟାଣ ମନ୍ଦିର ପ୍ରକାଶନ
ଅଲୋପବାଗ ମାର୍ଗ, ପ୍ରୟାଗ ୬

ଭାରତର ବିଭିନ୍ନ ସ୍ଥାନରେ ଶିଳାଲେଖମାନ ଦୃଷ୍ଟ । ତାହା ଦ୍ୱାଦଶ ଶତାବ୍ଦୀରେ ଖୋଦିତ । ଏଗୁଡ଼ିକ ଆଜମିର, ଅଜୟଗଡ଼ ଇତ୍ୟାଦି ସ୍ଥାନରେ ସୁରକ୍ଷିତ । ମହେନ୍ଦ୍ରାଚଳର ସ୍ମାରକୀ ଓ ପରଶୁରାମଙ୍କ ପଦଚିହ୍ନ ଏଠାର ବଳିଷ୍ଠ ପ୍ରମାଣ ।

ମହାଭାରତର ସମସ୍ତ ବୀର ପର୍ଶୁରାମଙ୍କ ଚୁମ୍ବକୀୟ ଆକର୍ଷଣରେ ଆକର୍ଷିତ । ପୂର୍ବ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ । ଏଥିପୂର୍ବେ ବର୍ଣ୍ଣିତ ତ୍ରେତୟାରେ ଶ୍ରୀରାମଚନ୍ଦ୍ର, ଦ୍ୱାପରରେ ଶ୍ରୀକୃଷ୍ଣ ଓ କଳିରେ କଳ୍କି—ଏ ସମସ୍ତଙ୍କର ଏଠାକୁ ଆଗମନ । ଏହି ସାଧନାପୀଠର ମହତ୍ତ୍ୱକୁ ବହୁଗୁଣିତ କରିଛି । ଏସମସ୍ତ ବର୍ଣ୍ଣନା ନଦେଇ ଗୋଟିଏ ଉଦାହରଣ ଦିଆଯାଇପାରେ ।

ଏକଦା ଶ୍ରୀକୃଷ୍ଣଙ୍କର ପୁତ୍ର ପ୍ରଦ୍ୟୁମ୍ନ ଦିଗ୍‌ବିଜୟରେ ବାହାରି ନଜର ଆଠ ସହ ମହାସମାରୋହରେ ଋଷଭ ପର୍ବତ ଦର୍ଶନ କରି କାବେରୀ ନଦୀ ପାରହୋଇ ସହ୍ୟ ପର୍ବତରେ ପଦାର୍ପଣ କଲେ । ସେଠାରେ ସେ ଦିଗମ୍ବର ଅବଧୂତଙ୍କୁ ଦର୍ଶନ କଲେ । ଋଷିବଙ୍କଠାରୁ ଶୁଣିଲେ ଯେ ସେ ଅବଧୂତ ଅନନ୍ତ । ସେ ଅବଧୂତ ଦତ୍ତାତ୍ରେୟ; ତ୍ରିମୂର୍ତ୍ତି ଅବତାର; ତାଙ୍କଠାରୁ ଉପଦେଶ ଗ୍ରହଣ କରି ପର୍ଶୁରାମଙ୍କ ପ୍ରତି ଆକୃଷ୍ଟ ହେଲେ । ସହ୍ୟ ପର୍ବତରୁ ଭେଙ୍କଟାଚଳ ଯାଇ ସେଠାରୁ ପ୍ରଦ୍ୟୁମ୍ନ ଗୋଦାବରୀ ନଦୀ ପାରିହୋଇ ମହେନ୍ଦ୍ରଗିରିରେ ପହଞ୍ଚିଲେ । ଏଠାରେ ସମସ୍ତ ସୈନ୍ୟ ସହିତ ପର୍ଶୁରାମଙ୍କ ଆତିଥ୍ୟ ସ୍ୱୀକାର କଲେ । ପର୍ଶୁରାମ ମହେନ୍ଦ୍ରଗିରିରେ ପ୍ରଦ୍ୟୁମ୍ନଙ୍କ ରାଜକୀୟ ଭୋଗ ସାମଗ୍ରୀ ଓ ୫୬ ଭୋଗ ସହିତ ସମସ୍ତ ପ୍ରକାର ଚର୍ଚ୍ଚା କରିଥିଲେ । ସେ ବାଞ୍ଛା କଳ୍ପତରୁ । ବାସ୍ତବିକ୍ ସେ କାମଧେନୁର ଅଧିକାରୀ । ପ୍ରଦ୍ୟୁମ୍ନ ପରଶୁରାମଙ୍କଠାରୁ ପୁରୁଷୋତ୍ତମ ତତ୍ତ୍ୱ ସମ୍ବନ୍ଧରେ ଜ୍ଞାନପ୍ରାପ୍ତ ହୋଇ ତାଙ୍କୁ ନମସ୍କାର କରି ସୈନ୍ୟବଳ ସହିତ ଗଙ୍ଗାସାଗର ସଙ୍ଗମ ଦିଗେ ପ୍ରସ୍ଥାନ କଲେ । (୧)

ଏହିଭଳି ଅବଧୂତଙ୍କଠାରୁ ଆରମ୍ଭ କରି ଦକ୍ଷିଣ ମୂର୍ତ୍ତିଙ୍କ ପର୍ଯ୍ୟନ୍ତ ମହେନ୍ଦ୍ରଗିରି ପର୍ଶୁରାମଙ୍କ ସାଧନାପୀଠ ଏଥିରେ ସନ୍ଦେହର ଅବକାଶ ନାହିଁ । ଭେଙ୍କଟାଚଳ ତିରୁପତି ଦେବସ୍ଥାନମ୍‌ରୁ ପ୍ରକାଶିତ 'ଯୋଗ ବା ଯାଗ' ପ୍ରକାଶନରେ ବହୁପୂର୍ବେ ସିଦ୍ଧାନ୍ତ ପ୍ରବୃତ୍ତ ଏହି ମହେନ୍ଦ୍ରଗିରିରେ ପର୍ଶୁରାମ ସାଧନାପୀଠରେ ହିଁ ସମ୍ଭବ ହୋଇପାରିଛି । (୨)

ଯୋଗୀ ଦକ୍ଷିଣାମୂର୍ତ୍ତି (ଚିତ୍ର ପ୍ଲେଟ ୨.୭ ଦ୍ରଷ୍ଟବ୍ୟ)

---

(୧) ଶ୍ରୀ ଗର୍ଗସଂହିତା—ପ୍ରକାଶକ ଗୀତା ପ୍ରେସ୍, ପୃ ୨୬୮

(୨) Yoga or Yaga—ସହଜ ସାଧନାରେ ପ୍ରବନ୍ଧ

## ହନୁମାନ ସାଧନା ପୀଠ :

ଉଲ୍ଲଂଘ୍ୟ ସିନ୍ଧୋ ସଲିଳଂ ସଲୀଳଂ
ଯଃ ଶୋକ ବହ୍ନି ଜନକାତ୍ମଜାୟାଃ ।
ଆଦାୟ ତେନୈବ ଦଦାହଲଂକା
ନମାମି ତଂ ପ୍ରାଞ୍ଜଳିରାଞ୍ଜନେୟଂ ।। (୧)
—ରାମଚରିତ ମାନସ

ଯେଉଁ ସାଧକ ଲୀଳାଦ୍ୱାରା ସମୁଦ୍ର ଜଳ ଲଙ୍ଘନପୂର୍ବକ ସୀତାଙ୍କ ଶୋକରୂପୀ ଅଗ୍ନିକୁ ହସ୍ତରେ ଧାରଣ କରି ଲଙ୍କାଗଡରେ ନିକ୍ଷେପପୂର୍ବକ ଲଙ୍କାଗଡ଼କୁ ଧ୍ୱଂସ କରିଛନ୍ତି ତାଙ୍କୁ ପ୍ରଣାମ କରେ ।

ଅତୁଳିତ ବଲଧାମଂ ହେମ ଶୈଳାଭ ଦେହଂ
ଦନୁଜ ବନ କୃଶାନୁଂ ଜ୍ଞାନିନାମଗ୍ରଗଣ୍ୟମ୍ ।
ସକଲଗୁଣ ନିଧାନଂ ବାନରାଣାଂ ମଧୀଶଂ
ରଘୁପତି ପ୍ରିୟ ଭକ୍ତଂ ବାତଜାତଂ ନମାମି ।। (୨)
—ରାମଚରିତ ମାନସ

ସେହି ରାମଭକ୍ତ ହନୁମାନଙ୍କୁ ପ୍ରଣାମ କରେ । ଏହି ସମୁଦ୍ର ଲଂଘନ ପ୍ରସଙ୍ଗ ରାମକାର୍ଯ୍ୟରେ ହନୁମାନଙ୍କ ସେବାର ପ୍ରଥମ ପଦକ୍ଷେପ । ହନୁମାନଙ୍କ ସେବାକାର୍ଯ୍ୟର ଅଗ୍ରମାରମ୍ଭ ଏହି ମହେନ୍ଦ୍ରଗିରିରୁ ହୋଇଥିଲା ।

ଗୋସ୍ୱାମୀ ତୁଳସୀ ଦାସ, ହନୁମାନଙ୍କ ପ୍ରଗାଢ଼ ଭକ୍ତିର ପ୍ରଶଂସା କରି କହିଛନ୍ତି—"ରାମକାଜୁ କନ୍ହେ ବିନୁ ମୋହି କହାଁ ବିଶ୍ରାମ ।" ଅର୍ଥାତ୍ ରାମଙ୍କ କାର୍ଯ୍ୟ କରିବା ବିନା ତାଙ୍କର ବିଶ୍ରାମ ନଥିଲା ।

ଅନନ୍ତକାଳରୁ ଏହି ଜୀବାତ୍ମାରୂପୀ ହଂସ ନିଜର ପୁରୁଷାର୍ଥରୂପୀ ପକ୍ଷମେଲି ଊର୍ଦ୍ଧ୍ୱକୁ ଉଠିବା ପାଇଁ ଚେଷ୍ଟା କରୁଥାଏ । କିନ୍ତୁ ପ୍ରଭୁକୃପାବିନା ସେହି ଅଖଣ୍ଡ ବେଗର ସ୍ଥିରତା ଅସମ୍ଭବ । ହନୁମାନଙ୍କ ଜୀବନ ଚରିତ ହିଁ ଏକମାତ୍ର ଦୃଷ୍ଟାନ୍ତ—ପୂର୍ଣ୍ଣ ସମର୍ପଣ । ଯଥାର୍ଥରେ ହନୁମାନ ଶ୍ରୀରାମଙ୍କୁ ନିଜର ତନ ମନ ଧନ ସମସ୍ତ ଉତ୍ସର୍ଗ କରିଛନ୍ତି ।

---

(୧) ଶ୍ରୀ ରାମଚରିତ ମାନସ—ଗୋସ୍ୱାମୀ ତୁଳସୀ ଦାସ, ସୁନ୍ଦରକାଣ୍ଡ ।

(୨) —ଏଜନ— ।

ମହେନ୍ଦ୍ରଗିରିର 'ହନୁମାନ ଖୋଳ' ପ୍ରତ୍ୟକ୍ଷଦର୍ଶୀଙ୍କ ପାଇଁ ଦ୍ୱାର ଉନ୍ମୋଚନ କରି କହେ; ଏହିପୀଠ ହିଁ ପବିତ୍ର ହନୁମାନ ପୀଠରେ ଆଦ୍ୟ ଉନ୍ମେଷ ।

ମହେନ୍ଦ୍ରଗିରି ଶଙ୍କରଙ୍କ ସାଧନା ପୀଠ ହେବା ହେତୁ ହନୁମାନ ଏଠାକୁ ଆକର୍ଷିତ ! ଏହି ସ୍ଥାନ ହରି ଓ ଇନ୍ଦ୍ରଙ୍କ ଆସନ ହେତୁ ହନୁମାନ ଏହିଠାରେ ହିଁ ଶ୍ରୀରାମଚନ୍ଦ୍ରଙ୍କ, ଶିବଙ୍କ ତଥା ଗୋକର୍ଣ୍ଣେଶ୍ୱରଙ୍କ ପୂଜାକରି ରାମକାର୍ଯ୍ୟରେ ପ୍ରବୃତ୍ତ ହୋଇଥିବା ସ୍ୱାଭାବିକ । (୧) ଦର୍ଶକ ଓ ତୀର୍ଥଯାତ୍ରୀ ଯେତେବେଳେ ପର୍ବତ ଆରୋହଣ କରୁଥାନ୍ତି ସେତେବେଳେ ହେ ରାମ, ହେ ହନୁମାନ, ହେ ରାମ, ହେ ପର୍ଶୁରାମ ଇତ୍ୟାଦି ଡାକ ପକାଇ ଅଗ୍ରସର ହେଉଛନ୍ତି । ଦକ୍ଷିଣ ଭାରତର ଭକ୍ତ ଉଚ୍ଚାରଣ କରୁଥାନ୍ତି— ହେ ହନୁମାନ—'ଓଁ ତ୍ କଣ୍ଡଲଓ୍ୱାଡ୍ ଭେଙ୍କଟ ରମଣା; ଗୋବିନ୍ଦା' ଆଦି । ଅର୍ଥାତ୍ ହେ ସପ୍ତକୁଳାଚଳ ବିଷ୍ଣୁ ଉଦ୍ଧାର କର । ଏହା କହୁଛନ୍ତି ଯେ ସପ୍ତକୁଳାଚଳରେ ସମସ୍ତ ସ୍ଥାନରେ ହନୁମାନ ପୀଠ ବିଦ୍ୟମାନ । ଯେଉଁଠାରେ ରାମ ସେଠାରେ ହନୁମାନ । ଭାରତର ବଦ୍ରୀନାଥଠାରୁ (ହିମାଳୟ) ଆରମ୍ଭ କରି ତ୍ରିବେନ୍ଦ୍ରମ (କନ୍ୟାକୁମାରୀ) ଯାଏ ବିରାଟ ବିରାଟ ହନୁମନ ବିଗ୍ରହ ପରିଦୃଷ୍ଟ; କିନ୍ତୁ ଏହି ପୁଣ୍ୟପୀଠ ହନୁମାନଙ୍କର ଆଦ୍ୟଉନ୍ମେଷ ନହେଲେ ଏଠାର ଖୋଲ ହିଁନୁମାନ ଖୋଲ ନାମରେ ନାମିତ । ଏହା କେହି କେବେ ଗମ୍ଭୀରଭାବେ ଚିନ୍ତାକରନ୍ତି ନାହିଁ । ଯାହାକୁ କେନ୍ଦ୍ରକରି ଶତାଧିକ ହନୁମାନ ପୀଠ ମହେନ୍ଦ୍ରର ପାଦଦେଶରେ ଚତୁଃପାର୍ଶ୍ୱରେ ଗଢ଼ି ଉଠିଛି । ସେଥିମଧ୍ୟରୁ ପାରଳକୁଟ (ପାଟକୋଟା) ଦୁର୍ଗର ଅଧିପତି 'ହନୁମାନ ପାଇକରାୟ ସ୍ୱାମୀ', ପାରଳାର ଘୃତ ଦେଉଳ ବୁରୁଜି ଗଡ଼ ରକ୍ଷକ ହନୁମାନ ଓ ପାରଳା ଦୁର୍ଗରକ୍ଷକ ହନୁମାନ, ସୀତା ପର୍ବତର ସୀତାଙ୍କ ସେବକ ହନୁମାନ, ସ୍ୱେତକବିରାଜଂର (ଟକଟୀ) ହନୁମାନ, ପାଲସିକ (ପଲସା)ର ହନୁମାନ, ମଞ୍ଜୁଷା ଗଡରକ୍ଷକ ହନୁମାନ ପ୍ରଧାନ । ଏତଦ୍ ବ୍ୟତୀତ ଲିଙ୍ଗ ଆକାରରେ ପୂଜିତ ମର୍କଡାର ମର୍କଟେଶ୍ୱର ଦର୍ଶନ ଯୋଗ୍ୟ । ପାଇକରାୟ ସ୍ୱାମୀଙ୍କ ଅବତାର ମଙ୍ଗଳସ୍ତ୍ରର ବିଧି ରୂପ ଅଟେ । ଏଠାରେ କୁକ୍କୁଟ-ଶୁରାଦି ବଳୀ ଦିଅଯାଏ—ଏ ଏକ ଆଶ୍ଚର୍ଯ୍ୟ ।

ହନୁମାନଙ୍କ ଜନ୍ମସ୍ଥାନ କିଷ୍କିନ୍ଧ୍ୟା ଥିଲା । କାରଣ ବାଲୀ ଓ ସୁଗ୍ରୀବ ହନୁମାନଙ୍କ ମାମୁ ଅଟନ୍ତି । ଅତଏବ ବର୍ତ୍ତମାନ କର୍ଣ୍ଣାଟକ ହନୁମାନଙ୍କ କ୍ରୀଡ଼ାଭୂମି । ପମ୍ପା ସରୋବର ନିକଟରେ ବାଲୀବଧ ସ୍ଥାନ । ଅତଏବ ଏହି ସ୍ଥାନମାନଙ୍କରେ ହନୁମାନଙ୍କ ପୂଜାର୍ଚ୍ଚନା ହେବା ସ୍ୱାଭାବିକ । ପୁନଶ୍ଚ ଅଯୋଧ୍ୟା ଓ ବଦ୍ରୀନାଥ ସମ୍ପର୍କ ବିଷ୍ଣୁ ଓ ରୁଦ୍ର ସମ୍ପର୍କ ତୁଳ୍ୟ ଗ୍ରହଣୀୟ । ରାବଣ ଦଶମୂର୍ତ୍ତିରେ ରୁଦ୍ରଙ୍କୁ ପୂଜାକରେ କିନ୍ତୁ ହନୁମାନ ଏକାଦଶ

(୧) 'ରାମ କାଜ ଲଗି ତବ ଅବତାର' : ରାମଚରିତ ମାନସ, ୫/୩୦/୩

ରୁଦ୍ର ଅଟନ୍ତି । (୧) ଏହି ଏକାଦଶ ରୁଦ୍ର ମର୍ତ୍ତ୍ୟରେ ରାମକାର୍ଯ୍ୟ ପାଇଁ ଅବତୀର୍ଣ୍ଣ । (୨) ତେଣୁ ଶ୍ରୀଲଙ୍କାରେ ସେ ତାଙ୍କର ତାଣ୍ଡବଲୀଳା ପ୍ରଦର୍ଶନ କରିଅଛନ୍ତି । ହନୁମାନ ଶିବଙ୍କ ଔରସରୁ ବାୟୁପୁତ୍ର ହିସାବରେ ଜାତ । ତେଣୁ ସେ ମହାନ୍ ଇନ୍ଦ୍ରସମ ପରାକ୍ରମଶାଳୀ । ଅତଏବ ଏହି ମହେନ୍ଦ୍ରପୁରୁଷଙ୍କ ରାମକାର୍ଯ୍ୟରେ ନିଷ୍କାମ ସାଧନା ଆରମ୍ଭ ହୁଏ ମହେନ୍ଦ୍ରଗିରିରୁ । ପୁନଶ୍ଚ ବୈଷ୍ଣବମାନେ ମତହଅନ୍ତି, ପବନ ଦେବତା ଧରାଧାମରେ ତିନିବାର ଜନ୍ମ ନେଇଥିଲେ । ତ୍ରେତାଯୁଗରେ ମାରୁତି, ଦ୍ୱାପରରେ ଭୀମ ଓ କଳିଯୁଗରେ ମାଧ୍ୱାଚାର୍ଯ୍ୟ । ଚୈତନ୍ୟ ଚରିତାମୃତରେ 'ମୁରାରି'ଙ୍କ ହନୁମାନ ଆଦେଶ ହେବା ଦୃଷ୍ଟ । ଏହି ମହେନ୍ଦ୍ରଗିରି ହନୁମାନ ପୀଠ, ଭୀମଙ୍କ ସାଧନା ପୀଠ ଓ ମହାପୁରୁଷମାନଙ୍କ ସକଳ ସାଧନାର ପୀଠ ହିସାବରେ ଖ୍ୟାତି ଅର୍ଜନ କରିବା ଯଥାର୍ଥରେ ସତ୍ୟ । ଅତଏବ ବୀର ହନୁମାନ ମହେନ୍ଦ୍ରଗିରିରେ ମୂର୍ତ୍ତିମନ୍ତ । କାରଣ ଶହେ ଯୋଜନ ଅର୍ଥାତ୍ ଆଠଶହ ମାଇଲ (ପ୍ରାୟ ୧୩୦୦ କିଲୋମିଟର) ମହେନ୍ଦ୍ରଗିରିଠାରୁ ଶ୍ରୀଲଙ୍କାର ବ୍ୟବଧାନ ଦୂର ସମୁଦ୍ର ଲଙ୍ଘନ କରିବା ସହଜସାଧ୍ୟ ନୁହେଁ । ଏହି ମହେନ୍ଦ୍ରଗିରିଠାରେ ସମୁଦ୍ର ବଳାକାର ଦକ୍ଷିଣ ଦିଗରେ ଲମ୍ଫ ପ୍ରଦାନ ପାଇଁ (ସପ୍ତକୁଳାଚଳ ମାନଚିତ୍ର ଦ୍ରଷ୍ଟବ୍ୟ) । ତୁଳସୀ ଦାସଙ୍କ ଭାଷାରେ—

"ଜୋ ନାଘଇ ଶତଯୋଜନ ସାଗର ।
କରଇସୋ ରାମ କାଜ ମତି ଆଗର ।।"
—ଶ୍ରୀ ରାମଚରିତ ମାନସ

ଯଥାର୍ଥରେ ବାନରଗଣ ନିଜ ନିଜର ଶକ୍ତି ଓ ସାମର୍ଥ୍ୟ ଜଣାଇ ସମୁଦ୍ର ଲଙ୍ଘନ ପାଇଁ ଅକ୍ଷମତା ପ୍ରକାଶ କରିଛନ୍ତି—ଗଜବାନର ଦଶଯୁଣ, ଗବାକ୍ଷ ବିଂଶ ଯୋଜନ, ଶରଭ ତିରିଶଯୁଣ, ଋଷଭ ଚାଳିଶ ଯୋଜନ, ମଇନ୍ଦ ଷାଠିଏ ଯୁଣ, ଦ୍ୱିବିଦ ସତୁରି ଯୋଜନ, ସୁଷେଣ ଅଶୀଏ ଯୁଣ, ଜାମ୍ବବାନ ନବେଯୁଣ—ଏହି କ୍ରମରେ ବାନରମାନେ ନିଜନିଜର ସମୁଦ୍ର ଲଙ୍ଘନ ଶକ୍ତିର ସୂଚନା ଦେଇଥିଲେ । ଅଙ୍ଗଦ ଶହେଯୁଣ ଯିବାପାଇଁ

---

(୧) ହିନ୍ଦୁଚେତନା—ପଣ୍ଡିତ କୁଳମଣି ପାଠୀ ଶର୍ମା

(୨) ସ୍କନ୍ଦ ପୁରାଣ ଓ ମାର୍କଣ୍ଡେୟ ପୁରାଣ—ହନୁମାନ ମହିମା—ଲକ୍ଷ୍ନୌ

ଶିଳାଜତନୟୋ ନନ୍ଦି ଶିବସ୍ୟାନୁଚର ପ୍ରିୟଃ ।
ଯୋବୈ ଚୈକାଦଶୋରୁଦ୍ରୋ ହନୁମାନ ସ ମହାକପିଃ ।
ଅବତୀର୍ଣ୍ଣଃ ସହାୟାର୍ଥଂ ବିଷ୍ଣୋରମିତ ତେଜସଃ ।
ସ୍କନ୍ଦପୁରାଣ ୮/୯୯-୧୦୦

ପ୍ରସ୍ତୁତ ହେଲେ, କିନ୍ତୁ ଫେରିଆସିବା ପାଇଁ ନିଜ ଶକ୍ତିର ଅସାମର୍ଥ୍ୟ ପ୍ରକାଶ କରିଥିଲେ । ବାଲ୍ମୀକି କହନ୍ତି—

"ଜାମ୍ବବ ବୋଇଲ କେଉଁ ନହୁଅ ଅଧୀର,
ନିଶ୍ଚୟ ହୋଇବ ସିଦ୍ଧ କାର୍ଯ୍ୟଟି ତୁମ୍ଭର ।"
—ବାଲ୍ମୀକି ରାମାୟଣ

ଏଠାରେ ହନୁମାନଙ୍କ ଜନ୍ମବୃତ୍ତାନ୍ତ ଅବଧାରଣା କରି ଶଙ୍କରଙ୍କ ଶକ୍ତି (ଗୋକର୍ଣ୍ଣେଶ୍ୱର) ସଞ୍ଚାର କରାନ୍ତେ, ହନୁମାନ ଶହେ ଯୋଜନ ଯାଇ ଫେରିବା ପାଇଁ ପ୍ରସ୍ତୁତ ହେଲେ । ସେ ବାନରମାନଙ୍କୁ ନିମ୍ନମତେ ନିର୍ଦ୍ଦେଶ ଦେଲେ ।

"ଏ ମହେନ୍ଦ୍ର ଗିରିଶୃଙ୍ଗ ଶିଖରରୁ ଡେଇଁ,
ଯିବି ଏହିଠାରେ ତୁମ୍ଭେ ରହିଥାଅ ସୁଖି ।"
(କିଷ୍କିନ୍ଧ୍ୟା-କାଣ୍ଡ—ବାଲ୍ମୀକି ରାମାୟଣ)

(ଅନ୍ୟାନ୍ୟ ବିବରଣୀ ସମ୍ପର୍କେ ପୂର୍ବପରିଚ୍ଛେଦ ଦ୍ରଷ୍ଟବ୍ୟ)

ପାରଳା, ଟେକଲି, ଗରଳା, ପଳାସା, ମଞ୍ଜୁଷା ଇତ୍ୟାଦି ଅଞ୍ଚଳରେ ଏଥିପାଇଁ ଅସଂଖ୍ୟ ଦକ୍ଷିଣାଭିମୁଖୀ ହନୁମାନ ଦୃଷ୍ଟ (ଚିତ୍ର ନଂ ୧୫ ଦ୍ରଷ୍ଟବ୍ୟ) । ଅତଏବ ଏହା ସୁତଃସିଦ୍ଧ ଯେ; ହନୁମାନ ମହେନ୍ଦ୍ରରେ ସଦା ଜାଗ୍ରତ । ଯଦ୍ୟପି ଚିତ୍ରକୂଟ, ପଞ୍ଚବଟୀ, ଦଣ୍ଡକାରଣ୍ୟ ସମେତ ସପ୍ତକୁଳାଚଳର ସମସ୍ତ ଅଞ୍ଚଳ ତଥା ସାରା ପୃଥିବୀ (୧) ହନୁମାନଙ୍କ ବିଚରଣ ସ୍ଥଳ, ତଥାପି ଦଣ୍ଡକାରଣ୍ୟର ପୂର୍ବଦିଗରେ ସମୁଦ୍ର ଉପକୂଳରେ ସ୍ଥିତ କୁଳଅଚଳ ଏହି ମହେନ୍ଦ୍ରଗିରି ହିଁ ହନୁମାନଙ୍କ ରାମକାର୍ଯ୍ୟର ଆଦ୍ୟ ଉନ୍ମେଷ ସ୍ଥଳ; ଏଥିରେ ସନ୍ଦେହର ଲେଶମାତ୍ର ଅବକାଶ ନାହିଁ । ସପ୍ତଚିରଞ୍ଜୀବୀ ମହେନ୍ଦ୍ରମଳୟ ସହ୍ୟ ବିନ୍ଧ୍ୟାଦିରେ ଅଦୃଶ୍ୟ ଗତିରେ ସ୍ଥିତ; ସାଧନାଦ୍ୱାରା ଉପଲବ୍ଧ । ବୀର ହନୁମାନଙ୍କ ପାଇଁ ମହେନ୍ଦ୍ରରେ ଦୁର୍ଗମ କାର୍ଯ୍ୟ ସିଦ୍ଧିପାଇଁ ପ୍ରତ୍ୟକ୍ଷ ଅନୁଭୂତ ।

କଳିଯୁଗରେ ବିଶ୍ୱବନ୍ଦ୍ୟ ଶ୍ରୀ ହନୁମାନଙ୍କ ଉପାସନା ଓ ଭକ୍ତି ସକଳ ପ୍ରକାର ଇଚ୍ଛା ଓ ମନୋବାଞ୍ଛା ପୂର୍ଣ୍ଣକାରୀ । ଯେଉଁ ବ୍ୟକ୍ତି ସକାମ ବା ନିଷ୍କାମ ଭାବରେ ଶ୍ରୀ ହନୁମାନଙ୍କ ପୂଜାକରେ ସେ ବାଞ୍ଛିତ ଫଳପ୍ରାପ୍ତ ହୋଇଥାଏ । (୨)

---

(୧) ହନୁମାନ ମହିମା : ଲେଖକ—ଡାକ୍ତ ଦୟାଲଗୁପ୍ତ, ଦିଲ୍ଲୀ । ପ୍ରସଙ୍ଗ—ବିଦେଶରେ ହନୁମାନ ପୀଠ, ଇଣ୍ଡୋନେସିଆ, କାମ୍ବୋଡ଼ିଆ, ଲଙ୍କା, ବର୍ମା, ଥାଇଲଣ୍ଡ, ନେପାଳ, ବାଲିଦ୍ୱୀପ—ଏହି ସ୍ଥାନମାନଙ୍କରେ ରାମଲୀଳା ଦେଖାଯାଏ ।

(୨) ହନୁମାନ ସ୍ତୁତି : ରାମଚରିତ ମାନସ ।

"ଦୁର୍ଗମ କାଜ ଜଗତକେ ଜେତେ,
ସୁଗମ ଅନୁଗ୍ରହ ତୁହ୍ମାରେ ତେତେ ।"
—ହନୁମାନ ଚାଳିଶା

ଅସଂଖ୍ୟ ସାଧକ ଏହି ମନ୍ତ୍ର ପାଠକରି, ଅସମ୍ଭବ କାର୍ଯ୍ୟକୁ ସମ୍ଭବ କରିଥିବା ଅନେକ ଦୃଷ୍ଟାନ୍ତ, ଗୁପ୍ତ ପ୍ରମାଣ ପରୋକ୍ଷ କମ୍ବା ପ୍ରତ୍ୟକ୍ଷରେ ଦୃଷ୍ଟିକୁ ଆସିଛି ।

ଋଷି, ମହର୍ଷି, ସନ୍ଥ ଏବଂ ଭକ୍ତଗଣ ଜ୍ଞାନପ୍ରାପ୍ତି ନିମିତ୍ତ ଅନେକ ପ୍ରକାର ସାଧନା ପ୍ରୟୋଗ କରିଛନ୍ତି । ସମସ୍ତ ସାଧନାର ଲକ୍ଷ୍ୟ ବ୍ରହ୍ମପ୍ରାପ୍ତି ଓ ଅଜ୍ଞାନର ନିବୃତ୍ତି ଅଟେ । ଭାରତବର୍ଷରେ ହନୁମତ୍ ସାଧନା, ସେହି ସାଧନାମାନଙ୍କ ମଧ୍ୟରେ ଶ୍ରେଷ୍ଠତମ । (୧)

ଶ୍ରୀ ହନୁମାନଙ୍କ ଉପାସନା ତିନିପ୍ରକାରର—୧] ଏକମୁଖୀ ହନୁମାନ, ୨] ପଞ୍ଚମୁଖୀ ହନୁମାନ, ୩] ଏକାଦଶମୁଖୀ ହନୁମାନ । ଏହାଙ୍କ ମନ୍ତ୍ର, ସ୍ତୋତ୍ର, କବଚାଦି ଭିନ୍ନ ଭିନ୍ନ ଅଟେ । ଯାହାକୁ ଯାହା ଦରକାର ଯୋଗ୍ୟ ଗୁରୁଙ୍କ ନିକଟରୁ ଶିକ୍ଷା କରିବା ଓ ସାଧନା କରିବା ଉଚିତ । (୨)

ସାଧନା ଶାସ୍ତ୍ରରେ ଯେଉଁସ୍ଥାନ ପରମାତ୍ମାତତ୍ତ୍ୱ ସମ୍ବନ୍ଧୀୟ, ତାହା ଗୁରୁତତ୍ତ୍ୱରେ ଗ୍ରହଣୀୟ । ଅନେକ ସାଧକ ସାଧନା ପାଇଁ ଗୁରୁତତ୍ତ୍ୱକୁ ଅଧିକ ହିତକର ମନେକରନ୍ତି । 'ରାମ ରହସ୍ୟ ଉପନିଷଦରେ' ଶ୍ରୀ ହନୁମାନଙ୍କୁ ଗୁରୁରୂପେ ସ୍ୱୀକାର କରାଯାଇଛି । ସନକ, ସନନ୍ଦନ, ସନାତନ, ସନତ୍କୁମାର ଏବଂ ଶାଣ୍ଡିଲ୍ୟ, ମୁଦ୍‌ଗଲ ଆଦି ମହର୍ଷିଗଣ ଶ୍ରୀ ହନୁମାନଙ୍କୁ ଶ୍ରୀରାମ ତତ୍ତ୍ୱର ଜ୍ଞାନପ୍ରାପ୍ତି ନିମିତ୍ତ ଆଧାର କରି ନେଇଛନ୍ତି । ଏଥିରେ ଅନେକ ପ୍ରକାର ପଦ୍ଧତି ମାଧ୍ୟମରେ ସାଧୁସନ୍ଥ, ମହନ୍ତ, ଆଚାର୍ଯ୍ୟଗଣ ଓ ଜଗଦ୍‌ଗୁରୁ ଉପାଧିପ୍ରାପ୍ତ ମହାପୁରୁଷଗଣ ସଫଳକାମୀ, 'ରାମୋତ୍ତରତାପନୀୟୋ-ପନିଷଦ'ରେ ମାଣ୍ଡୁକ୍ୟ ଉପନିଷଦର ସମସ୍ତ ମନ୍ତ୍ରର ତାତ୍ପର୍ଯ୍ୟ, ଶିବତତ୍ତ୍ୱ ପାଇଁ ବୁଝାଇ ଦିଆଯାଇଛି । ତାହାହିଁ ଶ୍ରୀରାମତତ୍ତ୍ୱ । ଶିବତତ୍ତ୍ୱ ଓ ରାମତତ୍ତ୍ୱ ଅଭେଦ ଅଟେ । ଏହି ଉପନିଷଦରେ ଶ୍ରୀରାମ-ତତ୍ତ୍ୱର ସାଧନା ଅଦ୍ୱୈତ ସିଦ୍ଧାନ୍ତ ଅନୁସାରେ ଗ୍ରହଣ କରାଯାଇଛି । ଯେଉଁଭଳି ଅଦ୍ୱୈତ ସିଦ୍ଧାନ୍ତରେ 'ଅହଂ ବ୍ରହ୍ମାସ୍ମି' ମହାବାକ୍ୟର ଅର୍ଥ କରାଯାଇଛି, ସେହି ପ୍ରକାର ଉପନିଷଦରେ 'ରାମୋଽହମ୍'ର ଅର୍ଥ କରାଯାଇଛି । ତାହା ନିମ୍ନପ୍ରକାର—

(୧) ବଙ୍ଗଦେଶରେ ହନୁମାନ ତନ୍ତ୍ର ।

(୨) ଶ୍ରୀ ହନୁମତ୍ ସାଧନା—ରାଷ୍ଟ୍ରଗୁରୁ ଶ୍ରୀ ୧୦୦୮ ପୂଜ୍ୟପାଦ ଶ୍ରୀ ସ୍ୱାମିଜୀ ମହାରାଜ, ଶ୍ରୀ ପୀତାମ୍ବର ପୀଠ ଦତିଆ, କଲ୍ୟାଣ ୪୯, ପୃ ୭୦ ।

"ସଦା ରାମୋହ ମସ୍ମି ତନ୍ତୁତଃ ପ୍ରବଦନ୍ତିସ୍ତେ,
ନତେ ସଂସାରିଣେ ନୂନଂ, ରାମ ଏବ ନ ସଂଶୟଃ ।" (୧)

ବର୍ତ୍ତିମାନ ସମୟରେ ପ୍ରଚଳିତ ଶ୍ରୀରାମାନୁଜଙ୍କର ବିଶିଷ୍ଟାଦ୍ୱୈତ ସମ୍ପ୍ରଦାୟ ଓ ଶ୍ରୀ ରାମାନନ୍ଦୀୟ ସମ୍ପ୍ରଦାୟରେ ଶ୍ରୀରାମଙ୍କୁ ପରମାତ୍ମା ରୂପରେ ମର୍ଯ୍ୟାଦା ଦିଅନ୍ତି । ଉପର୍ଯ୍ୟୁକ୍ତ ମତଭେଦରହିତ ଅଦ୍ୱୈତ ଓ ଜୀବ-ପରଂପରାର ଅଂଶ ସ୍ୱରୂପ ମାଧ୍ୱାଚାର୍ଯ୍ୟ ଦ୍ୱୈତବାଦର ପ୍ରତିପାଦନ କରିଅଛନ୍ତି ।

କବୀର, ଦାଦୁ, ନାନକ, ଗାନ୍ଧୀ ଆଦି ସନ୍ଥଜନ ରାମନାମ ଦ୍ୱାରା ନିରାକାର ନିର୍ଗୁଣ ଅଦ୍ୱୈତ ଉପାସନା କରିଯାଇଛନ୍ତି । ସେମାନଙ୍କ ଉପରୋକ୍ତ ବିଷୟର ସମନ୍ୱୟ ଦୃଷ୍ଟ । ଏହି ପ୍ରକାର ରାମ ସାଧନାର ବ୍ୟାପକତା ସ୍ପଷ୍ଟ ଓ ଏହାଙ୍କ ଉପଦେଷ୍ଟା ଗୁରୁତତ୍ତ୍ୱ ରୂପରେ ଶ୍ରୀ ହନୁମାନହିଁ ପରିଦୃଷ୍ଟ । ଅତଏବ ହନୁମାନ ଅଦ୍ୱୈତ ସାଧନାରୂପ ଅଟନ୍ତି । ଶ୍ରୀ ହନୁମାନଙ୍କ ସାଧନାଦ୍ୱାରା ଲୌକିକ ସିଦ୍ଧି ମଧ୍ୟ ପ୍ରାପ୍ତହୁଏ । ମହାତ୍ମାମାନେ ଜଗତର ଉପକାର ପାଇଁ ତାହା ଉପଯୋଗ କରିବା ଦେଖାଦେଇଛି ।

"ଅଷ୍ଟ ସିଦ୍ଧିନବ ନିଧିକେ ଦାତା,
ଅସବର ଦୀନ ଜାନକୀ ମାତା ।"

—ହନୁମାନ ଚାଳିଶା

ଏହାଙ୍କୁ ଅନୁସରଣ କରି ମହାତ୍ମା ତୁଳସୀ ଦାସ ରାମଚରିତ ମାନସ ରଚନା କରିଛନ୍ତି । ହିନ୍ଦୁଧର୍ମ ବିପଦର ସମ୍ମୁଖୀନ ହେବା ସମୟରେ ସମର୍ଥ ରାମଦାସଜୀ ମହାରାଜ ଛତ୍ରପତି ଶିବାଜୀଙ୍କୁ ହନୁମତ୍ ଶକ୍ତି ପ୍ରଦାନ କରିଅଛନ୍ତି । ବୈଷ୍ଣବ ଧର୍ମର ଚତୁର୍ବ୍ୟୂହ ତତ୍ତ୍ୱ (ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ) ଓ ହନୁମନ୍ତ ତତ୍ତ୍ୱ ଅଭିନ୍ନ । 'ମନ୍ତ୍ର ରାମାୟଣ' ଗ୍ରନ୍ଥରେ ହନୁମନ୍ତ ତତ୍ତ୍ୱ ସହ ହନୁମନ୍ତ ଚରିତ ଜରିଆରେ କେତେକ ମହତ୍-ତତ୍ତ୍ୱ ଦିଆଯାଇଛି । (୨)

ପଦ୍ମପୁରାଣରେ ହନୁମାନଙ୍କୁ "ଜ୍ଞାନିନାଂ ଅଗ୍ରଗଣ୍ୟମ୍" କୁହାଯାଇଛି । ପୁରାଣମାନଙ୍କରୁ ଜଣାଯାଏ ହନୁମାନ ପବନଙ୍କ ପୁତ୍ର ଓ ରୁଦ୍ରଙ୍କ ଅବତାର ଅଟନ୍ତି । ଦୈବୀ, ଦାନବୀ ଓ ମାନବୀ ସୃଷ୍ଟିରେ ଏହାଙ୍କ ସମ୍ମାନ ଓ ମହତ୍ତ୍ୱ ସର୍ବୋଚ୍ଚ ଅଟେ ।

---

(୧) ହନୁମାନ ଉପାସନା : ଶ୍ରୀ ହନୁମାନଜୀ ଶର୍ମା, କଲ୍ୟାଣ ୪୯, ପୃ ୪୮୭

(୨) ବେଦରେ ଶ୍ରୀ ହନୁମାନ : ମାନସ ତତ୍ତ୍ୱାନ୍ୱେଷୀ ପଣ୍ଡିତ ଶ୍ରୀ ରାମକୁମାର ଦାସ, ରାମାୟଣୀ—କଲ୍ୟାଣ, ପୃ ୭୧

ଯେଉଁ ସମୟରେ ସେ ଜନ୍ମନେଲେ ସେହି ସମୟରେ ବ୍ରହ୍ମା-ବିଷ୍ଣୁ-ମହେଶ, ବରୁଣ, କୁବେର, ଅଗ୍ନି-ବାୟୁ ଇନ୍ଦ୍ର ଆଦି ତାଙ୍କୁ ଅଜର ଅମର ବର ପ୍ରଦାନ କରି ସର୍ବ ଶକ୍ତିମାନ୍ କରି ଦେଇଛନ୍ତି । ଯେଉଁଭଳି ଧ୍ୟାନ ଧାରଣା ସମାଧିରେ ଇନ୍ଦ୍ରାଦିଙ୍କ ଆସନ ସର୍ବାଧିକ; ସେହିଭଳି ମହାବୀର ହନୁମାନ୍ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନରେ ଅଗ୍ରପୂଜ୍ୟ । ମହେନ୍ଦ୍ର ପର୍ବତରେ ନିକାଞ୍ଚନ ସ୍ଥାନରେ ଅନେକ ଭକ୍ତ ପଞ୍ଚୋପଚାର, ମାନସପୂଜା କରିଥାଆନ୍ତି । ତାନ୍ତ୍ରିକମାନେ ତନ୍ତ୍ରମତରେ ମଧ୍ୟ ପୂଜା କରିଥାନ୍ତି । (ତନ୍ତ୍ର ପଦ୍ଧତିରେ ଦୃଷ୍ଟ) ଯେଉଁଭଳି ଗୃହରେ ଦଶଉପଚାର ଓ ଷୋଡଶ ଉପଚାରରେ ପୂଜାହୁଏ । ହନୁମାନଙ୍କ ପୂଜାରେ ତଲ୍ଲୀନ ଅବସ୍ଥା (୧) ନିହାତି ଦରକାର । କିଛି ପୂଜାକଲେ ମଧ୍ୟ ହନୁମାନଙ୍କ ଦ୍ୱାଦଶନାମ ମହେନ୍ଦ୍ରଗିରିରେ ଜପକଲେ ବାଂଛିତଫଳ ମିଳିଥାଏ । (୨) ଏହି ଦ୍ୱାଦଶନାମ, ସୂର୍ଯ୍ୟଙ୍କ ଦ୍ୱାଦଶନାମ, ପର୍ଶୁରାମଙ୍କ ଦ୍ୱାଦଶ ନାମରେ ପୂଜା, ଅର୍ଚ୍ଚନା, ଧ୍ୟାନ ମଧ୍ୟ କରାଯାଏ । ପାଠକଲେ ମଧ୍ୟ ଫଳମିଳେ । (୩) ନାମ ଜପ ହିଁ ଶକ୍ତିଶାଳୀ । ଉପାସନାର ଚାରିଅଙ୍ଗ ୧] ଅର୍ଚ୍ଚନ ବା ପୂଜନ, ୨] ସ୍ତୋତ୍ର, ୩] ଜପ, ୪] ଧ୍ୟାନ । ଏଥିପାଇଁ ହନୁମାନ ଚାଳିଶା, ଷାଠିକା, ବଜରଙ୍ଗ ବାଣ ପାଠକଲେ ଭୟ, ଶୋକ, ସଙ୍କଟ ଦୂରହୁଏ । ରାମଚରିତ ମାନସରେ ମଧ୍ୟ ମାର୍ଗଦର୍ଶନ ଦିଆଯାଇଛି । (ଭଜନରେ) ମଧ୍ୟ ଫଳମିଳେ । (୪)

---

(୧) ଅଥ କଦାଚିତ୍ ହି ହନୁମାନାକାଙ୍କ୍ଷିତେନୈବ ଚାରିଣା ।
ଦର୍ଶନାର୍ଥଂ ସମାଯାତୋ ମହାତ୍ମା ରାମପୂଜନଃ ॥
ଗର୍ଗସଂହିତା ୨୬/୨୭

(୨) ହନୁମାନଞ୍ଜନୀ ସୂନୁର୍ବାୟୁପୁତ୍ରୋ ମହାବଳଃ ।
ରାମେଷ୍ଟଃ ଫାଲଗୁନସଖଃ ପିଙ୍ଗାକ୍ଷୋ ଅମିତବିକ୍ରମଃ ॥
ଉଦଧିକ୍ରମଣଶ୍ଚୈବ ସୀତାଶୋକ ବିନାଶନଃ ।
ଲକ୍ଷ୍ମଣ ପ୍ରାଣଦାତା ଚ ଦଶଗ୍ରୀବସ୍ୟ ଦର୍ପହା ॥
ଆନନ୍ଦ ରାମାୟଣ ୮/୧୩/୮-୯

(୩) ଏବଂ ଦ୍ୱାଦଶ ନାମାନି କପୀନ୍ଦ୍ରସ୍ୟ ମହାତ୍ମନଃ ।
ସ୍ୱାପକାଳେ ପ୍ରବୋଧେ ଚ ଯାତ୍ରାକାଳେ ଚ ଯଃ ପଠେତ୍ ॥
ତସ୍ୟ ସର୍ବଭୟଂ ନାସ୍ତି ରଣେ ଚ ବିଜୟୀଭବେତ୍ ।
ରାଜଦ୍ୱାରେ ଗହ୍ୱରେ ଚ ଭୟଂ ନାସ୍ତି କଦାଚନ ॥
ଆନନ୍ଦ ରାମାୟଣ । /୧୩/୧୦-୧୧

(୪) ହନୁମାନ ମହିମା : ଧର୍ମଦର୍ଶନମାଳା ୪ ଲେଖକ—ଦାଉଦୟାଲ ଗୁପ୍ତ, ପୃ ୧୭୫ ପୁସ୍ତକ ମହଲ, ଖାରିବାବଲି, ଦିଲ୍ଲୀ

## ସୌରପୀଠ :

ଆଦିବାସୀ ସମାଜରେ ପ୍ରଚଳିତ ପ୍ରଥାରୁ ସୂର୍ଯ୍ୟୋପାସନାର ଯଥେଷ୍ଟ ପ୍ରମାଣ ମିଳେ । Sunworship in ancient Indiaରୁ ପ୍ରାଚୀନ ଭାରତର ପୂଜାପଦ୍ଧତି ଲକ୍ଷ୍ୟକରି ଦେଖାଯାଇଛି, ଭାରତର ଆଦିବାସୀମାନେ କୋହ୍ଲ, ସାନ୍ତାଳ, ଶବର, ଗଣ୍ଡ, ଓରାଂଓ,ତୋଡାଙ୍କ ମଧ୍ୟରେ ସୂର୍ଯ୍ୟ ପୂଜାର ବିଶେଷ ପ୍ରଚଳନ ଦେଖାଯାଏ ।

ଓଂ ଭୁର୍ଭୁବଃ ସ୍ୱଃ, ତତ୍ ସବିତୁର୍ବରେଣ୍ୟଂ
ଭର୍ଗୋଦେବସ୍ୟ ଧୀମହି
ଧିୟୋଯୋନଃ ପ୍ରଚୋଦୟାତ୍ (୧)

ସୂର୍ଯ୍ୟ ହିଁ ସୃଷ୍ଟିକର୍ତ୍ତା । ଉତ୍ପତ୍ତି, ଉଷ୍ମତା, ଇନ୍ଧନ ପ୍ରକାଶ ଓ ନାନାବିଧ କାର୍ଯ୍ୟସାଧନ କରୁଥିବାରୁ ସେ ଜଗତେ ସର୍ବଶକ୍ତିମାନ ଭାବରେ ପୂଜିତ । ପ୍ରାଚୀନ କାଳର ମୁନିଋଷିଗଣ ବ୍ରହ୍ମଜିଜ୍ଞାସୁମାନଙ୍କୁ ଗାୟତ୍ରୀ ମନ୍ତ୍ରଦ୍ୱାରା ସୂର୍ଯ୍ୟୋପାସନା କରିବା ନିମିତ୍ତ ଉପଦେଶ ଦେଇ ସୂର୍ଯ୍ୟଙ୍କୁ ପ୍ରାର୍ଥନା କରିଛନ୍ତି—ମୁଁ ସେହି ସବିତାଙ୍କର ବରେଣ୍ୟ ଭର୍ଗଙ୍କୁ ଧ୍ୟାନ କରୁଛି । ସେ ମୋର ବୁଦ୍ଧି ପ୍ରକାଶିତ ଶକ୍ତିକୁ ପ୍ରଚୋଦିତ କରନ୍ତୁ (୨) ପ୍ରକୃତରେ ସେହି ଭର୍ଗ (ତେଜ) ପ୍ରଦାନ ନିମିତ୍ତ 'ଭାର୍ଗବ (ପଶୁରାମ)ଙ୍କ କ୍ଷେତ୍ର ମହେନ୍ଦ୍ରଗିରିର ଉପାସ୍ୟ ଦେବ ସୂର୍ଯ୍ୟ ଏଠାରେ ବିଦ୍ୟମାନ । ନଚେତ୍ ଏଠାରେ ଧୂପ ବିଧୂପ ବିଗ୍ରହ (୩) (ମହେନ୍ଦ୍ରରେ ସପ୍ତଅଶ୍ୱଧାରୀ ସୂର୍ଯ୍ୟଙ୍କ ବିଗ୍ରହ ଚିତ୍ର ନଂ ୧୭ ଦ୍ରଷ୍ଟବ୍ୟ) ସ୍ଥାପିତ ହୋଇନଥାନ୍ତା । ଯଥାର୍ଥରେ ସୂର୍ଯ୍ୟ ଉଦୟ ହେଲେ ସକଳ ଗ୍ରହ ସୂର୍ଯ୍ୟର ଆଶ୍ରିତ ଜଣନ୍ତି । ଏ ବିଷୟରେ ଅପୌରୁଷେୟ ବେଦ ନିର୍ଭୁଲ ପ୍ରମାଣ ଦେଇଥାଏ ।

ରଶ୍ମିଭିର୍ନଭ ଆଭୃତଂ ମହେନ୍ଦ୍ରେ ତ୍ୟାବୃତଃ
ତସ୍ୟେ ମେ ନବ କୋଣାବିଷ୍ଟମ୍ଭା ନବଧା ହିତାଃ
+ + +
ଏତେ ଅଗ୍ନିର୍ଦେବୋ ଏକ ବୃଷେ ଭବନ୍ତୁ ।

ଅ: ବେଦ: ୧୩୪୯/୧୩

ସୂର୍ଯ୍ୟ ପ୍ରକାଶମାନ ହୋଇଉଠିଲେ, ନଭୋମଣ୍ଡଳ, ଆକାଶମଣ୍ଡଳ ଓ ନକ୍ଷତ୍ର ମଣ୍ଡଳ କିରଣ ଦ୍ୱାରା ପୂର୍ଣ୍ଣ ହୋଇଥାଏ । ନବଗ୍ରହ ସେମାନଙ୍କର କକ୍ଷାବୃତ୍ତିରେ ଧାବିତ

(୧) ଋକ୍‌ବେଦ—୩-୬୨-୧୦
(୨) ଭାରତରେ ସୂର୍ଯ୍ୟୋପାସନା : ଡ଼. ଭଗବାନ ପଣ୍ଡା, ପୃ ୧ ଠାରୁ ୯
(୩) ଉତ୍କଳର ପ୍ରାଚୀନ କୀର୍ତ୍ତି ମହେନ୍ଦ୍ରଗିରି : ଫଲ୍‌ଗୁ—ମଞ୍ଜୁକୃତ ପ୍ରବନ୍ଧ ।

ହୋଇଥାଆନ୍ତି । ସକଳ ଗ୍ରହ ସୂର୍ଯ୍ୟଙ୍କ ଆଶ୍ରିତ (୪) । ଅଗ୍ନି ପୁରାଣରେ ବିଷ୍ଣୁହିଁ ସବିତା ରୂପେ ପରିଚିତ । ସୂର୍ଯ୍ୟ ହିଁ ସ୍ୱୟମ୍ଭୂ ଅଟନ୍ତି । ସେହି ଦୃଷ୍ଟିରୁ ମହେନ୍ଦ୍ରଗିରିର ବିଷ୍ଣୁ ମନ୍ଦିର ସମ୍ମୁଖରେ ବିଦ୍ୟମାନ ସୂର୍ଯ୍ୟ ବିଗ୍ରହ ବୈଦିକ ସାଂସ୍କୃତି ସମ୍ମତ ।

ରାମାୟଣରେ ରାବଣ ବଧ ନିମିତ୍ତ ଶ୍ରୀରାମ ଆଦିତ୍ୟ ହୃଦୟ ସ୍ତୋତ୍ରପାଠ କରିଥିଲେ । ସେହିଭଳି ପାଣ୍ଡବମାନେ ମଧ୍ୟ ସୂର୍ଯ୍ୟୋପାସନା କରିଥିବା ମହାଭାରତରୁ ପ୍ରମାଣିତ ।

କେତେକ ଦାନ ପଟ୍ଟାରୁ ଜଣାଯାଇଛି ଯେ କଳିଙ୍ଗରେ କାଦମ୍ବବଂଶୀୟ ରାଜାମାନେ ଗଙ୍ଗମାନଙ୍କ ଅଧୀନରେ ମହେନ୍ଦ୍ରପର୍ବତର ପାର୍ଶ୍ୱପାର୍ଶ୍ୱିକ ଅଞ୍ଚଳରେ ରାଜତ୍ୱ କରୁଥିଲେ । କିନ୍ତୁ ମନ୍ଦିରର ନବଗ୍ରହ ମୂର୍ତ୍ତି ଦେଖିଲେ ଜଣାଯାଏ ଯେ ଏମାନେ ଶୈବ ପୂଜା ଏବଂ ଭଳିପୂଜା ସଙ୍ଗେ ସଙ୍ଗେ ସୂର୍ଯ୍ୟ ପୂଜା କରୁଥିଲେ ।

ବର୍ତ୍ତମାନ ମଞ୍ଜୁଷା ନିକଟସ୍ଥ ପିତ୍ତମଞ୍ଜୁଷା ଗ୍ରାମର (ପୂର୍ବେ ଶେତ୍ତ ମଞ୍ଜୁଷା ନାମରେ ଖ୍ୟାତ) ପ୍ରମ୍ଭାକୃତି ଦେବୀ ଖିଲମଣ୍ଡାଙ୍କୁ ମକର ସଂକ୍ରାନ୍ତିରେ ମହେନ୍ଦ୍ରର ଖମ୍ବ-ଗାଁଠାରୁ ଆହ୍ୱାନ କରି ଦାରୁ ବିଗ୍ରହ ଆକାରରେ ପୂଜା କରାଯାଏ । ଉତ୍କଳର ସତ୍ୟନାରାୟଣ ରାଜଗୁରୁ ଏହି ଦାରୁ ବିଗ୍ରହକୁ ଶ୍ରୀ ଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠିତ ସୁଦର୍ଶନ ବିଗ୍ରହର ସାଦୃଶ୍ୟ ଥିବା ମତ ଦିଅନ୍ତି । ଏହି ସୁଦର୍ଶନରେ ସୌର ପ୍ରତୀକ ଜଗନ୍ନାଥ ଯେ ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀକ । ମହେନ୍ଦ୍ରାଞ୍ଚଳର ଶବର ଜାତି ଜାରା ଶବର ନିଜକୁ ରାମ ଶବର ଗୋତ୍ର ନାମରେ ପରିଚୟ ଦିଅନ୍ତି । ରାମଶବର ହେଉଛନ୍ତି ସୂର୍ଯ୍ୟବଂଶ ସମ୍ଭୂତ । ଅତଏବ ଶବରମାନେ ସୌର ପୂଜକ ହିସାବରେ ଆଦ୍ୟରୁ ପରିଚିତ । ସୌର ଧର୍ମରେ ଜଗନ୍ନାଥଙ୍କୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଛି । (୫) ଏଣୁ ମହେନ୍ଦ୍ରାଞ୍ଚଳ ସୌରଧର୍ମର ଏକ ବିଶିଷ୍ଟ କେନ୍ଦ୍ର ଥିଲା ବୋଲି ବିଶ୍ୱାସ କରାଯାଏ ।

--------

(୪) ଦେବ ମନୁଷ୍ୟ କୃତ କି ? : ପ୍ରିୟବ୍ରତ ଦାସ, ପୃ-୪୦୨

(୫) ଅଗ୍ନିପୁରାଣରେ ବିଷ୍ଣୁହିଁ ସବିତା ରୂପରେ ପରିଚିତ । ସୌନକାଗ୍ନିରେ ସୂର୍ଯ୍ୟଙ୍କୁ ପ୍ରଜାପତି ରୂପେ ବର୍ଣ୍ଣନା କରିଛନ୍ତି । ବେଦ ଓ ପୁରାଣାଦିରେ ସୂର୍ଯ୍ୟ ହିଁ ସକଳ ଶକ୍ତିର ଆଧାର 'ବ୍ରହ୍ମା' । ଅତଏବ 'ସ୍ୱୟମ୍ଭୂ' ହିଁ ବ୍ରହ୍ମା, ଜଗତର ସୃଷ୍ଟିକର୍ତ୍ତା । ଅତଏବ ଜଗନ୍ନାଥଙ୍କୁ ବାଦଦେଇ ସୌର ସାଧନା ନିରର୍ଥକ । ଏଥିଦ୍ୱାରା ଏହି ସଂହତି ରକ୍ଷାପାଇଁ କୁହାଯାଇଛି ।

ଗଣେ, ନାରାୟଣେ, ରୁଦ୍ରେ, ଅମ୍ବିକେ, ଭାସ୍କରେ ତଥା
ଭିନ୍ନାଭିନ୍ନ ନ କର୍ତ୍ତବ୍ୟମ୍ ପଂଚଦେବ ନମୋସ୍ତୁତେ ।

## ବୌଦ୍ଧଭାବନା ପୀଠ :

'ସହଜ', 'ଶୂନ୍ୟ', 'ସହଜାନନ୍ଦ' ପ୍ରଭୃତି ଶବ୍ଦର ପ୍ରୟୋଗ ସାରଳା ମହାଭାରତରେ ବହୁଳଭାବରେ ଦେଖାଯାଏ । ଏହା ବ୍ୟତୀତ, 'ନିରାକାର', 'ଅଲେଖ', 'ନିର୍ଗୁଣ', 'ନିରଞ୍ଜନ' ପ୍ରଭୃତି ବହୁ ଶୂନ୍ୟବାଚକ ଶବ୍ଦ ପୂର୍ବବର୍ତ୍ତୀ ବୌଦ୍ଧ ଦର୍ଶନର ପ୍ରଭାବର ସଙ୍କେତ ଦେଇଥାଏ । ସାରଳା ଜଗନ୍ନାଥଙ୍କୁ ବିଭିନ୍ନ ସ୍ଥାନରେ ବୌଦ୍ଧ ଦେବତା ରୂପେ ଦେଖିଅଛନ୍ତି । ସାରଳା ଆଦ୍ୟ ପର୍ବରେ ଶାକ୍ତଧର୍ମ ଓ ବୌଦ୍ଧଧର୍ମର ସମ୍ପର୍କ ଦର୍ଶାଇ କହିଛନ୍ତି ଯେ ଶୂନ୍ୟରୁ ଶକ୍ତିଯାନର ଉଦ୍ଭବ ହେଲା । 'ଯାନ' ଶବ୍ଦଟି ବିଶେଷରେ ବୌଦ୍ଧୀୟ ମାର୍ଗ ବା ପନ୍ଥା ଭାବରେ ସ୍ୱୀକୃତ । ଯେପରି ବଜ୍ରଯାନ, ସହଜଯାନ, କାଳଚକ୍ର ଯାନ, ତନ୍ତ୍ରଯାନ ପ୍ରଭୃତି । ଶକ୍ତିତନ୍ତ୍ର ଭିତ୍ତିକ 'ତନ୍ତ୍ରଯାନ' ଶବ୍ଦର ସମନ୍ୱୟ ପ୍ରକାରାନ୍ତରେ ବୌଦ୍ଧଧର୍ମର ଶାକ୍ତଧର୍ମ ସହିତ ସମ୍ବନ୍ଧର ନିର୍ଦ୍ଦେଶ ଦେଇଥାଏ । ବୌଦ୍ଧଧର୍ମ ଗ୍ରନ୍ଥ ସ୍ୱୟମ୍ଭୂ ପୁରାଣରୁ ଆରମ୍ଭକରି ବହୁ ବଜ୍ରଯାନ ଗ୍ରନ୍ଥରେ ବୁଦ୍ଧ ଜଗନ୍ନାଥ ନାମରେ ନାମିତ ହୋଇଅଛନ୍ତି ।

ବହୁ ପ୍ରତ୍ନତାତ୍ତ୍ୱିକ ପ୍ରମାଣରୁ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରସାର ସେସ୍ପ ସୁସ୍ପଷ୍ଟ । ବୌଦ୍ଧମାନେ ତନ୍ତ୍ରସାଧନାରେ ଯେତିକି ଲୋକଙ୍କୁ ଉପକାର କରୁଥିଲେ ସେତିକି ଅପକାର ମଧ୍ୟ କରୁଥିଲେ । ମାଦଳାପାଞ୍ଜି କହେ—ବୌଦ୍ଧମାନେ ସର୍ବଶକ୍ତିମାନ୍ ଥିଲେ । ବୌଦ୍ଧ ଧର୍ମର ନୀତି ନିୟମକୁ ଉତ୍କଳୀୟ ସମାଜ ଯୁଗେ ଯୁଗେ ଯଥୋଚିତ ସମ୍ମାନ ଦେଇ ଆସିଛି । ଓଡ଼ିଶାର ବୌଦ୍ଧଧର୍ମ ସମ୍ବନ୍ଧରେ ଯେଉଁସବୁ ଉପାଦାନ ମିଳୁଛି ତାହାକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ବୁଦ୍ଧଦେବଙ୍କ ସମୟରୁ ଓଡ଼ିଶାରେ ବୌଦ୍ଧଧର୍ମ ପ୍ରଚଳିତ ହୋଇଛି । ଦ୍ୱିତୀୟ ପର୍ଯ୍ୟାୟରେ ଅଶୋକଙ୍କ ସମୟରେ କଳିଙ୍ଗ ତଥା କଳିଙ୍ଗ ବାହାରେ ମଧ୍ୟ ବୌଦ୍ଧଧର୍ମ ପ୍ରଚଳିତ ହୋଇଥିଲା । କଳିଙ୍ଗ ଯୁଦ୍ଧ ପରେ ଯେତେବେଳେ ଅଶୋକ ବୌଦ୍ଧଧର୍ମ ପ୍ରତି ଆସକ୍ତ ହେଲେ, ସେତେବେଳେ ଏହି ଧର୍ମ କାଶ୍ମୀରଠାରୁ କୁମାରିକା ଯାଏ ବ୍ୟାପିଗଲା । (୧) ଏଣୁ ବୌଦ୍ଧଧର୍ମ ମହେନ୍ଦ୍ରାଞ୍ଚଳରେ ମଧ୍ୟ ପ୍ରସାର ଲାଭ କରିଥିବା ନିଃସନ୍ଦେହ । ମହେନ୍ଦ୍ରଗିରିର ଇନ୍ଦ୍ରକୁଣ୍ଡରେ ଥିବା ଇନ୍ଦ୍ରଲିଙ୍ଗ ଓ ଖୋଲରେ ଥିବା ବୁଦ୍ଧେଶ୍ୱର ସମ୍ଭବତଃ ଏହି ସମୟର କୃତି ବୋଲି କୁହାଯାଇପାରେ ।

ତୃତୀୟ ଶତାବ୍ଦୀ ବେଳକୁ ଗୁହଶିବ ନାମକ ଜଣେ ବିଖ୍ୟାତ ରାଜା ଓଡ଼ିଶାରେ ରାଜତ୍ୱ କରୁଥିଲେ ।

---

(୧) କୋଣାର୍କ ୭୨ତମ ସଂଖ୍ୟା : ଡଃ ନବୀନକୁମାର ସାହୁ, ପୃ-୩

କଳିଙ୍ଗା ମହିଷାଶ୍ଚୈବ ମହେନ୍ଦ୍ରନିଳୟାଶ୍ଚଯେ
ଏତାନ୍ ଜନପଦାନ୍ ସର୍ବାନ୍ ପାଳୟିଷ୍ୟତି ବୈ ଗୁହଃ
(ବାୟୁ—ଗଙ୍ଗାବାସୀ ସଂସ୍କରଣ ୯୯ ଅଧ୍ୟାୟ ପୃ ୩୮)

ଏହି ଶ୍ଳୋକରୁ ଜଣାପଡ଼େ ବୌଦ୍ଧଗ୍ରନ୍ଥ ଦାଠାବଂଶ (ଦନ୍ତବଂଶ)ରେ ଗୁହଙ୍କ ନାମ ରହିଛି । ଗୁହଶିବ କଳିଙ୍ଗ ମହିଷ ଅର୍ଥାତ୍ ମେଦିନୀପୁର, ମହେନ୍ଦ୍ରପର୍ବତ ଅଞ୍ଚଳ ଆଧୁନିକ ଗଞ୍ଜାମ ଅଞ୍ଚଳରେ ରାଜତ୍ୱ କରୁଥିଲେ (୨) ଦାଠାବଂଶର ବର୍ଣ୍ଣନାନୁସାରେ ବୁଦ୍ଧଙ୍କ ତିରୋଧାନ ପରେ ଏହି ବଂଶ ଓଡ଼ିଶାରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ ।

ତୃତୀୟ ପର୍ଯ୍ୟାୟରେ କନିଷ୍କଙ୍କ ସମୟରେ ଓଡ଼ିଶାରେ ବୌଦ୍ଧଧର୍ମ ଏକ ନବୀନ ରୂପ ନେଇ ଆତ୍ମପ୍ରକାଶ କରିଛି । ଏହି ସମୟରେ ଧଉଳି ଏକ ପ୍ରସିଦ୍ଧ ବୌଦ୍ଧପୀଠ ଥିଲା । କନିଷ୍କଙ୍କ ସମୟରେ ବୌଦ୍ଧଧର୍ମ ଦୁଇ ଭାଗରେ ବିଭକ୍ତ ହେଲା—ହୀନଯାନ ଓ ମହାଯାନ । ଏହି ମହାଯାନ ଧର୍ମର ପ୍ରଥମ ପ୍ରବର୍ତ୍ତକ ଅଟନ୍ତି ନାଗାର୍ଜ୍ଜୁନ । ତାଙ୍କ ପରେ ଅସଙ୍ଗ, ବସୁବନ୍ଧୁ ଓ ଦିଙ୍ଗନାଗ ଏହି ମହାଯାନ ସମ୍ପ୍ରଦାୟରେ ଆଚାର୍ଯ୍ୟତ୍ୱ ଗ୍ରହଣ କରିଥିଲେ । ଏହି ପର୍ଯ୍ୟାୟର କୃତିମାନଙ୍କରୁ ଜଣାଯାଏ ଯେ ବୌଦ୍ଧସ୍ତୂପ ଆକାରରେ ତିଆରି ହୋଇଥିବା ମହେନ୍ଦ୍ରାଞ୍ଚଳର ମନ୍ଦିରମାନଙ୍କ ମଧ୍ୟରେ ଭୀମ ଦେଉଳ ସୁପ୍ରାଚୀନ ।

ଚତୁର୍ଥ ପର୍ଯ୍ୟାୟରେ ହର୍ଷବର୍ଦ୍ଧନଙ୍କ ସମୟରେ ଓଡ଼ିଶାରେ ବୌଦ୍ଧଧର୍ମ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଚୀନ ପରିବ୍ରାଜକ 'ହୁଏନ୍‌ସାଂ' ଓଡ଼ିଶାରେ ଏକଶତ ବୌଦ୍ଧ ବିହାର ଓ ସହସ୍ରାଧିକ ବୌଦ୍ଧାଚାର୍ଯ୍ୟଙ୍କୁ ଦେଖିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ସପ୍ତମ ଶତାବ୍ଦୀରେ ଧର୍ମକୀର୍ତ୍ତି ଓଡ଼ିଶାର ଗଞ୍ଜାମ ତଥା ମହେନ୍ଦ୍ର ଅଞ୍ଚଳରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ବହୁ ପ୍ରସିଦ୍ଧ ବୌଦ୍ଧ ଧର୍ମାଚାର୍ଯ୍ୟଙ୍କ ଆଗମନ ଓଡ଼ିଶାରୁ ହୋଇଛି ବୋଲି ଅନୁମାନ କରାଯାଏ । (୩) ଇତିହାସରୁ ଜଣାଯାଏ ସପ୍ତମ ଅଷ୍ଟମ ଶତାବ୍ଦୀରେ ଓଡ଼ିଶାରେ ଭୌମବଂଶୀ ରାଜାମାନେ ଶାସନ କରୁଥିଲେ । ଏମାନେ ବୌଦ୍ଧ ଧର୍ମାବଲମ୍ବୀ ଥିଲେ । ଏହି ସମୟରେ ମଧ୍ୟ ମହେନ୍ଦ୍ରାଞ୍ଚଳରେ ବୌଦ୍ଧଧର୍ମ ଅବ୍ୟାହତ ଥିଲା । ଏହି ସମୟର କୃତି ଯୁଧିଷ୍ଠିର ମନ୍ଦିରର କାରୁକାର୍ଯ୍ୟ ବୌଦ୍ଧକୀର୍ତ୍ତିର ସଙ୍କେତ ଯୋଗାଏ । (ପ୍ଳେଟ ୨.୨ ଚିତ୍ର ଦ୍ରଷ୍ଟବ୍ୟ)

ଉତ୍ତରତୋଷିଣୀର ରାଜା ଦନ୍ତିକୁମାର ବୁଦ୍ଧ ପୂଜା କରୁଥିଲେ ଏବଂ ସେ ମହେନ୍ଦ୍ରାଞ୍ଚଳରେ ମଧ୍ୟ ବୌଦ୍ଧଧର୍ମ ପ୍ରଚାର କରିଥିଲେ । (୪) ବର୍ତ୍ତମାନ ଏହି ଅଞ୍ଚଳରେ ଦୃଶ୍ୟମାନ

---

(୨) ସଂସ୍କୃତ ସାହିତ୍ୟର ଇତିହାସ : ଆର୍ଯ୍ୟକବି ପ୍ରମୋଦକୁମାର, ପୃ-୯୨
(୩) ଓଡ଼ିଆ ସାହିତ୍ୟରେ ବିଭିନ୍ନ ଧର୍ମଧାରା : ଶ୍ରୀ ଫକୀର ମୋହନ ଦାସ, ପୃ-୪୭
(୪) History of Orissa : K. Ch. Panigrahy, P-311

ଲିଙ୍ଗଗୁଡ଼ିକ ବୁଦ୍ଧଙ୍କ ମସ୍ତକ ବୋଲି ଅନୁମାନ କରାଯାଏ । ଏହି ବୁଦ୍ଧ ମସ୍ତକଗୁଡ଼ିକ ଲିଙ୍ଗ ହିସାବରେ ବର୍ତ୍ତମାନ ପୂଜିତ । ଗଙ୍ଗବଂଶର ରାଜାମାନେ ବ୍ରାହ୍ମଣ୍ୟ ହିନ୍ଦୁ ଧର୍ମ ପ୍ରଚାର କରିବା ସଙ୍ଗେ ସଙ୍ଗେ ବୌଦ୍ଧଧର୍ମ ମଧ୍ୟ ପ୍ରଚାର କରିଥିଲେ । ମାଦଳାପାଞ୍ଜିରେ ମଧ୍ୟ ବର୍ଣ୍ଣିତ ଅନଙ୍ଗ ଭୀମଦେବଙ୍କ ଭ୍ରାତା ମଦନମହାଦେବ ବୌଦ୍ଧଧର୍ମ ସହ ସମ୍ପୃକ୍ତ ଥିଲେ । ଷଷ୍ଠ ଶତାବ୍ଦୀର ପଞ୍ଚସଖାଙ୍କ ରଚନାମାନଙ୍କରେ ମଧ୍ୟ ମହାଯାନ ବୌଦ୍ଧଧର୍ମ ବିଷୟ ବର୍ଣ୍ଣିତ । ତେବେ ବୁଦ୍ଧ ବିଷ୍ଣୁଙ୍କର ଏକ ଅବତାର ରୂପେ ଗୃହୀତ ହୋଇଛନ୍ତି । (୬)

**ସହଜସାଧନା ପୀଠ :**

ସହଜଯାନ ମାର୍ଗୀ ସିଦ୍ଧମାନେ ସହଜିଆ ସାହିତ୍ୟ ଓ ଦର୍ଶନ, ବୌଦ୍ଧଗାନ ଓ ଦୋହା ସୃଷ୍ଟି କରିଥିଲେ । ଚୌରାଶୀ ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରେ ସରହ, ଲୁଇପା, କମ୍ବଳ, ପଦ୍ମବଜ୍ର, ଜାଲନ୍ଧରୀ ପାଦ, କାହ୍ନୁପା ପ୍ରଭୃତି ଓଡ଼ିଶାର ଅଧିବାସୀ ଥିଲେ । (୭) ଏହା ନିଶ୍ଚିତ ଭାବେ କୁହାଯାଇପାରେ ଯେ ଏହି ତୀର୍ଥକ୍ଷେତ୍ର ବୌଦ୍ଧଯାନରୁ ତନ୍ତ୍ରଯାନ, ତନ୍ତ୍ରଯାନରୁ ବୈଷ୍ଣବବାଦରେ ଲୀନ ହୋଇ ପୁରୁଷୋତ୍ତମ ତତ୍ତ୍ୱରୂପେ ପରିପ୍ରକାଶ । ଓଡ଼ିଶା ଏହି ସିଦ୍ଧ ସାଧକମାନଙ୍କର ବିହାରସ୍ଥଳ ଭାବରେ ପ୍ରସିଦ୍ଧିଲାଭ କରିଥିବ, ତା ନହେଲେ ଶତାଧିକ ଅବଧୂତଙ୍କର ମହେନ୍ଦ୍ରାଞ୍ଚଳରେ ସାଧନା କରିବା ଦେଖାଯାଇ ନଥାନ୍ତା । ଭୌମବଂଶର ଶାସନ କାଳରେ ଜଗନ୍ନାଥ ବା ବୁଦ୍ଧ ମହେନ୍ଦ୍ର ଶିଖରରେ ପୂଜା ପାଉଥିଲେ (୮) ଭଗବାନ ଜଗନ୍ନାଥ ବିଭିନ୍ନ ଅବତାରରେ ଏହି ଧରାପୃଷ୍ଠରେ ବିଦ୍ୟମାନ ।

ଶୈବ ପୂଜା ପରବର୍ତ୍ତୀ ଯୁଗରେ ସହଜ ସାଧନାରେ ଏପରି ପ୍ରଭାବ ପକାଇଛି ଯାହାକି, ଅବଧୂତମାନଙ୍କ ଯଜ୍ଞସ୍ଥଳ ମହେନ୍ଦ୍ରଗିରିରେ ଓ ଚତୁଃପାର୍ଶ୍ୱସ୍ଥ ସିଂହପୁର, ଖିଲେଇ, ବ୍ରାହ୍ମଣ ତରଲା ମଞ୍ଜୁଷା ଇତ୍ୟାଦି ଜନପଦରେ ଅଦ୍ୟାପି ପରିଦୃଷ୍ଟ ।

ସରହ ପାଦ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଜୀବିତ ଥିବାର ପ୍ରମାଣ ମିଳେ, ସରହପାଦଙ୍କ ଶୈଳୀ, ପଦଯୋଜନା ଓ ଭାବ ତାଙ୍କ ଲେଖାକୁ ଅମର କରିଛି ।

ଉଁଚା ଉଁଚା ପବତ ତହିଁ ବସଇ ସବରୀ ବାଲୀ
ମୋରଙ୍ଗୀ ପିଚ୍ଛ ପରହି ସବରୀ ଗୀବତ ଗୁଞ୍ଜରୀମାଲୀ

---

(୫) Hist of Orissa : K. Ch Panigrahi, P 311
(୬) —ଏକନ—
(୭) Souvenir I.T.D.A Palakhemedi 83 : Dr.S.N. Rajguru, P-4.
(୮) ଚର୍ଯ୍ୟାଗୀତିକା : ଡ଼ଃ ଖଗେଶ୍ୱର ମହାପାତ୍ର

ଉମତ ସବରେ ପାଗଲ ସବରେ, ମାକର ଗୁଲୀ ଗୁହାଡ଼ୀ
ଛୋହରି ଣିଅ ଘରଣୀ ସହଜ ସୁନ୍ଦରୀ
ପାଣା ତରୁବର ମୌଳିଲରେ ଗଅଣତ ଲାଗେଲି ଡାଳୀ
ଏକଲୀ ସବରୀ ଏ ବନ ହିଣ୍ଡଇ କର୍ଣ୍ଣ କୁଣ୍ଡଳ ବଜ୍ରଧାରୀ
ତିଆ ଧାଉ ଖାଟ ପଡ଼ିଲା ସବରେ ମହାସୁଖେ ସେଜି ଛାଇଲୀ
ସବରୋ ଭୁଜଙ୍ଗ ଣାଇରାମଣି ଦାରୀ ପେକ୍ଖ ରାତି ପୋହାଇଲୀ
ଏହି ତା ବୋଲି ମହାସୁହେ କାପୁର ଖାଇ
ସୁନ ନିରାମଣି କଣ୍ଠେ ଲଇଆ ମହାସୁଖେ ରାତି ପୋହାଇ
ଗୁରୁବାକ ପୁଞ୍ଛଆ ବିନ୍ଧାଣି ଆମେମଣୋ ବାଣେଂ
ଏକେ ଶର ସନ୍ଧାନେଂ ବିନ୍ଧହ୍ମ ବିନ୍ଧହ୍ମ ପରମଣିବାଣେଂ
ଉମତ ସବରୈଁ ଗରେଆ ରୋଷେ ।
ଗିରିବର ସିହର ସିନ୍ଧ ପଇସନ୍ତେ ସବରୋ ଲୋଡ଼ିବ କଇସା ।

ଏଥିରେ ପ୍ରଚଳିତ ଶବ୍ଦ ଓଡ଼ିଆ ଭାଷାରେ ରହିଛି—ଉମ୍ମତ୍ତ, ବସଇ, ଡାଳୀ, ଛୋହରି (ଛୋହରି) ଘରଣୀ, ଘରଣୀ, ଲାଗିବା ଏକଲ, ହିଣ୍ଡ, ସେଜ, ଛାଇବା (ବିଛାଇବା, ବିସ୍ତାରିବା) ଦାରୀ, ରାତି, ପୋହାଇଲା (ପୁହାଇବା) ହିଆ, ଖାଇ, ସୁନ (ଶୂନ), ଲଇ, ପୁଚ୍ଛି, ବିନ୍ଧା । ତେଣୁ ଏ କବିତାଟି ପାଠ କଲେ ଅଧିକାଂଶ ଭାଗ ଓଡ଼ିଆ ବୋଧ ହେବ । (୧)

ମହେନ୍ଦ୍ରାଞ୍ଚଳରେ ଶବରଗଣଙ୍କ କଥିତ ଭାଷା ଉପରୋକ୍ତ ଭାଷା ସହିତ ପ୍ରାୟ ପଚାଶ ଭାଗ ସାମଞ୍ଜସ୍ୟ ଥିବା ଜଣାପଡେ । ଶବର, ହାଡ଼ି, ଡ଼ମ୍ବ, ପାଣ, ଦୃଟଡ଼ି, ରେଲି, ବାଉରି, କଣ୍ଡରା ପ୍ରଭୃତି ଜାତିର ଲୋକେ ଯେଉଁ ଧରଣର ପ୍ରକୃତ ଭାଷା ଓ ଉଚ୍ଚାରଣ ଶୈଳୀ ଚଷାକଣ କଥା କହନ୍ତି, ତାହା ଏହି ଅଞ୍ଚଳର ଭାଷା ସହିତ ସାମଞ୍ଜସ୍ୟ ରହେ । ଏଥିରୁ ଜଣାପଡ଼େ ଓଡ଼ିଆ ଭାଷାର ଆଦିରୂପ ଚର୍ଯ୍ୟାଗୀତମାନଙ୍କର ଭାଷା ମଧ୍ୟଯୁଗରୁ ଆରମ୍ଭ କରି ପୂର୍ବ ଭାରତରେ ଅର୍ଦ୍ଧମାଗଧୀ ମାଧ୍ୟମରେ ବ୍ୟବହୃତ ହେଉଥିଲା । ବୌଦ୍ଧଧର୍ମର ସହଜିଆ ସମ୍ପ୍ରଦାୟର ଗୁରୁମାନେ ଯେତେବେଳେ ଯେଉଁ ଧର୍ମପ୍ରଚାର କରୁଥିଲେ ଏବଂ ଯେଉଁ ଯେଉଁ ଅଞ୍ଚଳରେ ବାସ କରୁଥିଲେ ସେହି ଅଞ୍ଚଳର ଭାଷାକୁ ନେଇ ଚର୍ଯ୍ୟାଗୀତ ସୃଷ୍ଟି କରୁଥିଲେ । ଯାହାର ପ୍ରଭାବ ପରବର୍ତ୍ତୀ ଯୁଗରେ ଅଞ୍ଚଳର ଅଧିବାସୀଙ୍କୁ ପ୍ରଭାବିତ କରାଥିବା ଅସମ୍ଭବ କଥା ନୁହେଁ କାରଣ ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କର

---

(୧) ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପୃ ୧୪

ତାମ୍ରଶାସନରେ ଯେଉଁ ଭାଷା ବ୍ୟବହାର କରାଯାଇଛି, ଗଙ୍ଗବଂଶୀୟ ବଜ୍ରହସ୍ତଙ୍କ ତାମ୍ରଶାସନର ଯେଉଁ ପଦ ବ୍ୟବହାର କରାଯାଇଛି ତାହା ଅନୁଧ୍ୟାନ କଲେ ଗଙ୍ଗବଂଶୀୟ ରାଜା ମଧୁକାମାର୍ଣ୍ଣବ ଦେବଙ୍କ ସମେତ କାଦମ୍ବବଂଶୀୟ ରାଜା ଉଦୟ ଖେଡ଼ି, ଭୀମ ଖେଡ଼ି, ଉଦୟାଦିତ୍ୟଙ୍କ ତାମ୍ରଶାସନରେ ଓ ପୂର୍ବ ଗଙ୍ଗବଂଶୀୟ ଅନନ୍ତବର୍ମାଙ୍କ, କାଦମ୍ବବଂଶୀ ଧର୍ମଖେଡ଼ିଙ୍କ ଓ ଭୌମବଂଶୀୟ ଦଣ୍ଡି ମହାଦେବୀଙ୍କ ତାମ୍ରଶାସନମାନଙ୍କରେ ପ୍ରତିଫଳିତ ହୋଇପାରିନଥାନ୍ତା । ବିଶେଷକରି ଏହି ଅଞ୍ଚଳର କାଦମ୍ବବଂଶୀୟ ରାଜାମାନଙ୍କର ତାମ୍ରଶାସନରୁ ପ୍ରାପ୍ତ କେତୋଟି ଶବ୍ଦ ଉଦ୍ଧାର କରାଗଲା । ଅତଏବ ଏହି ଚର୍ଯ୍ୟାପଦ ସହଜସାଧନାର ମୁଖପତ୍ର ହିସାବରେ ଦେଖାଦେଲେ ମଧ୍ୟ ମହେନ୍ଦ୍ରାଞ୍ଚଳରେ ଯେଉଁ ସହଜଯାନ ପନ୍ଥୀ ଯକ୍ଷ କରନ୍ତି ସେଥିରେ ମାର୍ଜିତ ଭାଷା ବ୍ୟବହାର କରିବା ଦେଖାଯାଇଥାଏ । ସେ ଯାହାହେଉ ଏହି ଅଞ୍ଚଳରେ ହିଁ ଶବରୀ ଭାଷାର ଉତ୍ପତ୍ତି ଓ ଆଦି ସଭ୍ୟତାର ସଙ୍କେତରୂପେ ମହେନ୍ଦ୍ରଗିରିର ନିଭୃତକୋଣରେ ସଭ୍ୟତାର ଆଲୋକ ନ ପାଇ ତାହା ଆଦିମ ସଙ୍କେତକୁ ବଞ୍ଚାଇ ରଖିଛି । (୨)

ସହଜସାଧନାର ମୂଳତତ୍ତ୍ୱ ବୋଧିଚିତ୍ତ ସମୁତ୍ପାତ । ବୋଧିଚିତ୍ତ ଅର୍ଥ ଜ୍ଞାନମୟ ବା ଜ୍ଞାନରେ ପ୍ରତିଷ୍ଠିତ ଚିତ୍ତ-ଚିତ୍ତର ଦୃଢ଼ ଓ ଅଚଳ ଅବସ୍ଥା । ଏହା ବଜ୍ର ସ୍ୱରୂପ । ଜ୍ଞାନ ବ୍ୟତୀତ ଏହାର ଅନ୍ୟ ଏକ ଉପାଦାନ ସାର୍ବଜନୀନ କରୁଣା । ତେଣୁ ବୋଧିଚିତ୍ତ ହେଉଛି ଶୂନ୍ୟତା ଓ କରୁଣାଯୁକ୍ତ ଚିତ୍ତ (ଶୂନ୍ୟତା କରୁଣା ଭିନ୍ନଂ ବୋଧିଚିତ୍ତମ୍) ଏହି ଶୂନ୍ୟତା ଓ କରୁଣାକୁ ଏମାନେ ପ୍ରଜ୍ଞା ଉପାୟ, ଗ୍ରାହ୍ୟ ଗ୍ରାହକ, ଭବନିର୍ବାଣ, ବାମନାଡ଼ୀ, ଦକ୍ଷିଣନାଡ଼ୀ ଇତ୍ୟାଦି ନାନା ଭାବରେ ବର୍ଣ୍ଣନା କରିଛନ୍ତି । ସ୍ଥୂଳବିଶେଷରେ ଏହା ନାରୀ ଓ ପୁରୁଷରୂପେ ମଧ୍ୟ ପରିକଳ୍ପିତ । ଏହି ଦୁହିଙ୍କର ମିଳନ ଏକ ମଧ୍ୟମାର୍ଗ ଅବଧୂତ ମାର୍ଗରେ ସଙ୍ଘଟିତ ହୁଏ । ଏହାହିଁ ଯୁଗନଦ୍ଧ, ସମରସ ବା ଅଦ୍ୱୈୟ ଅବସ୍ଥା । କାୟା ସାଧନା ଦ୍ୱାରା ଏହି ମିଳନ ଧାରାକୁ ଅବଧୂତ ମାର୍ଗରେ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରି ସାଧକ ମହାସୁଖ ଲାଭ କରେ । ଏହି ସାଧନାର ସାରକଥା ହେଲା ସହଜୟାମାନେ ଦେହରେ ବୌଦ୍ଧିକ କାୟା ସହିତ ସହଜକାୟାଯୁକ୍ତ କରି ଚାରିକାୟା ନିର୍ଣ୍ଣୟ କରିଛନ୍ତି ଏବଂ ହିନ୍ଦୁ ତନ୍ତ୍ରର ଷଡଚକ୍ର ଅନୁରୂପରେ ଶରୀରରେ ଏହାର ଅବସ୍ଥିତି ପରିକଳ୍ପନା କରିଅଛନ୍ତି । ଇଡ଼ା, ପିଙ୍ଗଳା ଏମାନଙ୍କର ପରିଭାଷାରେ ଲଲନା ରସନା, ଆଲିକାଲି, ଧମଣ, ଚମଣ ଓ ସୁଷୁମ୍ନା ଅବଧୂତିକା ବାମ ଦକ୍ଷିଣ ନାଡ଼ୀଦ୍ୱୟର ସ୍ୱାଭାବିକ ନିମ୍ନଗତିକୁ ରୁଦ୍ଧକରି ମଧ୍ୟମ ମାର୍ଗରେ ଏକୀକରଣ କରିବା ଏବଂ ସଂବୃତ୍ତ ବୋଧିଚିତ୍ତକୁ ଜାଗ୍ରତ କରି ସେହି ମାର୍ଗରେ ଊର୍ଦ୍ଧ୍ୱକୁ ଉତ୍ତୋଳନ କରିବା

(୨) ଓଡ଼ିଆ ସାହିତ୍ୟର ଇତିହାସ : ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପୃ ୯୭

ବିଧେୟ । ଏହାଦ୍ୱାରା ଏକ ଏକ କାୟା ବା ଶୂନ୍ୟମଣ୍ଡଳ ଅତିକ୍ରମ କରିବା ସଙ୍ଗେ ସଙ୍ଗେ ଏକ, ଏକ ଆନନ୍ଦ ଓ ଅନୁଭୂତି ଲାଭ ହୁଏ ଏବଂ ସର୍ବଶେଷରେ ମହାସୁଖ ପ୍ରାପ୍ତହୁଏ । ସମ୍ବୃତି ବୋଧିଚିତ୍ତ 'ପରମାର୍ଥ'କରେ' ରୂପାନ୍ତରିତ ହୁଏ । ଏମାନଙ୍କର ଯୋଗସାଧନରେ ରୂପକାତ୍ମକ ଭାବରେ ନାରୀଚର୍ଯ୍ୟା ପରିଦୃଷ୍ଟ । ମହାସୁଖ ବା ସହଜାନନ୍ଦକୁ ଏମାନେ ନାରୀ ସହିତ ତୁଳନା କରିଛନ୍ତି । ତାହା ଡୋମ୍ବୀ, ଶବରୀ, ଚଣ୍ଡାଳୀ ଇତ୍ୟାଦି ଭାବରେ ରୂପାୟିତ ହୋଇଛି । (୧)

ଚର୍ଯ୍ୟାଗୀତିକାରେ ପ୍ରତିଷ୍ଠ ଦର୍ଶନତତ୍ତ୍ୱ ମହାଯାନ ଶାଖା ଅନ୍ତର୍ବର୍ତ୍ତୀ ବିଭିନ୍ନ ସମ୍ପ୍ରଦାୟର ସିଦ୍ଧାନ୍ତ ଦ୍ୱାରା ମାର୍ଜିତ । ଉଭୟ ମାଧ୍ୟମିକ ଓ ଯୋଗାଚାରର ଦର୍ଶନର ପ୍ରଭାବ ଏଥିରେ ପରିଲକ୍ଷିତ ହୁଏ । ବୌଦ୍ଧଧର୍ମର କେତେକ ବିଶିଷ୍ଟ ତଥ୍ୟ ଓ ସଂଜ୍ଞା, ଯଥା—ବୁଦ୍ଧ, ଚିତ୍ତ, ସ୍କନ୍ଦ, ନିର୍ବାଣ, ଶୂନ୍ୟ, କରୁଣା, ଗଗନ, ବଜ୍ର, ନୈରାତ୍ମା ସିଦ୍ଧାଚାର୍ଯ୍ୟଗଣ ପ୍ରୟୋଗ କରିଆସୁଛନ୍ତି । ଅନ୍ୟ ପକ୍ଷରେ ନାଥପନ୍ଥୀ ସହିତ ଏମାନଙ୍କର ସାଦୃଶ୍ୟ ଅନେକ କ୍ଷେତ୍ରରେ ପରିଦୃଷ୍ଟ ହୁଏ । ଏମାନେ ନିଜକୁ କେବଳ ଯୋଗୀ, କାପାଳିକ ରୂପେ ପରିଚିତ କରାଇନାହାନ୍ତି । ହଠନାଥ ଧର୍ମର 'ନାଥ' ଶବ୍ଦ, ପିଣ୍ଡ ବ୍ରହ୍ମାଣ୍ଡତତ୍ତ୍ୱ, ଯୋଗ ଆଦି ମଧ୍ୟ ଗ୍ରହଣ କରିଛନ୍ତି । ପୁନଶ୍ଚ ନାଥ ପରମ୍ପରାରେ ଉଲ୍ଲେଖ ନାଥଧର୍ମ ସହିତ ଏମାନଙ୍କର ସମ୍ପର୍କ ପ୍ରମାଣିତ କରେ । (୨)

ସହଜଯାନରେ ସୃଷ୍ଟି କ୍ଷେତ୍ର ଓଡ଼ିଶା; ଇନ୍ଦ୍ରଭୂତିଙ୍କର ଭଉଣୀ ଲକ୍ଷ୍ମୀଙ୍କର ଏହାର ସ୍ରଷ୍ଟା । ଇନ୍ଦ୍ରଭୂତିଙ୍କର ଅନ୍ୟ ଏକ ପାଳିତ ପୁତ୍ର ପଦ୍ମସମ୍ଭବ ଏହି ମାର୍ଗର ପ୍ରଧାନ ସାଧକ । ସେ ଜାହୋର ବା ଆଧୁନିକ କେନ୍ଦୁଝରର ରାଜକନ୍ୟା ମନ୍ଦାରବାଙ୍କୁ ବିବାହ କରିଥିଲେ । ମନ୍ଦାରବାଙ୍କ ଭଗି ଶାନ୍ତିରକ୍ଷିତ ମଧ୍ୟ ଜଣେ ବୌଦ୍ଧଶାସ୍ତ୍ରବିତ୍ ଓ ଦାର୍ଶନିକ ଥିଲେ । ସେ ପଦ୍ମସମ୍ଭବଙ୍କ ସହିତ ତିବ୍ବତ ରାଜ୍ୟକୁ ଯାଇ ସେଠାରେ ପୂର୍ବରୁ ପ୍ରଚଳିତ ବାଣଧର୍ମ ସହିତ ନିଜ ସହଜଯାନର ସମନ୍ୱୟରେ ଲାମାଧର୍ମ ସୃଷ୍ଟି କଲେ ବୋଲି ଲାମା ତାରନାଥଙ୍କ ବିବରଣୀରୁ ଜଣାଯାଏ । ଏହିପରି ବୌଦ୍ଧଧର୍ମର ବିକାଶ କ୍ଷେତ୍ରରେ ଓଡ଼ିଶା ମୁଖ୍ୟ ଅଂଶ ଗ୍ରହଣ କରିଛି । (୩) ମହେନ୍ଦ୍ରର ଯେଉଁ ଦାରୁମୂର୍ତ୍ତି ଦିନେ ଗୋକର୍ଣ୍ଣେଶ୍ୱର ହିସାବରେ ପୂଜିତ ହୋଇ ଶକ୍ତିତତ୍ତ୍ୱକୁ ବହନ କରି ତନ୍ତ୍ର ମଧ୍ୟକୁ ପ୍ରବେଶ କଲେ ତାହା ଯଥାର୍ଥରେ ଏହି ସହଜଯାନ ମାଧ୍ୟମରେ ଶାବରୀ ସଭ୍ୟତାର କେନ୍ଦ୍ରରେ ବୌଦ୍ଧସିଦ୍ଧଙ୍କ ସହିତ ସମ୍ପର୍କ ଥିବା ମନେହୁଏ । ଓଡ଼ିଆ

---

(୧) ଚର୍ଯ୍ୟାଗୀତିକା : ଡ଼ଃ ଖଗେଶ୍ୱର ମହାପାତ୍ର, ପୃ ୨୨

(୨) —ଏକନ—

(୩) ଓଡ଼ିଆ ସାହିତ୍ୟର ବିଭିନ୍ନ ଧର୍ମଧାରା : ଶ୍ରୀ ଫକୀରମୋହନ ଦାସ, ପୃ ୫୫

ସାହିତ୍ୟ ଆଲୋଚନା କଲେ ଏହି ବୌଦ୍ଧଭାବନା କେଉଁ ଅବସ୍ଥାରେ ସହଜ ସାଧନାରେ ପରିଣତ ହୋଇ ଶୂନ୍ୟବାଦକୁ ପ୍ରକାଶ କଲା ତାହା ବୋଧଗମ୍ୟ ।

ହିନ୍ଦୁ ଦେବଦେବୀମାନେ ସାଧାରଣତଃ ସ୍ୱାଭାବିକ ନରରୂପଧାରୀ, ଯଥା— ରାମ, କୃଷ୍ଣ, ସରସ୍ୱତୀ ଇତ୍ୟାଦି । କିନ୍ତୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ସେହିପରି ନୁହନ୍ତି । ସେମାନଙ୍କର ଆକୃତି ଯାହା ତାକୁ 'ଅଲେଖ' ବା ଶୂନ୍ୟ କହିବା ଏକାବେଳକେ ଅଯୌକ୍ତିକ ହେବନାହିଁ । ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର "ଓଡ଼ିଶା ଇତିହାସ"ରେ ଏହି ତିନି ମୂର୍ତ୍ତିକୁ ବୌଦ୍ଧ ତ୍ରି-ରତ୍ନ ପାଲି ସଙ୍କେତର କାଷ୍ଠମୟ ମାତ୍ର ବୋଲି ସ୍ପଷ୍ଟ ପ୍ରମାଣିତ କରିଛନ୍ତି । (୪) କେତେକଙ୍କ ମତରେ ଓଡ଼ିଶା ବଜ୍ରଯାନର ଏକ ଉର୍ବର କ୍ଷେତ୍ରସ୍ଥଳୀ । ପୂର୍ବେ ଆଲୋଚିତ ବୌଦ୍ଧଚର୍ଯ୍ୟା ପଦଗୁଡ଼ିକ ବୁଦ୍ଧବାଣୀ ଓ ତନ୍ତ୍ରବାଦର ମିଳନରୁ ଉଦ୍ଭୂତ । ବୌଦ୍ଧ, ଶାଖା ଧର୍ମମାନଙ୍କର ଫଳ । ଓଡ଼ିଆମାନଙ୍କ ଜାତୀୟ ସଂସ୍କୃତିରେ ଏଗୁଡ଼ିକ କିନ୍ତୁ ଅଳ୍ପବିସ୍ତର ଗ୍ରହଣଯାଇଛନ୍ତି । ଫଳତଃ ସେ ସମୟରେ ମହାଯାନରେ ଶୂନ୍ୟବାଦ ନାଥମାନଙ୍କର ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଓ କିଛି ହଠଯୋଗର ସମ୍ମିଶ୍ରଣ ଘଟିଛି । (୫)

ପଞ୍ଚସଖା ସାହିତ୍ୟରେ ଶ୍ରୀ ଜଗନ୍ନାଥ ଉଭୟ ସଗୁଣ ଓ ନିର୍ଗୁଣ ବ୍ରହ୍ମରୂପେ ବର୍ଣ୍ଣିତ ହୋଇଛନ୍ତି । (୬) ସେ ନିରାକାର ଶୂନ୍ୟବ୍ରହ୍ମ, ନାମବ୍ରହ୍ମ, ଓଁକାରରୂପୀ ଶବ୍ଦ ବ୍ରହ୍ମ ଓ ସର୍ବୋପରି ନିତ୍ୟ ବୃନ୍ଦାବନ ଆଦି ବିଭିନ୍ନ ରୂପରେ ରୂପାୟିତ ହେଲେ ହେଁ ସେମାନଙ୍କର ଶରୀର ଭେଦ ତତ୍ତ୍ୱରେ ମହାଶୂନ୍ୟରେ ଜ୍ୟୋତିରୂପୀ ଶ୍ରୀ ଜଗନ୍ନାଥଙ୍କୁ ସେମାନେ ସେମାନଙ୍କର ଲକ୍ଷ୍ୟବୋଲି ଗ୍ରହଣ କରିନେଇଛନ୍ତି । (୭) ନାରୀ ଶକ୍ତିକୁ ସହଜଯାନ ସାହିତ୍ୟରେ ଚଣ୍ଡାଳୀ, ଡୋମ୍ବୀ, ଶବରୀ, ଯୋଗିନୀ, ନୈରାତ୍ମା, ସହଜ-ସୁନ୍ଦରୀ ଆଦି ନାନା ଆଖ୍ୟା ଦିଆଯାଇଛି । (୮) ସହଜଯାନରେ ସହଜସିଦ୍ଧି ଅବସ୍ଥାକୁ ଡୋମ୍ବୀ, ଶବରୀ, ଚଣ୍ଡାଳୀ ପ୍ରଭୃତି ନାମ ଦିଆଯାଇଛି । ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରେ ମଧ୍ୟ ଶବରୀପା, ଡୋମ୍ବିପା, ହାଡ଼ିପା ନାମଧାରୀ ଆଚାର୍ଯ୍ୟ ଆତ୍ମପ୍ରକାଶ କରିଥିବା ଜଣାଯାଏ । ଶବରୀ କାଳକ୍ରମେ ଶବରୁଣୀ, ଶଉରୁଣୀରୂପେ ନିଷ୍ପନ୍ନ ହୋଇଛି । ଓଡ଼ିଆ ଲୋକ

---

(୪) ଓଡ଼ିଆ ସାହିତ୍ୟର ଇତିହାସ : ଡକ୍ଟର ମାୟାଧର ମାନସିଂହ, ପୃ ୯୮

(୫) —ଏଜନ—

(୬) ଉତ୍କଳ ପ୍ରସଙ୍ଗ—ମହାଶୂନ୍ୟର ପରମଜ୍ୟୋତି : ଡ. ବଂଶୀଧର ମହାନ୍ତି, ପୃ ୧୧

(୭) —ଏଜନ—

(୮) ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ : ଅଧ୍ୟାପକ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ ।

ସାହିତ୍ୟରେ ଙ୍କନଦେଇ ମାଲୁଣୀ, ନଡେଇସା ଘୋରୁଣୀ ଓ ନଟେଇଷା, ପଞ୍ଚ ପହରୁଣୀ ଆଦି ନାମ ଦେଖିବାକୁ ମିଳିଥାଏ । (୧)

ମହେନ୍ଦ୍ରାଞ୍ଚଳର ଶବରମାନଙ୍କର ଧର୍ମଧାରାକୁ ଲକ୍ଷ୍ୟକଲେ ସେମାନଙ୍କର ପୂଜାରେ ମନ୍ତ୍ରପାଠ ବଦଳରେ ଅର୍ପଣକୁ ହିଁ ପ୍ରାଧାନ୍ୟ ଦିଆଯାଏ । ଏ ସବୁ ବୌଦ୍ଧ ଭାବନାର ପ୍ରଭାବଜନିତ ମହେନ୍ଦ୍ରଗିରିର ଆଧ୍ୟାତ୍ମିକ ବାତାବରଣ ପରିବର୍ତ୍ତନର ଲକ୍ଷଣୀୟ ସ୍ୱରୂପ ମାତ୍ର ।

## ତନ୍ତ୍ରସାଧନା ପୀଠ :

ତନ୍ତ୍ର ଦେବତା ଭାବରେ ଜଗନ୍ନାଥ ଅନାଦିକାଳରୁ ଭୈରବୀଚକ୍ର ଉପରେ ଉପବେଶନ କରି ନିଜର ମହାମିଳାସ୍ୱମାନ ତେଜକୁ ବିକିରଣ କରି ଆସିଛନ୍ତି । ତନ୍ତ୍ର ଶାସ୍ତ୍ରମାନଙ୍କରେ ତନ୍ତ୍ରପୀଠ ବା ଶାକ୍ତକ୍ଷେତ୍ର ସମ୍ପର୍କରେ ଯେଉଁସବୁ ସୂଚନା ଦିଆଯାଇଛି ତହିଁରୁ ଶ୍ରୀକ୍ଷେତ୍ର ଯେ ପୂର୍ଣ୍ଣତଃ ତନ୍ତ୍ରପୀଠ ସନ୍ଦେହ ଥାଇନପାରେ । ଓଡ଼ିଶାର ଅନେକ ପୀଠ ତନ୍ତ୍ରସାଧନା ସହ ସମ୍ପୃକ୍ତ । ବିଭିନ୍ନ ଗବେଷକଙ୍କର ମତାନୈକ୍ୟ ସତ୍ତ୍ୱେ ଶ୍ରୀକ୍ଷେତ୍ର, ବିରଜା ଓ ଉଡ଼ୀୟାନ ପୀଠ ଇତ୍ୟାଦି ସର୍ବବାଦୀସମ୍ମତ । ମହେନ୍ଦ୍ରରେ ପୂଜା ପାଉଥିବା ଅଷ୍ଟଭୁଜା ଦୁର୍ଗାଙ୍କୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଏକଦା ଲୋକଲୋଚନ ଅଗୋଚରରେ ଏକ ଗୋପନୀୟ ତନ୍ତ୍ର ସ୍ଥଳ ତାନ୍ତ୍ରିକମାନଙ୍କର ଆରାଧନା ପୀଠ ଥିଲା ଏବଂ ଅଦ୍ୟାପି ମଧ୍ୟ ବିଦ୍ୟମାନ । ବିଶିଷ୍ଟ ତିଥିମାନଙ୍କରେ ଗୋକର୍ଣ୍ଣେଶ୍ୱର ମନ୍ଦିରର ଶିବଙ୍କ ନିକଟରେ ବିଭିନ୍ନ ଅଞ୍ଚଳରୁ ତାନ୍ତ୍ରିକମାନେ ଆସି ପୂଜା କରନ୍ତି । ଯେଉଁ ପ୍ରାଚୀନ ତନ୍ତ୍ରପୀଠଗୁଡ଼ିକ ରହିଛି, ସେହି ପୀଠମାନଙ୍କ ମଧ୍ୟରେ ଗଣ୍ଡାହାଟି ନିକଟରେ ସପ୍ତମାତୃକା ଅନ୍ୟତମ । ଏହା ମହେନ୍ଦ୍ରର ପାଦଦେଶରେ ଅବସ୍ଥିତ । ଏହା ବ୍ୟତୀତ, ଯୋଗିଣୀ (ଲୋହରୁଣୀ ଦେବୀ), ଲୋହରୁଣୀ ପର୍ବତ (ଲାବଣ୍ୟଗଡ଼), ରାମଗିରି (କୁରେଇଶୁଣୀ), ସୁରଙ୍ଗି (କୁରେଇଶୁଣୀ), ରୁମ୍ବା (କମ୍ବେଇଶୁଣୀ), ବୁଡ଼ାରସିଙ୍ଗି (ବାଗ୍‌ଦେବୀ), ମଞ୍ଜୁଷାଗଡ଼ର (ଖିଲମଣ୍ଡା) ଓ ପାଟପୁରର (ରାଇଲାମା) ମଧ୍ୟ ପ୍ରସିଦ୍ଧ । ଏସବୁ ଶକ୍ତିପୀଠ ବ୍ୟତୀତ ଆହୁରି ଅସଂଖ୍ୟ ଶକ୍ତିପୀଠ, ତାନ୍ତ୍ରିକ ପୀଠରେ ପରିଣତ ହୋଇ ତାର ପ୍ରଭାବ ବିସ୍ତାର କରିଅଛି । ମର୍ଦ୍ଦିଡ଼ି ଭୈରବୀ, ତାରାତାରିଣୀ, ମହୁରୀକାଳୁଆ, ଚକଟିର ବାଲକୁମାରୀ ଇତ୍ୟାଦି ପ୍ରସିଦ୍ଧ ପୀଠ ଗଢ଼ି ଉଠିଛି ।

ତନ୍ତ୍ର ସାଧନାରେ ବିଭିନ୍ନ ଚକ୍ରର ସମରକ୍ଷିତ ହୋଇଅଛି । ସ୍ୱାଧିଷ୍ଠାନ, ଅନାହତ, ମଣିପୁର, ବିଶୁଦ୍ଧି ପ୍ରଭୃତି ବିଭିନ୍ନ ଚକ୍ର ମଧ୍ୟରେ ତନ୍ତ୍ରଯୋଗୀ ମନୋମଧ୍ୟ-

---

(୧) ଓଡ଼ିଆ ସାହିତ୍ୟର ବିଭିନ୍ନ ଧର୍ମଧାରା : ଶ୍ରୀ ଫକୀରମୋହନ ଦାସ ।

କୋଷର ସ୍ଥିତିକୁ ଅଟଳ ରଖି ସାଧନାମାର୍ଗରେ ପାଦଦେବ । ଜଗନ୍ନାଥ ହିଁ ସକଳ ତନ୍ତ୍ରର ଆଗ୍ରଧ ଏବଂ ସକଳ ତାନ୍ତ୍ରିକ ମତର ସଂଯୋଗ ସେତୁ । ଜଗନ୍ନାଥ ବୃକ୍ଷର ଦେବତା ଅଟନ୍ତି । ଏହି ବୃକ୍ଷ ଉପାସନାର ପରମ୍ପରା ପ୍ରାଚୀନ ତାନ୍ତ୍ରିକ ଗୋଷ୍ଠୀମାନଙ୍କ ମଧ୍ୟରେ ବିଶେଷ ଭାବରେ ପ୍ରଚଳିତ ଥିଲା । ତନ୍ତ୍ର ଯୁଗରେ ବହୁ ପ୍ରାଚୀନ ବୃକ୍ଷ ପୂଜାରେ ଯକ୍ଷିଣୀ ଏବଂ ବୃନ୍ଦାଣୀମାନଙ୍କୁ ପ୍ରତୀକ କରି ଯେଉଁଭଳି ଅର୍ଚ୍ଚନା କରାଯାଉଥିଲା, ତାହା ତନ୍ତ୍ର ଜଗତକୁ ଏକ ମୁକ୍ତ ଆଲୋକ ପ୍ରଦାନ କରିଥିଲା । ଏପର୍ଯ୍ୟନ୍ତ ଗ୍ରାମାଞ୍ଚଳରେ, ମାଳ ଅଞ୍ଚଳରେ ବୃକ୍ଷମାନଙ୍କରେ ଏପରିକି ବର ଓ ଅଶ୍ୱତ୍ଥ ବୃକ୍ଷରେ ସିନ୍ଦୂର ଦେଇ ଦେବୀ ବା ଠାକୁରାଣୀ ଭାବରେ ପୂଜା ପାଆନ୍ତି । (୧) ଏହି ମହେନ୍ଦ୍ରାଞ୍ଚଳରେ ଆଦିବାସୀମାନେ ଯେଉଁଭଳି ମାର୍ଗରେ ତନ୍ତ୍ର ସାଧନା କରନ୍ତି ତାହାର ଏକ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରାଗଲା । ଦିନେ ଜଣେ ଶବର ହଠାତ୍ ଜଣେ ଲୋକକୁ ସାପ କାମୁଡ଼ିବା ଦେଖି ନଦୀ ଉଲଗ୍ନ ହୋଇ ଗୋଟିଏ ବୃକ୍ଷର ଓହଳ ନଦୀ ପାଣିରେ କାମୁଡ଼ି ହସ୍ତ ସ୍ପର୍ଶ କରି ସର୍ପାଘାତ ବ୍ୟକ୍ତିକୁ ଖୁଆଇ ରୋଗମୁକ୍ତ କରିଥିବା ପ୍ରତ୍ୟକ୍ଷ ପ୍ରମାଣ ମିଳୁଛି । ପୁନଶ୍ଚ ହଇଜା ସଂକ୍ରମଣ ସମୟରେ ମହେନ୍ଦ୍ରର ତିରିଶ ମାଇଲ୍ ଦୂରରେ ଜଣେ ତାନ୍ତ୍ରିକ ବୃଦ୍ଧ ଶବର ବୃକ୍ଷମୂଳେ ବସି ସାଧନା କରି ଗ୍ରାମରେ ହଇଜାର ପ୍ରସାରକୁ ସଂପୂର୍ଣ୍ଣ ପ୍ରତିହତ କରିଦେଇଥିଲା । ବୃଦ୍ଧ ଜଣକ କେବଳ ନିଷ୍ଠାର ସହ ଆତୁର କଣ୍ଠରେ ଶବର ଭାଷାରେ ବୋଲୁଥିଲା—"କାହାର ଆଜ୍ଞା ଜାଣୁ, ସେ କୁରେଇଶୁଣୀଙ୍କ ଆଜ୍ଞା । ମହେନ୍ଦ୍ରରୁ ଆସିଛୁ, ନିର୍ମଳରେ ମହେନ୍ଦ୍ର ଗୁଲିଯା" । ଯଥାର୍ଥରେ ଦାରୁ ଦେବତାର ଲେଖକ ଡକ୍ଟର ବେଣୀମାଧବ ପାଢ଼ୀ କହନ୍ତି—ଶବରର ଧାରଣା ଅଦ୍ଭୁତ ରକମର । ବୃକ୍ଷପୂଜା, ଦାରୁପୂଜା, ଶିଳୋପାସନା ପ୍ରଭୃତି ଶବରୀ ପ୍ରଥା ଆର୍ଯ୍ୟ ବା ହିନ୍ଦୁ ସଭ୍ୟତା ଭିତରେ ଏହିପରି ଜଡ଼ିତ ଯାହାଫଳରେ ସମୟର ଗତି ସଙ୍ଗେ ସଙ୍ଗେ କେତେକ ଶାଖାଦଳ ବାହାରି ମୂଳ ସଭ୍ୟତାର ଐତିହ୍ୟ ଉପରେ ଆଲୋଡ଼ନ ସୃଷ୍ଟି କରିଛନ୍ତି । (୨)

ଏହି ପରିପ୍ରେକ୍ଷୀରେ ପାର୍ବତ୍ୟ ଅଞ୍ଚଳରେ ଗିରିଦୁର୍ଗ ହିସାବରେ ମହେନ୍ଦ୍ରଗିରି ଭୌମ, ଶୈଳୋଦ୍ଭବ ଓ ସୋମବଂଶ ରାଜାମାନଙ୍କର ରାଜତ୍ୱକାଳରେ ଖ୍ୟାତି ଅର୍ଜନ କରିଥିବା ଯୋଗୁଁ ଦୁର୍ଗର ଅଧିଷ୍ଠାତ୍ରୀ ଦେବୀ ହିସାବରେ ପ୍ରତିଷ୍ଠିତ ଶକ୍ତିପୀଠ ଯେ ତାନ୍ତ୍ରିକ ପୀଠରେ ପରିଣତ ହୋଇଥିବ ତାହା ସ୍ୱାଭାବିକ । ଜ୍ଞାନାର୍ଣ୍ଣବର ପଞ୍ଚାଶତ ପୀଠ ବର୍ଣ୍ଣନାରେ ଏ ହେଉଛି ଲକ୍ଷ୍ମୀମସ୍ତ ପୀଠ ।

---

(୧) ତନ୍ତ୍ରମତରେ ଶ୍ରୀ ଜଗନ୍ନାଥ : ଶ୍ରୀ ଶୁକଦେବ ମହାନ୍ତି, ପୃ ୭୮

(୨) ଦାରୁଦେବତା : ଡକ୍ଟର ବେଣୀମାଧବ ପାଢ଼ୀ, ପୃ ୭୨

ମହେନ୍ଦ୍ରଂ ବାମନଂ ଚୈବ ହିରଣ୍ୟପୁର ମେବ ଚ
ମହାଲକ୍ଷ୍ମୀମଯଂ ପୀଠ ମୁଡ୍ଡୀୟାନ ମତଃ ପରଃ ।
(ଦେବୀଶକ୍ତି, ପୃ ୫୫)

"ମନ୍ତ୍ର ମହାର୍ଣ୍ଣବ"ରେ ପର୍ଶୁରାମ ତନ୍ତ୍ରୋକ୍ତ ପୂଜାବିଧି ପ୍ରତତ୍ତ୍ୱ—

ମହେନ୍ଦ୍ରାଗ୍ରେ ଚ କାଶ୍ୟାଂ ଚ ଯୋ ଜପେ ନିର୍ଜନ ବନେ,
ବର୍ଷା ଦର୍ବାକ୍ ତସ୍ୟ ରାମଃ ପ୍ରତ୍ୟକ୍ଷୋଜାୟତେ ଧ୍ରୁବମ୍ ।

ଏଥିରୁ ତନ୍ତ୍ରପୀଠ ରୂପେ ମହେନ୍ଦ୍ର ଯେ ଅଗ୍ରଗଣ୍ୟ, ଏହା ପ୍ରମାଣିତ । ମାଠର, ଶୈଳୋଦ୍ଭବ, ଗଙ୍ଗ ପ୍ରଭୃତି ରାଜବଂଶର ଶାସନକାଳରେ ପୂଜାପଦ୍ଧତି ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ତନ୍ତ୍ର ସାଧନାର ସଙ୍କେତମାନଙ୍କୁ ଭିତ୍ତି କରି ମହେନ୍ଦ୍ରାଞ୍ଚଳକୁ ତନ୍ତ୍ରପୀଠ କୁହାଗଲେ ଅତ୍ୟୁକ୍ତି ହେବନାହିଁ । ପ୍ରକୃତ ଜଗନ୍ନାଥଙ୍କୁ ତନ୍ତ୍ର ଦେବତା ରୂପେ ମଧ୍ୟ ତାନ୍ତ୍ରିକମାନେ ଗ୍ରହଣ କରିଛନ୍ତି । ଜଗନ୍ନାଥ ହିଁ ପୁରୁଷୋତ୍ତମ ସେ ଦାରୁଭୂତ, ଦାରୁବ୍ରହ୍ମ । ଅତଏବ ଏହି ଦାରୁବ୍ରହ୍ମ ପୀଠ ଯେ ପୁରୁଷୋତ୍ତମ ଏହାର ଦ୍ୱିରୁକ୍ତି ହେବ ନାହିଁ । ତେଣୁ ପୁରୁଷୋତ୍ତମ ବା ଦାରୁବ୍ରହ୍ମ ପୀଠ ଉପରେ କିଂଚିତ୍ ଆଲୋକପାତ ଦେବା ଆବଶ୍ୟକ ।

## ପୁରୁଷୋତ୍ତମ ବା ଦାରୁବ୍ରହ୍ମ ପୀଠ :

ଶ୍ରୀ ଜଗନ୍ନାଥ ପ୍ରକୃତରେ ପ୍ରାକ୍-ବୈଦିକ ଦେବତା । ପ୍ରାକ୍‌ବୈଦିକ ଆଦିମ ଅଧିବାସୀଙ୍କ ଦ୍ୱାରା ପ୍ରଥମେ ସେ ଆରାଧିତ ହେଉଥିଲେ । ପରେ ତାଙ୍କ ଗୁରୁତ୍ୱ ବା ମହିମା ଉପଲବ୍ଧି କରି ବୈଦିକ ହିନ୍ଦୁମାନେ ତାଙ୍କର ଆରାଧନା କଲେ । ରାମାୟଣରେ ଓଡ଼ିଶାର ମହେନ୍ଦ୍ରଗିରି ଓ ଦଣ୍ଡକାରଣ୍ୟ ବିଷୟ ଉଲ୍ଲେଖ ରହିଛି । ଉତ୍ତରକାଣ୍ଡରେ ପ୍ରଦତ୍ତ ବର୍ଣ୍ଣନାନୁଯାୟୀ ଗବେଷକମାନଙ୍କ ଦ୍ୱାରା ପ୍ରତିପାଦିତ ଯେ ଅଣଆର୍ଯ୍ୟ ଗୋଷ୍ଠୀର ଦେବତା ଶ୍ରୀ ଜଗନ୍ନାଥ ଇକ୍ଷ୍ୱାକୁ କୁଳଦେବତା ରୂପେ ଆରାଧିତ । ଶ୍ରୀ ରାମଚନ୍ଦ୍ର ରାକ୍ଷସରାଜ ବିଭୀଷଣଙ୍କୁ ଉପଦେଶ ଦେଇ କହିଛନ୍ତି, ତୁମେ ଇକ୍ଷ୍ୱାକୁ କୁଳ ଦେବତା ଜଗନ୍ନାଥଙ୍କୁ ଆରାଧନା କର । ସେହିଭଳି ବ୍ୟାସ କୈବର୍ତ୍ତୀ କନ୍ୟାର ଗର୍ଭଜାତ ସନ୍ତାନ ଥିବାରୁ ସେ ଓଡ଼ିଶାର ବୈତରଣୀ କୂଳର ବିରଜାତୀର୍ଥ ଓ ମହେନ୍ଦ୍ରଗିରି କଥା ଉଲ୍ଲେଖ କରିଛନ୍ତି ଏବଂ ମହାଭାରତ ଯୁଦ୍ଧ ଓ କଳିଙ୍ଗ ରାଜାଙ୍କ ଯୁଦ୍ଧରେ ଯୋଗ ଦେଇଥିବା କଥା ଲେଖିଛନ୍ତି । ପାରମାର୍ଥିକ ଅଥବା ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଦାରୁ ଶବ୍ଦକୁ ବେଦଜ୍ଞ ଋଷିମାନେ ପରଂବ୍ରହ୍ମଙ୍କ ଅଧିଷ୍ଠାନ ତତ୍ତ୍ୱଭାବରେ ପ୍ରୟୋଗ କରିଛନ୍ତି । ଯହିଁରେ ପରମେଶ୍ୱର ଆରାଧିତ ବା ଅଧିଷ୍ଠିତ ହୋଇ ଅନନ୍ତ ଜୀବମାନଙ୍କର କଲ୍ୟାଣ ସାଧନ କରନ୍ତି । ତେବେ ମନ୍ତ୍ରରେ କୁହାଯାଇଛି "ଅଦୋଯଦ୍ଦାରୁ

ପ୍ଲବତେ" ଅର୍ଥାତ୍—ହେ ସ୍ତାବକ ! ଦେଖ, ଏହି ଦୂର ଦେଶରେ ଯେଉଁ ଦାରୁ ଭାସମାନ, ତାହା ସଂସାର ସିନ୍ଧୁକୁ ଉତ୍ତୀର୍ଣ୍ଣ ହେବାପାଇଁ ପ୍ରଧାନ ଅବଲମ୍ବନ । ଏହି ଅପୌରୁଷେୟ ବେଦବାଣୀରୁ ସ୍ପଷ୍ଟ ଜଣାଯାଇଛି ଯେ, ତାମ୍ର ଧାତବ ପଦାର୍ଥରେ ବିଦ୍ୟୁତ୍ ଶକ୍ତି ସଂକ୍ରମିତ ହେଲାପରି ସେହି ଦାରୁଗର୍ଭରେ ନିର୍ଗୁଣ ସଚ୍ଚିଦାନନ୍ଦ ଶକ୍ତି ଅଧିଷ୍ଠିତ ହୋଇଛି । ସେ ସାଧାରଣ ଦାରୁ ନ ହୋଇ ଏକ ଅସାଧାରଣ ଆଧ୍ୟାତ୍ମିକ ଅବଲମ୍ବନ ରୂପରେ ଆତ୍ମପ୍ରକାଶ କରିଛନ୍ତି । ପୁରାଣ ଯୁଗରେ ଭଗବାନ ବେଦବ୍ୟାସ କୃଷ୍ଣଦ୍ୱୈପାୟନ ମହର୍ଷି, ନିଜର ରଚିତ ସ୍କନ୍ଦ ପୁରାଣ ଅନ୍ତର୍ଗତ ଉତ୍କଳ ଖଣ୍ଡରେ ଅନୁରୂପ ବର୍ଣ୍ଣନା କରିଛନ୍ତି, ଯଥା—"ଯତ୍ରାସ୍ତେ ଦାରବତନୁଃ ଶ୍ରୀ ଶୋ ମାନୁଷ-ଲୀଳୟା" । ଅର୍ଥାତ୍ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ସାକ୍ଷାତ ଲକ୍ଷ୍ମୀକାନ୍ତ ଭଗବାନ ଦାରୁ ଶରୀର ନେଇ ମନୁଷ୍ୟବତ୍ ଲୀଳା କରୁଛନ୍ତି । (୧) ମହେନ୍ଦ୍ରଗିରିରେ ଯେଉଁ ଦାରୁବ୍ରହ୍ମ (ଚିତ୍ର ନଂ ୩ ଓ ୩(୧) ଦୃଶ୍ୟମାନ ତାହା ତନ୍ତ୍ର ବାଇଶିପାବଚ୍ଛ ଅତିକ୍ରମକରି, ସାକ୍ଷାତରେ ଅନୁଭବ କରିହୁଏ । ବୌଦ୍ଧତନ୍ତ୍ରରେ ଶ୍ରୀ ଜଗନ୍ନାଥଙ୍କୁ "ନମୋ ଜଗନ୍ନାଥ ବୁଦ୍ଧାୟ" ବୋଲି କୁହାଯାଇ ବୁଦ୍ଧ ଅବତାର ରୂପରେ ଗ୍ରହଣ କରାଯାଇଛି । "ବୌଦ୍ଧାଚାର୍ଯ୍ୟ ନାଗାର୍ଜ୍ଜୁନ" ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀରେ ଶୂନ୍ୟବାଦ ତତ୍ତ୍ୱ ପ୍ରଚାର କରିଥିଲେ । ଶୂନ୍ୟ ଉପରେ ଧ୍ୟାନ କରିବାକୁ ଯାଇ ଶିବଲିଙ୍ଗକୁ କେନ୍ଦ୍ରକରି ଏକ ପଥର ଗାତ ମଧ୍ୟରେ ଏକ ମଣ୍ଡଳ ଅଙ୍କନ କରିଥିଲେ ଯାହାକି ଧଳା ମଣ୍ଡଳାକାର ମଧ୍ୟରେ କଳାଅଂଶ ଭଳି ପ୍ରତୀୟମାନ ହୋଇଥିଲା । ଜଗନ୍ନାଥ ଚକ୍ଷୁ ସହିତ ତାର ସମ୍ପର୍କ ଥିବାରୁ ଶ୍ରୀ ଜଗନ୍ନାଥ "ଚକାଡୋଳା" ବୋଲି ନାମିତ ହେଲେ ଏଠାକାର ଗୋକର୍ଣ୍ଣେଶ୍ୱର ଲିଙ୍ଗ ଦର୍ଶନ କରନ୍ତେ ସେହି ଭାବ ଜାଗ୍ରତ ହୁଏ । ଏହାହିଁ ବୌଦ୍ଧମାନଙ୍କର ମତ । ବୌଦ୍ଧ ମତରେ ଜଗନ୍ନାଥ-ବଳଭଦ୍ର-ସୁଭଦ୍ରା ବୁଦ୍ଧ ସଂଘ ଓ ଧର୍ମରୂପେ ପ୍ରକାଶିତ । ଜୈନ ମତରେ ଶ୍ରୀ ଜଗନ୍ନାଥ ହିଁ ବୈଦିକ ଦେବତା ଓ ପୂର୍ଣ୍ଣବ୍ରହ୍ମ । ଶାବର ମତରେ ଶ୍ରୀ ଜଗନ୍ନାଥ ହେଉଛନ୍ତି ଶବର ଦେବତା, ତେଣୁ ଦୁହିତାପତି (ଦଇତାପତି) ମାନେ ଶବର ଜାତିର ବଂଶଧର ହୋଇଥିବାରୁ ସେମାନେ ଜଗନ୍ନାଥଙ୍କର କୁଟୁମ୍ବ ସ୍ୱରୂପ ସେବା ପୂଜାଦି କରିଥାନ୍ତି । ଏହିଭଳି ବିଭିନ୍ନ ଦୃଷ୍ଟିଭଙ୍ଗୀରେ ଶ୍ରୀ ଜଗନ୍ନାଥଙ୍କର ଭିନ୍ନ ଭିନ୍ନ ରୂପ ପରିଦୃଷ୍ଟ ହୁଏ । (୨) ଅଧୁନା ଶବରମାନେ ଦାରୁକାଷ୍ଠରେ ବୁଦ୍ଧଙ୍କ ମସ୍ତକ ଭଳି କର୍ତ୍ତନ କରି ଉପରୋକ୍ତ ତତ୍ତ୍ୱାନୁଯାୟୀ ଏହି ମହେନ୍ଦ୍ରାଞ୍ଚଳରେ ପୂଜା କରନ୍ତି । ମହେନ୍ଦ୍ରଗିରିର ଯୁଧିଷ୍ଠିର ମନ୍ଦିର ପାଦଦେଶରେ ବାସାସାହି ଶବରପଲ୍ଲୀରେ ଜଗନ୍ନାଥଙ୍କୁ ଲିଙ୍ଗାକାରରେ ପୂଜା କରାଯାଏ । (ଚିତ୍ର ନଂ ୧୯ ଦ୍ରଷ୍ଟବ୍ୟ)

---

(୧) ଦାରୁବ୍ରହ୍ମ ଜଗନ୍ନାଥ : ଶ୍ରୀ ଚୈତନ୍ୟଚରଣ ଦାସ, ପୃ ୩୪

(୨) ବିଭିନ୍ନ ଦୃଷ୍ଟିଭଙ୍ଗୀରେ ଶ୍ରୀ ଜଗନ୍ନାଥ : ପଣ୍ଡିତ ଶ୍ରୀ ଉମାକାନ୍ତ କର, ଉତ୍କଳ ପ୍ରସଙ୍ଗ ପୃ ୪୩-୪୭

ମାଠର ବଂଶୀୟ ରାଜାମାନଙ୍କ ରାଜ୍ୟର କେନ୍ଦ୍ରଦେଶରେ ମହେନ୍ଦ୍ରାଞ୍ଚଳ ରହିଥିଲା । ସେଠାରେ "ମହେନ୍ଦ୍ର-ଭୋଗ ବିଷୟ ନାମରେ ଏକ ଜିଲ୍ଲା ପ୍ରତିଷ୍ଠିତ ହୋଇଥିଲା । ସେହି ପର୍ବତର ଶିଖର ଦେଶରେ ପୂର୍ବେ ଯେଉଁ ଶବର ଜାତୀୟ ଆଦିମ ଅଧିବାସୀଙ୍କର ପୂଜିତ ଦାରୁଦେବତା ପ୍ରତିଷ୍ଠା ଲାଭ କରିଥିଲେ, ତାହାହିଁ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ମାଠର ବଂଶୀୟ ରାଜାମାନେ କଳିଙ୍ଗ ଆକ୍ରମଣ କରି ରାଷ୍ଟ୍ର ଦେବତାରୂପେ ଆରାଧନା କରିବାକୁ ଲାଗିଲେ । ସେହି ଆଦିମ ଦେବତାଙ୍କୁ ହିଁ ନାରାୟଣ କିମ୍ବା ପୁରୁଷୋତ୍ତମ ଆଖ୍ୟା ଦିଆଯାଇଥିବା ସମ୍ଭବ । କାରଣ, ସେଠାରେ ପରବର୍ତ୍ତୀ ଗଙ୍ଗ-ବଂଶୀୟ ରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଗୋଟିଏ ଗ୍ରାମର ନାମ "ପୁରୁଷବଦ" । ଏଥିରୁ ପୁରୁଷମ (ପ୍ରାକୃତ) ବା "ପୁରୁଷୋତ୍ତମ" (ସଂସ୍କୃତ) ଶବ୍ଦର ଉତ୍ପତ୍ତି ବୋଲି ଧରି-ଯାଇପାରେ । (୩)

କାଳକ୍ରମେ ଯେଉଁ ଶାବର ପ୍ରତିଷ୍ଠିତ ଦାରୁ ବିଗ୍ରହକୁ ମାଠର ବଂଶୀୟ ରାଜାମାନେ ପୁରୁଷୋତ୍ତମ ନାରାୟଣରୂପେ ପୂଜା କରୁଥିଲେ, ତାହା ପରବର୍ତ୍ତୀ ଗଙ୍ଗ-ବଂଶୀୟ ଶୈବ ରାଜାମାନଙ୍କ ଦ୍ୱାରା ଗୋକର୍ଣ୍ଣେଶ୍ୱର ଶିବ ମୂର୍ତ୍ତିରେ ପରିଣତ ହେଲେ, କାରଣ ପ୍ରାଚୀନ ପ୍ରଥାନୁସାରେ ରାଷ୍ଟ୍ର ଦେବତାଙ୍କର ଅବସ୍ଥିତି ଏବଂ ଆରାଧନା ଅନିବାର୍ଯ୍ୟ ହୋଇଥିବାରୁ ପରମ୍ପରାକ୍ରମେ ସେହି ଗୋଟିଏ ରାଷ୍ଟ୍ର ଦେବତାଙ୍କୁ ହିଁ ବିଭିନ୍ନ ଧର୍ମାବଲମ୍ବୀ ରାଜାମାନେ ଭିନ୍ନ ଭିନ୍ନ ନାମରେ ପୂଜା କଲେ । (୪)

ଶଶାଙ୍କଙ୍କ ସମୟରେ ପ୍ରାଚୀନ କଙ୍ଗୋଦ ମଣ୍ଡଳ ବା ବର୍ତ୍ତମାନର ଗଞ୍ଜାମ ଜିଲ୍ଲାର ଉତ୍ତରାଂଶ ଓ ପୁରୀ ଜିଲ୍ଲାର ଅଧିକାଂଶ ଅଞ୍ଚଳକୁ ନେଇ ଗଠିତ ଭୂଖଣ୍ଡରେ ଶୈଳୋଦ୍ଭବ ବଂଶୀୟ ରାଜା ମାଧବରାଜଙ୍କ ରାଜତ୍ୱ କାଳରେ ଉତ୍ପତ୍ତି ଲାଭ କରିଥିବା ମାଧବ ଉପାସନା ସମୟକ୍ରମେ ପ୍ରାଚୀନ ଉତ୍କଳରେ ଶୈଳୋଦ୍ଭବ ରାଜାମାନଙ୍କ ଅନେକାଂଶରେ ପ୍ରଭାବିତ କରିଥିଲା । ସୋମବଂଶୀୟ ରାଜତ୍ୱକାଳ ତଥା ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀରେ ମାଧବ ଉପାସନା ଅତ୍ୟନ୍ତ ଲୋକପ୍ରିୟ ଥିଲା । ତତ୍କାଳୀନ ଓଡ଼ିଶାରେ ନୀଳମାଧବ ତଥା ମାଧବ ଉପାସନା ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହୋଇଥିଲା ।

ଡ଼କ୍ଟର ବେଣୀମାଧବ ପାଢ଼ୀଙ୍କ ମତାନୁଯାୟୀ—ମହେନ୍ଦ୍ର ପର୍ବତ ଉପରେ ପୁଳିନ୍ଦ ଜାତିର ଶବରମାନେ ଦାରୁପୂଜା କରିବା ଦେଖାଯାଏ । ଏହା ପ୍ରତ୍ୟକ୍ଷାନୁଭୂତିରୁ ପ୍ରମାଣିତ । ଏହି ଶବରମାନେ ମଧ୍ୟ ପୂର୍ବେ ଶୂନ୍ୟ ଦାରୁପୂଜା କରୁଥିଲେ । ହାତଗୋଡ଼

---

(୩) ଓଡ଼ିଶାର ଇତିହାସ : ଡ. ସତ୍ୟନାରାୟଣ ରାଜଗୁରୁ, ପୃ ୨୧୭

(୪) —ଏଜନ—

ନଥାଇ ମୁଣ୍ଡ ଓ ଗଣ୍ଡି, ମୂର୍ତ୍ତି ପୂଜା ମହେନ୍ଦ୍ରାଞ୍ଚଳରେ ଏବେ ମଧ୍ୟ ପ୍ରଚଳିତ ଅଛି । ପାରଳାଖେମୁଣ୍ଡିର ମାଳ ଅଞ୍ଚଳରେ ସୌରା ନାମକ ଶବର ଜାତିରେ ମୁଖ ଚକ୍ଷୁ-ବହିଷ୍ଟ କାଷ୍ଠଖଣ୍ଡର ପୂଜା ପ୍ରଚଳିତ ଅଛି । ଏହି ମୂର୍ତ୍ତିଗଠନ ଅନେକ ଅଂଶରେ ଜଗନ୍ନାଥଙ୍କ ମୂର୍ତ୍ତି ଗଠନ ପ୍ରଣାଳୀ ସହିତ ସମାନହେତୁ ଜଗନ୍ନାଥ କଳ୍ପିତ ଭାବରେ ଶବର ଦେବତା (ମହେନ୍ଦ୍ରଗିରିର ଶ୍ରୀ ଜଗନ୍ନାଥ ଚିତ୍ର ନଂ ୧୪) ଦ୍ରଷ୍ଟବ୍ୟ । ତତ୍ ସଙ୍ଗେ ସଙ୍ଗେ ମହେନ୍ଦ୍ରାଞ୍ଚଳର ଚତୁଃପାର୍ଶ୍ୱରେ ଅସଂଖ୍ୟ ଜଗନ୍ନାଥ ବିଗ୍ରହ ଦୃଷ୍ଟିଗୋଚର ହୁଏ (ପ୍ଳେଟ ୨।୩) । ସେଗୁଡ଼ିକ ମଧ୍ୟରେ ମହେନ୍ଦ୍ରାଞ୍ଚଳର ଅର୍ଥାତ୍ ରାମଗିରି ଗଡ଼, ନାରାୟଣପୁର ଗଡ଼, ଜିରଙ୍ଗ ଗଡ, ରାୟଗଡ, ନାମନ ଗଡ, ସାବା ଗଡ଼, ବୁଡାରସିଂ ଗଡ଼ ଦୁର୍ଗର ଜଗନ୍ନାଥ ବିଗ୍ରହ ସମେତ ସାଗଆପଲ୍ଲୀ ଗ୍ରାମ, କନ୍ଥେଇପଦର ଗ୍ରାମ, ଗଙ୍ଗରାଜପୁର ଗ୍ରାମମାନଙ୍କର ପ୍ରାଚୀନ ବିଗ୍ରହ ହେଉଛନ୍ତି ସେହି ଆଦିମ ଦାରୁ ବିଗ୍ରହର ମାର୍ଜିତରୂପ । (ପ୍ଳେ ନଂ ୨।୩ ଓ ୨।୧୧) ।

ଅଦ୍ୟାପି ଜରା ଶବର ବଂଶର ରାଜାମାନେ ନିଜକୁ ଶବର ରାଜ ବୋଲି ଆପ୍ୟାୟିତ କରନ୍ତି ଓ ସେମାନେ ତାଙ୍କର ଗୃହଦେବତା ରୂପେ ନୀଳମାଧବଙ୍କୁ ଆରାଧନା କରନ୍ତି । ଆନ୍ଧ୍ର ପ୍ରଦେଶ ଓ ମଧ୍ୟପ୍ରଦେଶ ସନ୍ଧିସ୍ଥଳ ଦାରୁକଣ୍ଠାଠାରେ (୫) ନୀଳ-ମାଧବଙ୍କୁ ପ୍ରତିବର୍ଷ ଆରାଧନା କରାଯାଏ । ପୁନଶ୍ଚ ଏହି ନୀଳମାଧବ ବିଷ୍ଣୁରୂପୀ ଚତୁର୍ଭୁଜ ଧାରୀ ଏବଂ ଏହି ରାଜାମାନେ ନୀଳମାଧବଙ୍କ ଆରାଧନା କରିବା ପାଇଁ ଆଗମନ କରିବା କଥା ଡ଼କ୍ଟର କାହ୍ନୁଚରଣ ମିଶ୍ର ଉଲ୍ଲେଖ କରିଛନ୍ତି ।

ପବିତ୍ର ଦାରୁ ଶବ୍ଦକୁ ପଞ୍ଚଦଶ ଶତାବ୍ଦୀର ଶେଷ ପାଦରେ ଶ୍ରୀ ସନାତନ ଗୋସ୍ୱାମୀ ନିଜର ଟୀକା ଶ୍ରୀ ବୃହତ୍ ଚରିତାମୃତ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି ଯେ— ଅଶେଷ "ସଂସାର ଦୁଃଖଂ ଦାରଣାତ୍ ଇତି ଦାରୁଃ" ଅର୍ଥାତ୍ ଯାହାର ଦର୍ଶନ ମାତ୍ରେ ସମସ୍ତ ସାଂସାରିକ ଦୁଃଖ ଶୋକାଦି ନାଶହୁଏ, ସେ ଦାରୁ । ଏଠାରେ ସ୍ମରଣ କରାଯାଇପାରେ ଯେ ଜୀବମାନଙ୍କ ପରି ଭଗବାନଙ୍କର ଦେହଦେହୀ ଭେଦ ନାହିଁ । ଯେ ଦାରୁ ସେ ବ୍ରହ୍ମ, ଯେ ବ୍ରହ୍ମ ସେ ଦାରୁ । ସ୍କନ୍ଦ ପୁରାଣ ମତରେ "ଦାରୁଏବ ଚିଦାତ୍ମକଃ" ଅର୍ଥାତ୍ ଦାରୁ ହିଁ ଚିଦାତ୍ମା (ବ୍ରହ୍ମ) (୭) । ଜାରାଶବରମାନଙ୍କ ଦ୍ୱାରା ପୂଜିତ ନୀଳମାଧବ ହିଁ ଏହିଠାରେ ଅବସ୍ଥାନ କରୁଥିଲେ । ଗୋକର୍ଣ୍ଣେଶ୍ୱରଙ୍କ ପଶ୍ଚିମରେ ଦାରୁବ୍ରହ୍ମ ବିଦ୍ୟମାନ । ଏହି ମହେନ୍ଦ୍ରପର୍ବତର ଉତ୍ତରରେ ଗୁପ୍ତ ମହେନ୍ଦ୍ର ଏକ ଜନଶୂନ୍ୟ ଗୁମ୍ଫା ଅଟେ । କଇଁପୁର, ବୁରୁଗଡ, ଗୁପ୍ତ ମହେନ୍ଦ୍ର ଏବଂ ମାଣିକପାଟଣା

---

(୫) ଦାରୁକଣ୍ଠା : ଏଠାରେ କଣ୍ଠା ଅର୍ଥାତ୍ ପର୍ବତ ଅର୍ଥାତ୍ ଦାରୁସମ୍ବନ୍ଧୀୟ ପର୍ବତ ।

(୭) ଦାରୁବ୍ରହ୍ମ ଜଗନ୍ନାଥ : ଶ୍ରୀ ଚୈତନ୍ୟଚରଣ ଦାସ, ଉତ୍କଳ ପ୍ରସଙ୍ଗ ୮୩/୩୪ ( )

ପାହାଡ଼ମାଳାରେ ରହୁଥିବା ଶବରମାନେ ଏହି ଦାରୁବ୍ରହ୍ମଙ୍କ ବିଷୟରେ ଅଭିଜ୍ଞ । ଦାରୁବ୍ରହ୍ମ ପୀଠକ ମହେନ୍ଦ୍ର ସେମାନଙ୍କ ଆରାଧ୍ୟ ତୀର୍ଥ ସ୍ଥଳ । ବ୍ରହ୍ମପୁର (ଦାରୁବ୍ରହ୍ମ ପାଦଦେଶ) ଗ୍ରାମ ଓ ମଂଜୁଷାର ବ୍ରହ୍ମୋତ୍ସବ ବ୍ରହ୍ମଚନ୍ଦନର ସେମାନଙ୍କର ଶବ ।

ଆଦିବାସୀ ସୌରା ପୂର୍ବପୁରୁଷର ଆତ୍ମାକୁ ପୂଜା କରେ । ସବରର ଧର୍ମ ବିଶ୍ୱାସ ଯାହା, ମାଧବ ପନ୍ଥୀମାନଙ୍କର ଧର୍ମ ବିଶ୍ୱାସ ତାହା । ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରେ ମାଧବାଚାର୍ଯ୍ୟ ଏହି ଧର୍ମକୁ ବହୁଳ ଭାବେ ପ୍ରଚାର କରିଥିଲେ । କାଳକ୍ରମେ ଏହା ବୈଷ୍ଣବ ଧର୍ମର ଏକ ଅଙ୍ଗରୂପେ ପରିଗଣିତ ହେଲା । ମାଧବ ଧର୍ମ ଦ୍ୱୈତବାଦରେ ବିଶ୍ୱାସ କରେ । ମାଧବ ପନ୍ଥୀମାନଙ୍କ ମତରେ ଦାରୁବ୍ରହ୍ମଙ୍କର ପଞ୍ଚଗୁଡ଼ିକ ଅନ୍ୟ ସବୁ ଦେବତା, ଶ୍ରେଷ୍ଠ କରି ବିଷ୍ଣୁଙ୍କ ଚଣ୍ଡି ବା ମାଦଳ କୁହାଯାଏ । ଏଥିହାସରୁ ମଧ୍ୟ ପ୍ରମାଣ ମିଳେ ଯେ ଏହି ମହେନ୍ଦ୍ରାଞ୍ଚଳରୁ ଦାରୁବ୍ରହ୍ମ ଯାଇ ପ୍ରଥମ ପୁରୁଷୋତ୍ତମରେ ପହଞ୍ଚିଲେ । (୧) ମହେନ୍ଦ୍ରାଞ୍ଚଳ (ପାରଳାଖେମୁଣ୍ଡି ମାଳାଞ୍ଚଳ) ଶବରମାନଙ୍କର ପାରମ୍ପରିକ ଦାରୁପୂଜାର୍ଥି ଜ୍ୱଳନ୍ତ ପ୍ରମାଣ (୨) ।

ଏ ଅଞ୍ଚଳରେ ଦାରୁବିଗ୍ରହ ଶବର ନାରାୟଣ ହେଉ କି ନୀଳମାଧବ ହେଉ, ପୂର୍ବରୁ ପୂଜାପାଇ ଆସୁଥିଲେ । ଶବରର ପୂଜିତ କନ୍ଧୁଙ୍କ ଦଶରୋଟି ଭାଗରେ ଦାରୁ କର୍ତ୍ତନ ପୂର୍ବକ ପୂଜା କରନ୍ତି । ଏଠାକାର 'ଜାଗଘର' ଗ୍ରାମରେ କନ୍ଧୁଙ୍କ ସହିତ ଲିଙ୍ଗ ପୂଜା ଏକ ଜ୍ୱଳନ୍ତ ଉଦାହରଣ । ପୁନଶ୍ଚ ତିନୋଟି ଦାରୁରେ ତିନୋଟି ବିଗ୍ରହାକାରରେ ଗ୍ରାମ ଦେବତାଙ୍କ ନିକଟରେ ପୂଜା କରିବା ମଧ୍ୟ ଦାରୁପୂଜାର ଏକ ସ୍ୱତନ୍ତ୍ର ନିଦର୍ଶନ ଯାହାକି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ସର୍ବୋପରି ପୁରୁଷୋତ୍ତମ ତତ୍ତ୍ୱ ଉପରେ ପ୍ରତିଷ୍ଠିତ । ମହେନ୍ଦ୍ରଗିରିରେ ନୀଳମାଧବ ପୂଜା ବୈଷ୍ଣବପୀଠ ହିସାବରେ ବର୍ଣ୍ଣିତ । ବର୍ତ୍ତମାନର ଜଗନ୍ନାଥ ପୁରୁଷୋତ୍ତମ କ୍ଷେତ୍ର ପୁରୀରେ ଅବସ୍ଥାନ କଲେ କିପରି ? ଏ ସଂକ୍ରାନ୍ତରେ ଇନ୍ଦ୍ରଦ୍ୟୁମ୍ନଙ୍କ ବିଷୟ ଓ ଦାରୁ ବିଗ୍ରହ ବୃତ୍ତାନ୍ତ ବର୍ତ୍ତମାନ ତୁଲା ସଠିକ୍ ସିଦ୍ଧାନ୍ତରେ କେହି ଉପନୀତ ହୋଇପାରିନାହାନ୍ତି । ସ୍କନ୍ଦ ପୁରାଣ ଓ ମାଦଳା ପଞ୍ଜୀ ବ୍ୟତୀତ ଅନ୍ୟାନ୍ୟ ଐତିହାସିକ ପୁସ୍ତକରୁ ବିଭିନ୍ନ ମତ ମିଳିଥାଏ । ଯଥାର୍ଥରେ ସେ ହିଁ ଚକାଡ଼ୋଳା ଦାରୁବିଗ୍ରହ ରହସ୍ୟମୟ ! ପୁରୁଷୋତ୍ତମ ତତ୍ତ୍ୱ ଯେ ବୌଦ୍ଧତତ୍ତ୍ୱ, ବ୍ରହ୍ମତତ୍ତ୍ୱ, ଶୈବତତ୍ତ୍ୱ, ସୌରତତ୍ତ୍ୱ ଓ ତାନ୍ତ୍ରିକତତ୍ତ୍ୱ ଉପରେ ଆଧାରିତ, ସେ ହିଁ ବେଦରେ ସ୍ତୁତିକ, ଓଁକାରର ଜ୍ଞାନରୂପ, ସେ ହିଁ ସାକାର ଓ ନିରାକାର ରୂପେ ପ୍ରତିଭାତ, ଏଥିରେ ସନ୍ଦେହର ଅବକାଶ ନାହିଁ । ତାର ଗୂଢ଼ ରହସ୍ୟ ହୃଦୟଙ୍ଗମ କରିବା ଆବଶ୍ୟକ—ଶ୍ରୀମଦ୍ ଭଗବତ୍ ଗୀତାରେ ନିଜେ ଭଗବାନ ପୁରୁଷୋତ୍ତମ ତତ୍ତ୍ୱରେ ପ୍ରାଞ୍ଜଳ ଭାବେ ଅର୍ଜୁନଙ୍କୁ ବୁଝାଇଛନ୍ତି ।

---

(୧) ଦୈନିକ ଆଶା ୧୫-୭-୮୩ ଦାରୁବ୍ରହ୍ମ ଓ ମାଧବ ପୂଜା—କାଶୀନାଥ ମିଶ୍ର ।
(୨) ଦାରୁଦେବତା : ଡ଼ଃ ବେଣୀମାଧବ ପାଢ଼ୀ, ପୃ-୧୪୫ ।

ଯୋ ମାମେବ ମସଂମୂଢ଼ୋ ଜାନାତି ପୁରୁଷୋତ୍ତମମ୍
ସ ସର୍ବ ବିଭଜତି ମାଂ ସର୍ବଭାବେନ ଭାରତ । ୧୫/୧୯

ଅର୍ଥାତ୍—ହେ ଭାରତ ଯେଉଁ ବ୍ୟକ୍ତି ବିଗତ ମୋହ ହୋଇ ମୋତେ ଏହିପରି ଭାବରେ ପୁରୁଷୋତ୍ତମ ବୋଲି ବୁଝିପାରନ୍ତି, ସେ ସର୍ବଜ୍ଞ ହୁଅନ୍ତି ଏବଂ ସର୍ବତୋଭାବରେ ମୋତେ ଭଜନା କରନ୍ତି ।

ପୁନଶ୍ଚ ଭଗବାନ୍ ଉପସଂହାରରେ କହିଛନ୍ତି—

ଇତି ଗୁହ୍ୟତମଂ ଶାସ୍ତ୍ର ମିଦମୁକ୍ତଂ ମୟାଽନଘ
ଏତଦ୍ ବୁଦ୍ଧ୍ୱା ବୁଦ୍ଧିମାନ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତ । ୧୫/୨୦

ଅର୍ଥାତ୍—ହେ ଭାରତ ଏହି ଗୁହ୍ୟତମ ଶାସ୍ତ୍ର ତୁମକୁ ଉପଦେଶ କଲି; ଏହି ତତ୍ତ୍ୱ ଜାଣି ଯୋଗୀ ଏବଂ ବୁଦ୍ଧିମାନ୍ କୃତକୃତ୍ୟ ହୁଅନ୍ତି । ତୁମେ ମଧ୍ୟ ଯେ କୃତାର୍ଥ ହେବ, ସେଥିରେ ସନ୍ଦେହ ନାହିଁ ।

ପୂର୍ବରୁ ସୂଚନା ଦିଆଯାଇଛି—

ଯସ୍ମାତ୍ କ୍ଷରମତୀତୋଽହ ମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମ । ୧୫/୧୮

ଅର୍ଥାତ୍—

ଯେହେତୁ ସେ ଜଡବର୍ଗର ଅତୀତ କାରଣ, ସେ ନିତ୍ୟମୁକ୍ତ ଓ ସ୍ୱତନ୍ତ୍ର ଏବଂ ସେ ସମସ୍ତଙ୍କର ନିୟନ୍ତା ବୋଲି ଚେତନବର୍ଗଠାରୁ ମଧ୍ୟ ଉତ୍ତମ, ସେଥିପାଇଁ ସେହି ଲୋକରେ ଓ ବେଦରେ ପୁରୁଷୋତ୍ତମ ବୋଲି ଖ୍ୟାତ । ଶ୍ରୁତି ମଧ୍ୟ ତାହାଙ୍କୁ ପରବ୍ରହ୍ମ ବା ପୁରୁଷୋତ୍ତମ କହିଛନ୍ତି । (୧) ଏହି ପୁରୁଷୋତ୍ତମଙ୍କୁ ଜାଣିଲେ ଆଉ କିଛି ଜାଣିବା ପାଇଁ ଅବଶିଷ୍ଟ ନଥାଏ । ପୁରୁଷୋତ୍ତମଙ୍କୁ ଜାଣିଲେ ହିଁ ଜୀବ ସର୍ବବିଦ୍ ହୋଇଯାଏ । ସେତେବେଳେ ଜୀବ ବୁଝିପାରେ ସେ ହିଁ ସଗୁଣ, ପୁଣି ସେ ହିଁ ନିର୍ଗୁଣ, ସେ ହିଁ ସାକାର, ସେ ହିଁ ନିରାକାର; ସେ ହିଁ କୃପା ପରବଶ ହୋଇ ଭକ୍ତମାନଙ୍କର ପରିତ୍ରାଣ ନିମିତ୍ତ ଅବତାରରୂପେ ଆବିର୍ଭୂତ ହୁଅନ୍ତି । ଏହି ଗୁହ୍ୟତମତତ୍ତ୍ୱ ସେହି ପରମପୁରୁଷଙ୍କର ବିଶେଷ କୃପାଛଡ଼ା, ବୁଝିପାରେ ନାହିଁ । ଶ୍ରୀ ରାମକୃଷ୍ଣ ଦେବ କହିଛନ୍ତି—"ବ୍ରହ୍ମ ଅବାଙ୍ମାନସ ଗୋଚର ।... ବ୍ରହ୍ମର ସ୍ୱରୂପ ମୁଖରେ କୁହାଯାଏ ନାହିଁ—ଚୁପ୍ ହୋଇଯାଏ । ଅନନ୍ତଙ୍କୁ କିଏ ମୁଖରେ ବୁଝାଇବ ।"...ଆଉ ଅଛି—ଯେ ପୁରୁଷ ସେ ହିଁ ପ୍ରକୃତି, ସେ

---

(୧) ଶ୍ରୀମଦ୍ ଭଗବତ୍ ଗୀତା—ସ୍ୱାମୀ ଅପୂର୍ବାନନ୍ଦ ଅନୂଦିତ ଓ ସଂପାଦିତ, ଶ୍ରୀରାମକୃଷ୍ଣ ମଠ, ଭୁବନେଶ୍ୱର, ପୃ-୪୦୩ ।
(୨) —ଏକନ— ପୃ-୪୦୫ ।

ବ୍ରହ୍ମ ସେ ହିଁ ଶକ୍ତି । ଯେତେବେଳେ ନିଷ୍କ୍ରିୟ—ସୃଷ୍ଟି, ସ୍ଥିତି, ପ୍ରଳୟ କରୁନାହାନ୍ତି, ସେତେବେଳେ ତାଙ୍କୁ ବ୍ରହ୍ମ କହନ୍ତି, ପୁରୁଷ କହନ୍ତି; ଆଉ ଯେତେବେଳେ ଏହିସବୁ କାର୍ଯ୍ୟ କରନ୍ତି; ସେତେବେଳେ ତାହାଙ୍କୁ ଶକ୍ତି କହନ୍ତି, ପ୍ରକୃତି କହନ୍ତି; କିନ୍ତୁ ଯେ ବ୍ରହ୍ମ ସେ ହିଁ ଶକ୍ତି, ଯେ ପୁରୁଷ ସେ ହିଁ ପ୍ରକୃତି ହୋଇ ରହିଛନ୍ତି ।···ଏହି ଆଦ୍ୟାଶକ୍ତି ଆଉ ବ୍ରହ୍ମ ଅଭେଦ । ବ୍ରହ୍ମକୁ ଛାଡ଼ି ଶକ୍ତି ହୁଏ ନାହିଁ ।...ଯେ ପର୍ଯ୍ୟନ୍ତ ସେ ଏହି ଲୀଳା ମଧ୍ୟରେ ରହିଛନ୍ତି, ସେ ପର୍ଯ୍ୟନ୍ତ ଦୁଇଟି ବୋଲି ବୋଧହୁଏ । ଶକ୍ତି କହିଲେ ହିଁ ବ୍ରହ୍ମକୁ ବୁଝାଏ । (୨) ଏହି ପୁରୁଷୋତ୍ତମ ତତ୍ତ୍ୱ ଶ୍ୱେତାଶ୍ୱେତର ଉପନିଷଦ୍, କଠୋପନିଷଦ୍, ବୃହଦାରଣ୍ୟକ ଉପନିଷଦ୍ ଇତ୍ୟାଦିରେ ନିମ୍ନମତେ ବର୍ଣ୍ଣନା ଦିଆଯାଇଛି—

ବ୍ରହ୍ମ ନିର୍ଲିପ୍ତ, ବ୍ରହ୍ମହିଁ ଭଗବାନ, ଗୁଣାତୀତ, ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଭଗବାନ ଋକ୍‌ବେଦ ଏହି ଜୀବଜଗତ ମନବୁଦ୍ଧି, ଭକ୍ତିବୈରାଗ୍ୟଜ୍ଞାନ—ଏସବୁ ତାଙ୍କର ଐଶ୍ୱର୍ଯ୍ୟ— ପୁରୁଷୋତ୍ତମହିଁ ସେହି ପରବ୍ରହ୍ମ । ସେ ନାରୀ, ପୁରୁଷ, ସେ କୁମାର, କୁମାରୀ । ପୃଥିବୀ ବକ୍ଷରେ ନାନା ଦେହରେ ଜରାଜୀର୍ଣ୍ଣ ଗ୍ରହଣ କରେ । ସେ ହିଁ ବିରାଟ ପୁରୁଷ । ତାଙ୍କ ଭୟରେ ହିଁ ଅଗ୍ନି ତାପ ଦିଅନ୍ତି । ତାଙ୍କର ଭୟରେ ହିଁ ସୂର୍ଯ୍ୟ ବିଶ୍ୱବ୍ରହ୍ମାଣ୍ଡରେ ଉତ୍ତାପ ଦିଅନ୍ତି । ତାଙ୍କ ଭୟରେ ହିଁ ଇନ୍ଦ୍ର, ବାୟୁ, ପଞ୍ଚମ ମୃତ୍ୟୁ ମଧ୍ୟ ନିଜ କର୍ତ୍ତବ୍ୟରେ ପ୍ରବୃତ୍ତ ହୁଅନ୍ତି ।

ଏବଂଭୂତ ପୁରୁଷୋତ୍ତମ— ଦାରୁବିଗ୍ରହର ରହସ୍ୟ କିଏ ଉଦ୍‌ଘାଟନ କରିବ ? ଏହି ପରିପ୍ରେକ୍ଷୀରେ ଇନ୍ଦ୍ରଦ୍ୟୁମ୍ନ ସାଗରରେ ଭାସି ଆସୁଥିବା ଦାରୁସନ୍ଧାନ ପାଇବା ସ୍ଥଳେ ପୁରାଣ ସମର୍ଥିତ । (୧) ମହେନ୍ଦ୍ରର ନୀଳ କନ୍ଦରରୁ ଯେ ଦାରୁ ଭାସମାନ ଅବସ୍ଥାରେ ପୁରୁଷୋତ୍ତମ କ୍ଷେତ୍ରରେ ପଦାର୍ପଣ ନ କରିଥିବେ; ଏହା କିଏ କହିବ ? ହୁଏତ ସାଗର ଲହରୀ ପ୍ରବଳ ଘୂର୍ଣ୍ଣାୟମାନ ଅବସ୍ଥାରେ ବାଙ୍କି ମୁହାଣରେ ସ୍ଥାନ ପାଇପାରନ୍ତି ।

ଅତଏବ ଦାରୁବିଗ୍ରହର ରହସ୍ୟ ଉଦ୍‌ଘାଟନ ପାଇଁ ଏହି ମହେନ୍ଦ୍ରଗିରି ହିଁ ଏକମାତ୍ର ସ୍ଥଳ । ଏଠାରେ ଥାଇ ଦୃଷ୍ଟିପାତ କଲେ ମହୋଦଧି ଓ ଶ୍ରୀ କ୍ଷେତ୍ରର ନୀଳଚକ୍ର ଅବଲୋକନ କରିହୁଏ । କି ମଧୁର ସମାବେଶ ! ନୀଳ ସମୁଦ୍ର, ନୀଳକାନ୍ତ, ନୀଳଚକ୍ର ଓ ନୀଳଗିରି ଦିଗନ୍ତ ବିସ୍ତାର କରି ନୀଳ ଆକାଶ ପ୍ରଚ୍ଛଦ ଉପରେ କି ବର୍ଣ୍ଣାଢ଼୍ୟ ! ସହସ୍ର ସହସ୍ର ଭକ୍ତ ମଣ୍ଡଳୀଙ୍କ ପ୍ରେରଣାର ଉତ୍ସ ଏହି ନୀଳଗିରି...ମହେନ୍ଦ୍ରଗିରି ଯାହାକି ଶ୍ରୀ ପର୍ବତର ଅଂଶ ବିଶେଷ ଓ ଶ୍ରୀ କ୍ଷେତ୍ରରେ ଉତ୍ତୁଙ୍ଗ ଶିଖର ତଥା ପବିତ୍ରପୀଠ ହିସାବରେ ପୁରୁଷୋତ୍ତମ ତତ୍ତ୍ୱକୁ ପ୍ରତିପାଦନ କରିବାପାଇଁ ଯୁଗେ ଯୁଗେ ମାନବ ସଂସ୍କୃତିର ଦିଗ୍‌ଦର୍ଶକ ।

●

---

(୧) ଦାରୁଦେବତା : ଡଃ ବେଣୀମାଧବ ପାଢ଼ୀ, ପୃ-୯ ।

## ପଞ୍ଚମ ପରିଚ୍ଛେଦ

# ସାଂସ୍କୃତିକ ଦୃଷ୍ଟିକୋଣରୁ ମହେନ୍ଦ୍ରଗିରି

ପ୍ରାଗ୍ ଐତିହାସିକ କାଳରୁ ଓଡ଼ିଶା ଅଞ୍ଚଳରେ ମାନବର କଳା, କାରିଗରୀ ଓ ସଂସ୍କୃତିର ଉତ୍କର୍ଷ ଦେଖିବାକୁ ମିଳେ । ଓଡ଼ିଶା ଯେ କେବଳ ଜୈନ, ବୌଦ୍ଧ ଓ ହିନ୍ଦୁ ସଭ୍ୟତାର କଳା ସ୍ଥାପତ୍ୟ ଓ ଶିଳ୍ପ ନୈପୁଣ୍ୟ ପାଇଁ ବିଖ୍ୟାତ, ତା ନୁହେଁ; ଏହି ଓଡ଼ିଶାରେ ବୈଚିତ୍ର୍ୟମୟ ଆଦିବାସୀ ସମ୍ପ୍ରଦାୟ ବିଭିନ୍ନ ଅଞ୍ଚଳରେ ନିଜର ବିଶିଷ୍ଟ ସାଂସ୍କୃତିକ ପରମ୍ପରା ବଜାୟ ରଖି ଆସିଛନ୍ତି ଏବଂ ଦୂର ଦୂରାନ୍ତର ଗ୍ରାମ ସ୍ଥଳରେ ଓଡ଼ିଆ ସଂସ୍କୃତିର ଭିନ୍ନ ଭିନ୍ନ ପରିବେଶ ଓ ରୂପ ସମ୍ଭାରକୁ ନେଇ ଗ୍ରାମବାସୀମାନେ ଜୀବନ ରସ ଆସ୍ୱାଦନ କରିଆସନ୍ତି । ଏହିସବୁ ଜୀବନ୍ତ ସଂସ୍କୃତି ଏବଂ ପ୍ରକ୍ଷେତ୍ରୀୟ ବୈଶିଷ୍ଟ୍ୟାବଳି ମଧ୍ୟ ବହୁଗୁଣରେ ଆକର୍ଷଣୀୟ ।

### (୧) ଶାବର ସଂସ୍କୃତି :

ଓଡ଼ିଶାର ଆଦିବାସୀ ସଂସ୍କୃତି ଓ ସାଧାରଣ ଗ୍ରାମ୍ୟ ସଂସ୍କୃତି ମଧ୍ୟରେ ଗୋଟିଏ ବିରାଟ ପ୍ରଭେଦ ଅଛି ବୋଲି ମନେକରିବା ଠିକ୍ ହେବନାହିଁ । ବରଂ ଓଡ଼ିଶାର ଆଦିବାସୀ ସଂସ୍କୃତି ଏବଂ ସାଧାରଣ ଗ୍ରାମ୍ୟ ସଂସ୍କୃତି ମଧ୍ୟରେ ଅବିଚ୍ଛିନ୍ନତା ବିଦ୍ୟମାନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସାଂସ୍କୃତିକ କ୍ରମବିକାଶ ଦୃଷ୍ଟିକୋଣରୁ ବିଚାର କଲେ ସେମାନଙ୍କ ରୀତିନୀତି, ପର୍ବପର୍ବାଣି, ଦେବାଦେବୀ, ଲୋକାଚାର ଓ ନୀତିନିୟମ ଆଦିବାସୀ ଜନଜାତିଙ୍କ ସଂସ୍କୃତି ପରମ୍ପରା ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଭାରତରେ ଯେ କୌଣସି ଅଞ୍ଚଳରେ ଆଦିବାସୀଙ୍କ ଚାଲିଚଳନ ସହିତ ଅନୁଜାତିଙ୍କ ରୀତିନୀତିରେ ବହୁତ ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଏ । ତଥା ବିଧବା ବିବାହ, କନ୍ୟା ମୂଲ୍ୟଦେଇ ବିବାହ, ପୁରୁଷ ସ୍ତ୍ରୀର ଅବାଧ ମିଳାମିଶା, କୃଷି ବା ବାଣିଜ୍ୟରେ ସ୍ତ୍ରୀମାନଙ୍କର ଯୋଗଦାନ ଇତ୍ୟାଦି । ଓଡ଼ିଶାରେ ଆଦିବାସୀମାନଙ୍କ ଭିତରେ ଏବଂ ଅନ୍ୟ ଜାତିମାନଙ୍କ ଭିତରେ

ଲୋକନୃତ୍ୟ ଅନେକାଂଶରେ ବଞ୍ଚି ରହିଛି (୧) ଓଡ଼ିଶାର ଆଦିବାସୀମାନେ ନୃତ୍ୟ ବାଦ୍ୟରେ ନିପୁଣ । ଏମାନଙ୍କର ନୃତ୍ୟ ପ୍ରାୟ ପ୍ରତ୍ୟେକ ବର୍ଷ ବିଭିନ୍ନ ଜାତୀୟ ଉତ୍ସବରେ ଏବଂ ଆଞ୍ଚଳିକ ସାଂସ୍କୃତିକ ମେଳା ମହୋତ୍ସବରେ ପରିବେଷିତ ହୋଇଥାଏ । ମୟୂରଭଞ୍ଜର ସାନ୍ତାଳ, କେନ୍ଦୁଝରର ଜୁଆଙ୍ଗ, ଜୟପୁରର ଗଦବା, ପରଜା ଏବଂ ମାଲକାନଗିରିର କୋୟାମାନଙ୍କ ନୃତ୍ୟ ଓ ସଙ୍ଗୀତ ବିଶେଷ ଉଲ୍ଲେଖଯୋଗ୍ୟ । (୨)

ଏହି ପରିପ୍ରେକ୍ଷୀରେ ମହେନ୍ଦ୍ରାଞ୍ଚଳ ଯେଉଁଠାରେ କି ଗଙ୍ଗମାନଙ୍କ ଉତ୍ପତ୍ତିସ୍ଥଳ ରୂପେ ପରିଚିତ ଥିଲା ତଥା ଭୌମବଂଶର ସୃଷ୍ଟି କେନ୍ଦ୍ର ଥିଲା । ତାହା ଯେ ପୁଲିନ୍ଦ ସମ୍ପ୍ରଦାୟ ଶବରଜାତି ଯେଉଁମାନେ କି ସ୍ୱୟମ୍ଭୂଙ୍କୁ ପୂଜାକରି ମହେନ୍ଦ୍ରରେ ରହିଥିଲେ ତାହା ନିଶ୍ଚିତ ରୂପେ ଏହି ସମସ୍ତ ବଂଶର ଆଦିମପୁରୁଷ ଏଥିରେ ସନ୍ଦେହ ନାହିଁ ।

ଯେଉଁ ଆଦିମ ଅଧିବାସୀଙ୍କୁ ପୁଳିନ୍ଦ କୁହାଯାଉଥିଲା, ସେମାନେ ହିଁ ସମ୍ଭବତଃ ଶବର ଅଟନ୍ତି । ଏସଂପର୍କରେ ମତପୋଷଣ ପୂର୍ବକ ଉତ୍କଳର ସତ୍ୟନାରାୟଣ ରାଜଗୁରୁ ଅନନ୍ତବର୍ମା ଚୋଡ଼୍‌ଗଙ୍ଗ ଦେବଙ୍କ ତାମ୍ରଶାସନକୁ ଭିତ୍ତିକରି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରନ୍ତି କି, ପୂର୍ବେ ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବଙ୍କ ବଂଶରେ କାମାର୍ଣ୍ଣବ, ଦାନାର୍ଣ୍ଣବ, ଗୁଣାର୍ଣ୍ଣବ ମାରସିଂହ ଓ ବଜ୍ରହସ୍ତ ନାମକ ୫ ଜଣ ଭ୍ରାତା ସେମାନଙ୍କ ପୈତୃକ ରାଜ୍ୟ କୋଲାହଳପୁର ତ୍ୟାଗ କରି, ମହେନ୍ଦ୍ରର ଶବରାଦିତ୍ୟ ବୋଲି ଜଣେ ରାଜାଙ୍କୁ ପରାସ୍ତକରି କଳିଙ୍ଗ ରାଜ୍ୟ ଅଧିକାର କଲେ । ବହୁକାଳ ପର୍ଯ୍ୟନ୍ତ ଏହି ରାଜ୍ୟ ତାଙ୍କ ଅଧୀନରେ ରହିଲା । କିନ୍ତୁ ସେଥିର ବହୁ ପୂର୍ବରୁ (ଖ୍ରୀ ୭ମ ଓ ୮ମ ଶତାବ୍ଦୀ) ଶୈଳୋଦ୍ଭବ ରାଜାମାନଙ୍କ ତାମ୍ରଶାସନରେ ବର୍ଣ୍ଣିତ ଅଛି । ପୁଳିନ୍ଦସେନ ବୋଲି ଜଣେ ଆଦିବାସୀ ରାଜା କଳିଙ୍ଗରେ ଶାସକ ଥିବା କିମ୍ବଦନ୍ତୀ ପ୍ରଚଳିତ ଥିଲା । ଏଣୁ ଖ୍ରୀ:ଅ ୭ମ ଶତାବ୍ଦୀରେ ମହେନ୍ଦ୍ରର ଯେଉଁ ଆଦିବାସୀମାନଙ୍କୁ ପୁଳିନ୍ଦ କୁହାଯାଉଥିଲା ସେମାନଙ୍କୁ ସମ୍ଭବତଃ ଖ୍ରୀ ୧୨ଶ ଶତାବ୍ଦୀରେ ଶବର କୁହାଯାଇଛି । ପୁଳିନ୍ଦମାନଙ୍କ ମଧ୍ୟରେ ରହିଥିବା ପ୍ରସଙ୍ଗ ମତ୍ସ୍ୟ (୫୦ ଅଧ୍ୟାୟ ୭୨ ଶ୍ଲୋକ), ବ୍ରହ୍ମାଣ୍ଡ (୨ୟ ଖଣ୍ଡ, ୩ୟ ଖଣ୍ଡ, ୪ର୍ଥ ଖଣ୍ଡ), ଭାଗବତ (୧୨ଶ ସ୍କନ୍ଧ), ବାୟୁ ପୁରାଣ (୪୫-୧୨୭ରେ) ବର୍ଣ୍ଣିତ । ଦକ୍ଷିଣାପଥରେ ବାସ କରୁଥିବା ପୁଳିନ୍ଦ ଜାତୀୟ ଲୋକଙ୍କୁ ପୁରନ୍ତୀୟ ନାମକ ଜଣେ ମହାତ୍ମା ପାପମୁକ୍ତ କରିଥିଲେ ? (୩) ଏବଂ ସେମାନେ ଦେବାଧି ହରି (ବିଷ୍ଣୁ)ଙ୍କର ଆଶ୍ରୟ ନେଲେ ।

---

(୧) ଉତ୍କଳ ପ୍ରସଙ୍ଗ—ଓଡ଼ିଶାର ଆଦିବାସୀ ଓ ପଲ୍ଲୀ ଜୀବନ : Dr L. K. Panda P. 20.

(୨) The Classical Age : F. C. Pargitor, Page 26

(୩) Souvenir. I.T. D. A Palakhemedi : S.N. Rajaguru, Page. 4.

ଶବର ବା ପୁଳିନ୍ଦମାନଙ୍କର ମହେନ୍ଦ୍ରଗିରିର ଦେଶରେ ଧର୍ମନୈତିକ କେନ୍ଦ୍ର ରହିଥିଲା । ଏହି ଶବରମାନେ ଗୋକର୍ଣ୍ଣେଶ୍ୱର ଏବଂ ସ୍ୱୟମ୍ଭୁ (ଶିବ)ଙ୍କୁ ପୂଜା କରୁଥିଲେ । କଳିଙ୍ଗର ରାଜବଂଶୀୟ (ଗଙ୍ଗ ଏବଂ ଶୈଳୋଦ୍ଭବ) ବ୍ରାହ୍ମଣ ପୁରୋହିତମାନେ ସଂସ୍କୃତରେ ମହେନ୍ଦ୍ର ଶିଖରର ଗୋକର୍ଣ୍ଣେଶ୍ୱର ଏବଂ ସ୍ୱୟମ୍ଭୁ (ଶିବ)ଙ୍କ ସଂପର୍କରେ ପ୍ରଶସ୍ତି ରଚନା କରିଥିଲେ । ଏହି ପ୍ରଶସ୍ତିକୁ ସମର୍ଥନ କରି ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ଶାବର ସଂସ୍କୃତ ସମ୍ବନ୍ଧରେ କହନ୍ତି । କଳିଙ୍ଗରେ ବ୍ରାହ୍ମଣ୍ୟ ଧର୍ମପ୍ରଚାର ହେବା ସମୟରେ ଶବରସ୍ୱାମୀ ନାମକ ବ୍ୟକ୍ତି "ଜୈମିନୀ ସୂତ୍ର" ର ଭାଷ୍ୟ କରିଥିଲେ । (୪) ଏହାକୁ ଡଃ ଶରତଚନ୍ଦ୍ର ବେହେରା ସମର୍ଥନ କରନ୍ତି । ଏହି ଶବର ସ୍ୱାମୀ ମହେନ୍ଦ୍ର ପର୍ବତ ନିକଟବର୍ତ୍ତୀ କୌଣସି ଅଞ୍ଚଳର ଅଧିବାସୀ ବୋଲି ଗ୍ରହଣ କରାଯାଇପାରେ । କାରଣ ମାଠର ବଂଶର ପ୍ରଥମ ରାଜା ଶକ୍ତିବର୍ମାଙ୍କ ରଗମଣ୍ଡା ତାମ୍ରଶାସନରେ ଆତ୍ରେୟ ଗୋତ୍ରୀୟ ବ୍ରାହ୍ମଣ ଶବର ଭେଣ୍ଡିକ ସଂଜ୍ଞା ବହନ କରି କ୍ଷେତ୍ରଶର୍ମା, ରେଭିଶର୍ମା, ଅଗ୍ନିଶର୍ମା, ନାଗଶର୍ମା ଓ ଶିବଶର୍ମା ପ୍ରତି ଗ୍ରହଣ ରୂପେ ପରିଚିତ ହୋଇ ଅଛନ୍ତି । ଶବର ଭେଣ୍ଡିକ ସଂଜ୍ଞା ମଧ୍ୟ ଏହି ଅଞ୍ଚଳର ଶବର ସ୍ୱାମୀ ବ୍ରାହ୍ମଣ ପରିବାରର ଏକ ସଂଜ୍ଞା ହୋଇଥିବା ଅନୁମେୟ । (୫)

ତେଣୁ ସହଜରେ ଅନୁମେୟ ଯେ ଶୈଳୋଦ୍ଭବକାଳୀନ (ଖ୍ରୀ ୭ମ ଓ ୮ମ ଶତାବ୍ଦୀ) ମହେନ୍ଦ୍ରମାଳର ଅଧିବାସୀ ପୁଳିନ୍ଦ ବା ଶବର ପୂଜିତ 'କଉଙ୍ଗ' ବା ଦେବଗଣଙ୍କ 'ସ୍ୱୟମ୍ଭୁ' ଆର୍ଯ୍ୟବ୍ରାହ୍ମଣମାନଙ୍କର 'ସ୍ୱୟମ୍ଭୁ' ହୋଇ ସାରିଲେଣି । (୬) ଡକ୍ଟର ନବୀନ କୁମାର ସାହୁଙ୍କର ମତକୁ ସମର୍ଥନ କରି ବିନାୟକ ମିଶ୍ର କହନ୍ତି କି ଏହି ମହେନ୍ଦ୍ରାଞ୍ଚଳର ଭୌମବଂଶୀମାନେ ହିଁ ଉତ୍ତର ଓଡ଼ିଶାରେ ଭୂୟାଁ ନାମଧାରୀ ସମ୍ଭ୍ରାନ୍ତ-ମାନଙ୍କର ପୂର୍ବଜ । ପୁନଶ୍ଚ ସମସ୍ତ ଗବେଷକ ଏହିମତ ଦିଅନ୍ତି କି କଳିଙ୍ଗର ସାଂସ୍କୃତିକ ଇତିହାସରେ ମହେନ୍ଦ୍ରଗିରିର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଯାହାକୁ ବାଦଦେଇ କଳିଙ୍ଗର ସାଂସ୍କୃତିକ ଇତିହାସ କଳ୍ପନା କରିହେବ ନାହିଁ । (୭)

ଯେଉଁ ଆଦିବାସୀ ସମ୍ପ୍ରଦାୟ ଭାରତରେ ନିବାସ କରନ୍ତି ସେ ସମସ୍ତେ କୌଣସି ଏକ ମୌଳିକ ସମ୍ଭୂତିସମ୍ପନ୍ନ ଜାତିର ଶାଖା କିମ୍ବା ପ୍ରତ୍ୟେକ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଶ୍ରେଣୀରେ ବିଭକ୍ତ, ତାହା ଅଦ୍ୟାପି ସ୍ପଷ୍ଟ ରୂପେ ଜଣାଯାଇ ନାହିଁ । କିନ୍ତୁ

(୪) ଓଡ଼ିଶା ଇତିହାସ : Dr. S. N. Rajaguru, P. 217.
(୫) —ଏକନ—
(୬) ଓଡ଼ିଶାରେ ଭୌମକରବଂଶ : ଡକ୍ଟର ବିଶ୍ୱରୂପ ଦାସ, ପୃ-୨୮
(୭) —ଏକନ—

ଅଧିକାଂଶ ପଣ୍ଡିତଙ୍କ ମତରେ ବର୍ତ୍ତମାନ ଯେଉଁ ଆଦିବାସୀମାନେ ବିଭିନ୍ନ ଅଞ୍ଚଳରେ ବାସ କରନ୍ତି, ସେମାନେ ଅତି ଆଦିମ ଯୁଗରୁ ଏକ ବିଶେଷ ସମ୍ପ୍ରଦାୟର ବଂଶଧର । ତେବେ ପୌରାଣିକ 'ଜାରା' ଶବର ଏବଂ କଳିଙ୍ଗର 'ଦାରୁ ଦେବତା' ଉପାସକ ବିଶ୍ୱାବସୁ ଉଭୟେ ଏ ଜାତିର ଚିର ସ୍ମରଣୀୟ । ଏହାଙ୍କ ମଧ୍ୟରୁ 'ଶବରାଦିତ୍ୟ' ନାମକ ଜଣେ ରାଜା କଳିଙ୍ଗ ବଂଶୀ କାମାର୍ଣ୍ଣବଙ୍କ ଦ୍ୱାରା ପରାଜିତ ଓ ନିହତ ହୋଇଥିଲେ । କାମାର୍ଣ୍ଣବ ଥିଲେ 'କଳିଙ୍ଗ ରାଜବଂଶର ପ୍ରତିଷ୍ଠାତା' । ତାଙ୍କର ଅମଳରେ ଶବରମାନେ ସମତଳ ସ୍ଥାନରୁ ବହିଷ୍କୃତ ହୋଇ ପାର୍ବତ୍ୟାଞ୍ଚଳକୁ ପଳାୟନ କରିଥିଲେ ବୋଲି କୁହାଯାଏ । କଥାର ସତ୍ୟତା ଯାହାଥାଉ ପଛେ, ଏହା କିନ୍ତୁ ନିଶ୍ଚିତ ଯେ ଶବର ଗୋଷ୍ଠୀ ପ୍ରଥମେ ସମତଳ ଅଞ୍ଚଳରେ ରହିଥିଲେ ଏବଂ ପରେ କୌଣସି ଆଭ୍ୟନ୍ତରୀଣ କାରଣ ଯୋଗୁଁ ଅନ୍ୟ ଶାଖା ଗୋଷ୍ଠୀଦ୍ୱାରା ବହିଷ୍କୃତ ହୋଇ ପାହାଡ ପର୍ବତରେ ଆଶ୍ରୟ ନେଲେ । ବର୍ତ୍ତମାନ ସେମାନଙ୍କ ଆବାହକ ପରିବେଶ ଓ ସାମାଜିକ ସଂସ୍କୃତି ସେହିଆ ମନେହୁଏ । ବିକ୍ଷିପ୍ତ ଭାବେ ଏ ଜାତି ବିଭିନ୍ନ ନାମରେ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ବାସ କରି ଆସୁଥିଲେ ମଧ୍ୟ କଳିଙ୍ଗରେ ଯେପରି ବହୁସଂଖ୍ୟାରେ ଦୃଷ୍ଟିଗୋଚର ହୁଅନ୍ତି । କ୍ୱଚିତ୍ ଅନ୍ୟତ୍ର ଦେଖାଯାଏ । (୮)

ଦକ୍ଷିଣ ଓଡ଼ିଶାରେ ଯେଉଁ ଶବରମାନେ ବାସ କରନ୍ତି, ସେମାନଙ୍କ ସାମାଜିକ ବ୍ୟବସ୍ଥା ଗମାଙ୍ଗ ଓ ବୋୟା ଉପାଧିଧାରୀ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ ହୋଇଥାଏ । ପୁଣି ସେମାନଙ୍କ ପୂଜା ଓ ପର୍ବପର୍ବାଣି ପାଇଁ ଜାନ୍ନି ନାମକ ଏକ ପୁରୋହିତ ଶ୍ରେଣୀର ବ୍ୟକ୍ତି ରହିଥାଆନ୍ତି । ଏମାନେ ବଂଶ ପରମ୍ପରାକ୍ରମେ ସେହି କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି । ପ୍ରତି ଗ୍ରାମରେ ଏମାନେ ସ୍ୱଳ୍ପସଂଖ୍ୟାରେ ଥିଲେ ମଧ୍ୟ ଏମାନଙ୍କ ସ୍ୱାତନ୍ତ୍ର୍ୟ ସ୍ୱୀକୃତ । ଓଡ଼ିଶାର ଶବରମାନେ ୮୦ଟି ବର୍ଗରେ ବିଭକ୍ତ ଏବଂ ଏମାନଙ୍କର ବାଘ, ବଛା, ବାରହା, କୁକୁଡ଼ା, ହାତୀ ପ୍ରଭୃତି ୮୦ଟି ଗୋତ୍ରଥିବା ଦେଖାଯାଏ । (୯)

ଶବରମାନେ ଭୂତପ୍ରେତଙ୍କୁ କୁକୁଡ଼ା, ଛେଳି ଓ ଘୁଷୁରି ବଳି ଦିଅନ୍ତି । ପ୍ରତିବର୍ଷର ଶେଷରେ ପଥରର ଗ୍ରାମଦେବତାଙ୍କୁ ପୂଜା କରନ୍ତି ପୁଣି ଜୀବିତ ଲୋକଙ୍କ ମୁଖରେ ଅସ୍ୱାଭାବିକ ଅବସ୍ଥା କୁହାଇ ଥାଆନ୍ତି । ଏମାନେ ଶିକାର ପ୍ରିୟ । ସମୂହ ଶିକାରକୁ ଭଲ ପାଆନ୍ତି । ନାଚ ଗୀତ ସମୟରେ ସେମାନଙ୍କ ବେଶ ଭୂଷା ଦେଖିଲେ ଦ୍ରାବିଡ଼ମାନଙ୍କ ଭଳି ମନେହୁଏ । ସ୍ତ୍ରୀମାନେ ପୁଷ୍ପଗୁଚ୍ଛ ବାନ୍ଧିବାକୁ ଭଲ ପାଇଥାଆନ୍ତି । ଧନୁ ଓ କୁଠାର ବ୍ୟବହାର କରନ୍ତି । ନୂଆଖିଆ ପର୍ବ ସେମାନଙ୍କ ପ୍ରଧାନ ପର୍ବ ।

---

(୮) ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତ : ଡକ୍ଟର ବେଣୀମାଧବ ପାଢ଼ୀ, ପୃ ୭୯

(୯) ଓଡ଼ିଶାର ଇତିହାସ : ଡ. ସତ୍ୟନାରାୟଣ ରାଜଗୁରୁ, ପୃ ୧୧

ମହେନ୍ଦ୍ରାଞ୍ଚଳରେ ବାରଘର ଗ୍ରାମର ଅଧିବାସୀ ଶବରମାନେ ଏଠାକାର ମନ୍ଦିରମାନଙ୍କର ପୂଜା କରିଥାଆନ୍ତି । ପର୍ବତ ଶିବରାତ୍ରିରେ ଏମାନେ ପୂଜାରୀର ଠିକ୍ ମଝିରାତିରେ ଶବର ପୂଜକ 'ଜାନି' ହାତରେ ଅଖଣ୍ଡ ଦୀପ ଅର୍ପଣ କରାଯାଏ । ତାହା ମନ୍ଦିର ଚୂଡ଼ାରେ ସ୍ଥାପନ କରାଯାଏ । ତତ୍ପରେ ବ୍ରାହ୍ମଣ ପୂଜକ ଦ୍ୱାରା ସେହି ଲିଙ୍ଗକୁ ସେହି ସ୍ଥାନରେ ପୂଜା କରାଯାଇ ଥାଏ । ପ୍ରକାଶଥାଉକି 'କୁନ୍ତୀ ଦେଉଳ' ଗୋକର୍ଣ୍ଣେଶ୍ୱର ମନ୍ଦିରରେ ଶିବ ଓ ଶକ୍ତି ଉଭୟଙ୍କୁ ପୂଜା କରାଯାଏ । ଏ ସମସ୍ତ କାର୍ଯ୍ୟକ୍ରମରେ ଗ୍ରାମର ମୁଖିଆ ଉପସ୍ଥିତ ରହିଥାଆନ୍ତି । ନିଜର 'କିଉଁଙ୍କୁ' ପୂଜା କରିବା ଓ ମନ୍ଦିରରେ ଅଭିଷେକ ଏବଂ ଅର୍ଚ୍ଚନା କରିବା ପଦ୍ଧତି ଏହି ଶବରମାନଙ୍କ ସଂସ୍କୃତିରେ କେବେ ପ୍ରବେଶକଲା କମ୍ବା ଅନ୍ୟମାନଙ୍କ ଉପରେ ଏହି ପ୍ରଭାବ ପଡ଼ିଲା ତାହା ଗବେଷଣାର ବିଷୟ ।

ବିବାହ ଉତ୍ସବରେ ଏମାନେ ମଦ୍ୟପାନ କରି ଯୁବକଯୁବତୀ ନୃତ୍ୟ କରନ୍ତି । ନୃତ୍ୟ ମଝିରେ ଯଦି କୌଣସି ଧାଙ୍ଗଡ଼ା କୌଣସି ଧାଙ୍ଗିଡ଼ୀକୁ ଭଲପାଏ ତେବେ ତା ଖୋସାରେ ଫୁଲ ଖୋସିଦିଏ । ଯଦି ଧାଙ୍ଗିଡ଼ୀ ଧାଙ୍ଗଡ଼ାକୁ ଭଲନପାଏ ତେବେ ସେ ଫୁଲକୁ ବାହାର କରି ଫୋପାଡ଼ି ଦିଏ । ଭଲ ପାଉଥିଲେ ସେହିପରି ରହିଥାଏ । ଫୁଲ ବାହାର ନକଲେ ଧାଙ୍ଗଡ଼ା ଧାଙ୍ଗିଡ଼ୀକୁ ଧରି ଅନ୍ୟତ୍ର ଚାଲିଯାଏ । ଏ ପ୍ରକାର ବିବାହ ପ୍ରଥା ମହେନ୍ଦ୍ରାଞ୍ଚଳରେ ସାଧାରଣ । କିନ୍ତୁ ନୂତନ ସଭ୍ୟତାର ଆଲୋକ ନେଇ କେତେକାଂଶରେ ଉନ୍ନତ ଧରଣର ପ୍ରଥା ବା ବୈଦିକରୀତି ଦେଖା ଦେଲେ ମଧ୍ୟ ଏହି ଆଦିବାସୀମାନଙ୍କର ସଂସ୍କୃତି ଓଡ଼ିଶାରେ ଓ ଓଡ଼ିଶା ବାହାରେ ମଧ୍ୟ ପ୍ରଭାବ ପକାଇଛି । (୧୦)

ଓଡ଼ିଶାର ଦକ୍ଷିଣାଞ୍ଚଳ ବହୁଦିନଧରି ତେଲୁଗୁ ଭାଷାଭାଷୀଙ୍କ ଦ୍ୱାରା ପ୍ରଭାବିତ ହୋଇଛି । ତା'ଛଡ଼ା ମଧ୍ୟଯୁଗରେ ଦକ୍ଷିଣ ଭାରତରୁ ଆସିଥିବା ଦ୍ରାବିଡ଼ ଗୋଷ୍ଠୀ ପ୍ରଭାବିତ ଗଙ୍ଗବଂଶୀ ରାଜାମାନଙ୍କ ଦ୍ୱାରା ପାଞ୍ଚଶହ ବର୍ଷରୁ ଅଧିକ କାଳ ଓଡ଼ିଶା ବା କଳିଙ୍ଗ ଶାସିତ ହୋଇ ଆସିଥିଲା । ଫଳରେ ଶାସିତ ଅଞ୍ଚଳରେ ଶାସକଙ୍କ ଭାଷା ଓ ସାଂସ୍କୃତିକ ଚେତନାର ପ୍ରଭାବ ପଡ଼ିବା ସ୍ୱାଭାବିକ (୧୧)

ଏହି ପରିପ୍ରେକ୍ଷୀରେ ଏହି ଅଞ୍ଚଳ ଆନ୍ଧ୍ର ସଂସ୍କୃତି ଉପରେ ପ୍ରଭୂତ ପ୍ରଭାବ ବିସ୍ତାର କରିଛି । ଏ ବିଷୟ ବିଚାର କରିବା ପୂର୍ବରୁ ଓଡ଼ିଆ ସଂସ୍କୃତି ଶାବର ସଂସ୍କୃତି ଦ୍ୱାରା କପରି ପ୍ରଭାବାନ୍ୱିତ ତାହି ବିଚାର୍ଯ୍ୟ ।

(୧୦) ଓଡ଼ିଶା ସାହିତ୍ୟରେ ବିଭିନ୍ନ ଧର୍ମଧାରା : ଶ୍ରୀ ଫକୀରମୋହନ ଦାସ, ପୃ ୧୪
(୧୧) ଓଡ଼ିଆ ଭାଷାର ରୂପତତ୍ତ୍ୱ : ଡକ୍ଟର ବେଣୀମାଧବ ପାଢ଼ୀ, ପୃ ୨୯

**ଓଡ଼ିଆ ସଂସ୍କୃତି :**

ପ୍ରାଚୀନ କାଳରେ 'ଓଡ଼ିଶା' ନାମ ନଥିଲା । କଳିଙ୍ଗରୁ ଉତ୍କଳ ଏବଂ ଉତ୍କଳରୁ ଓଡ଼ିଆ ହେବାକଥା ଇତିହାସରୁ ଅବଧାରିତ ହୁଏ । ପ୍ରାଚୀନ ଓଡ଼ିଶା ଓ ବର୍ତ୍ତମାନର ଓଡ଼ିଶା ମଧ୍ୟରେ ଆକାଶ ପାତାଳ ତଫାତ୍ । କିମ୍ବଦନ୍ତୀ, ଇତିହାସ ଓ ଭୂଗୋଳକୁ ଲକ୍ଷ୍ୟରଖି ଓଡ଼ିଶାର ପୂର୍ବସୀମା ନିର୍ଦ୍ଧାରଣ କରାଯାଇଛି । ଓଡ଼ିଶା ପୁରାଣମାନଙ୍କରେ ଜମ୍ବୁଦ୍ୱୀପ ଅନ୍ତର୍ଗତ ଭାରତ ବର୍ଷର ବର୍ଣ୍ଣନାରେ କଳିଙ୍ଗ ପ୍ରସଙ୍ଗରେ ଥିବା ଓଡ୍ର ବିଷୟ ଦେଖିବାକୁ ମିଳେ । ଐତିହାସିକଙ୍କ ମତରେ ୬ଷ୍ଠ ଶତାବ୍ଦୀର ବହୁବର୍ଷ ପୂର୍ବେ ଉତ୍କଳ ଓ ଓଡ୍ରଦେଶ ଥିବା ଜଣାଯାଏ । ମନୁସହିତାରେ ନିମ୍ନଲିଖିତ ପଂକ୍ତି ଦେଖିବାକୁ ମିଳେ —

ପୌଣ୍ଡ୍ରକା ଶ୍ଚୌଡ୍ର ଦ୍ରାବଡ଼ଃ କାମ୍ବୋଜା ଯବାନା ଶକାଃ ।
ପରଦା ପହ୍ଲବା ଶ୍ଚୀନାଃ କିରାତା ଦରଦା ଖଶାଃ ।
ଝଲ୍ଲୋ ମଲ୍ଲାଶ୍ଚ ରାଜନ୍ୟାତ୍ ବ୍ରାତ୍ୟା ନିର୍ଚ୍ଛିବରେ ବଚ
ନଟଶ୍ଚ କରଣ ଶ୍ଚୈବ ଖସୋ ଦ୍ରାବଡ଼ ଏବ ଚ ।

( ମନୁ— ୧୦-୪୪ ଓ ୨୨ )

ରଘୁବଂଶରେ ଉଲ୍ଲେଖ ଅଛି—

ଅବନମ୍ୟ କରେ ଦଣ୍ଡେ କଳିଙ୍ଗୈ ରୁଗ୍ରଗେ ସ୍ତ୍ରତଃ ।
ଅଦୁର୍ବେହ ମହେନ୍ଦ୍ରାଦ ଂ ଯଶସ୍ତସ୍ୟ ଯଶସ୍ୱିନଃ । (୧୨)

ଉପରୋକ୍ତ ବର୍ଣ୍ଣନାରୁ ଓଡ଼ିଆର ସଂସ୍କୃତି ତାହାର ପ୍ରଧାନ ଗିରି ମହେନ୍ଦ୍ରଗିରି ଠାରୁ ଆରମ୍ଭ ହୋଇଥିଲା ଏଥିରେ ସନ୍ଦେହ ନାହିଁ । ନରସିଂହ ତାମ୍ରଶାସନରେ ଅଛି—

"ଧନ କନକ ସମୃଦ୍ଧୋ ଗଙ୍ଗବାଡ଼ି ପ୍ରସିଦ୍ଧଃ ।
ସକଳ ବିଷୟଭୂତଃ ସ୍ୱର୍ଗବର୍ଗୋପ ଭୋଗ୍ୟଃ"

ଉପରୋକ୍ତ ବର୍ଣ୍ଣନାରୁ ଜଣାଯାଏ କଳିଙ୍ଗ ମଧ୍ୟରେ ଗଙ୍ଗବାଡ଼ି (୧୩) ଗୋଟିଏ ପ୍ରଧାନ ନଗର ଥିଲା । (୧୪) ମନ୍ତ୍ରୁଷାଠାରୁ ଅନତିଦୂରରେ ମହେନ୍ଦ୍ରଗିରିରେ ଗଙ୍ଗାବାଡ଼ି ଗଙ୍ଗବଂଶୀୟ ରାଜାମାନଙ୍କର ଆଦ୍ୟ ବାସସ୍ଥାନ ଥିଲା । ଏହି ଗଙ୍ଗବାଡ଼ି ହେଉଛି ବର୍ତ୍ତମାନ ମହେନ୍ଦ୍ରଗିରି ପଞ୍ଚାୟତ ସମିତି (ରାୟଗଡ) ଅଧୀନସ୍ଥ ଗଙ୍ଗାବାଡ଼ି ପଞ୍ଚାୟତର

(୧୨) ରଘୁବଂଶ ୧୧/୧୨
(୧୩) ଯୁଗେ ଯୁଗେ ମହେନ୍ଦ୍ରଗିରି : ୮ମ ପରିଚ୍ଛେଦ
(୧୪) ପ୍ରାଚୀନ ଉତ୍କଳ : ଜଗବନ୍ଧୁ ସିଂ, ପ୍ରଥମ ଭାଗ ୧.୨୩

ସଦର ମହକୁମା । ଓଡ଼ିଆ ଲୋକେ ଗଞ୍ଜାବାଡ଼ ଓ ତେଲୁଗୁ ଲୋକେ ଗଞ୍ଜାବାଡ଼ କହନ୍ତି । ଉତ୍କଳର ଧାର୍ମିକ ଚିନ୍ତାଧାରା ଏହି ସ୍ଥାନରୁ ହିଁ ବ୍ୟାପିଛି । ଏହି ଗଞ୍ଜାବାଡ ଲୋକଙ୍କେତନ ଅଶେ ତରରେ ରହିବା ଦ୍ୱାରା ଓଡ଼ିଆ ସଂସ୍କୃତିର ଜାଗରଣରେ ସଠିକ୍ ବିବରଣୀ ପ୍ରଦାନ କରାଯାଇପାରି ନାହିଁ । ଯେହେତୁ କଳିଙ୍ଗ ନିଜନାମ ତ୍ୟାଗକରି ଉତ୍କଳର ଗର୍ଭ ମଧ୍ୟରେ ଲୀନ ହୋଇଛି । ତଥାପି ସେ ତା ଦେହରେ ଆର୍ଯ୍ୟ ସଂସ୍କୃତି, ଆନ୍ଧ୍ର ସଂସ୍କୃତି ଓ ଶାବର ସଂସ୍କୃତି ବହନ କରି ତାହାର କଳା, ସାହିତ୍ୟ, ଐତିହ୍ୟ ଇତ୍ୟାଦିର ଉତ୍କର୍ଷ ପ୍ରତିପାଦନ କରିବା ଯୋଗୁଁ, ଉତ୍କଳୀୟ ସଂସ୍କୃତିକୁ ହିଁ ଓଡ଼ିଆ ସଂସ୍କୃତି କୁହାଯିବ । ଯଥାର୍ଥରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାରେ "ଉତ୍କୃଷ୍ଟ କଳା ଯସ୍ୟ, ସଃ ଉତ୍କଳଃ" ଅଟେ । ଏହି ମହେନ୍ଦ୍ରାଞ୍ଚଳରେ କଳାତ୍ମକ ଉତ୍କର୍ଷ ଯୁଗେ ଯୁଗେ ସମଗ୍ର ଉତ୍କଳରେ ସମସ୍ତଙ୍କ ପ୍ରଭାବିତ କରିଥିବା ସ୍ୱାଭାବିକ । କାରଣ ଗଙ୍ଗବଂଶ ରାଜତ୍ୱ କାଳରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏହି ସଂସ୍କୃତିର ପ୍ରବାହ ନିରବଚ୍ଛିନ୍ନ ଥିଲା ।

ନୌବାଣିଜ୍ୟ କ୍ଷେତ୍ରରେ ମଧ୍ୟ ଏହି ମହେନ୍ଦ୍ରାଞ୍ଚଳ ତାମ୍ରଲିପିଠାରୁ ବରୁଣ ଓ କଳିଙ୍ଗପାଟଣା ବନ୍ଦର ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳର ପାଣ୍ଠାଘାଟ ଭୂମିଥିଲା । ବର୍ତ୍ତମାନ ସୁଦ୍ଧା ମହେନ୍ଦ୍ରତନୟା ନଦୀ ମୁହାଣରେ ସମୁଦ୍ର ଓ ନଦୀ ନିକଟସ୍ଥ ଅଗଭୀର ଜଳରାଶିର ଚିହ୍ନ (Lagoon) ଅଙ୍କବାଲିଚର ହିସାବରେ ଦୃଷ୍ଟିକୁ ଆସେ । ପୁନଶ୍ଚ ଏଠାରେ ପର୍ତ୍ତୁଗୀଜ ନାବିକଙ୍କ ଜାହାଜ କେଉଁ ଅତୀତରୁ ଜଳମଗ୍ନ ଅବସ୍ଥାରେ ପଡ଼ିରହିଛି, ତାର ପ୍ରମୁଖ କେବଳ ଦୃଷ୍ଟିକୁ ଆସେ, ସମଗ୍ର ଜାହାଜ ବାଲିରେ ପୋତି ହୋଇଯାଇଛି । ଲୋକେ କହନ୍ତି ଆମ ପୂର୍ବପୁରୁଷ ଜାହାଜରେ ବାଣିଜ୍ୟ କରୁଥିଲେ ସେଗୁଡ଼ିକ ଅଗ୍ନିରେ ଧ୍ୱଂସ ହେଲା । ଏହି ଜାହାଜ ରେଙ୍ଗୁନ୍‌ରୁ ଆସିବା ସମୟରେ ଜଳିଗଲା ଓ ପୋତି ହୋଇଗଲା । ଭୂଖନନଦ୍ୱାରା ପୂର୍ବସ୍ମୃତି ଓ ଓଡ଼ିଆ ସଂସ୍କୃତିର ପୁନରୁଦ୍ଧାର ସମ୍ଭବ ।

ନାବିକମାନେ କୈବର୍ତ୍ତ ବଂଶଜରେ ନିଜକୁ "ଓଡ଼ିଓଡ଼ା" ବୋଲି ତେଲୁଗୁରେ ପରିଚୟ ଦିଅନ୍ତି । ମହେନ୍ଦ୍ରତନୟା– ବଂଶଧାରାର ମୁହାଣ କଳିଙ୍ଗ ନଗରର ନାବିକମାନେ ମଧ୍ୟ 'ଓଡ଼ିଓଡ଼ା' ଓ 'ଓଡ଼ାରେଓ଼୍ଲୁ' ଜାତିର ଅଟନ୍ତି । ତତ୍ ସଙ୍ଗେ ସଙ୍ଗେ ଓଡ଼ିଆ କରଣ ବେହେରାମାନେ ମଧ୍ୟ ଅଛନ୍ତି । ଏହି ସ୍ଥାନରେ (Lagoon) ଯେଉଁ ଅଞ୍ଚଳରେ ଭୂଖନନରୁ ପ୍ରାଚୀନ ଜନପଦ ବାହାରେ ତାହା ବର୍ତ୍ତମାନ କଳିଙ୍ଗ ନଗର ଅଧିବାସୀଙ୍କ ଅଧୀନରେ । ସେହି ପଡ଼ାର ନାମ "ବାନ୍ଦାରା ପେଟା" ଅର୍ଥାତ୍ ଓଡ଼ିଆରେ ବନ୍ଦର ପେଣ୍ଠ । ଏ ସମସ୍ତ ଅଞ୍ଚଳର ନୌକା, ଜାହାଜ ସଦୃଶ ଡ଼ଙ୍ଗା ମହେନ୍ଦ୍ରାଞ୍ଚଳର ଶିଶି, ରୁଇ (ଶିମୂଳି) ଓ ଘାସ (ମହେନ୍ଦ୍ରାଞ୍ଚଳରୁ) ସଂଗୃହିତ ଓ ଲାଇରେ ସିଲାଇ ହେବା ଦେଖାଯାଏ ।

କୈବର୍ତ୍ତ ଏକ ଓଡ଼ିଆ ଶବ୍ଦ । ଓଡ଼ିଶାର ପୂର୍ବ-ଉପକୂଳରେ ଏମାନଙ୍କ ବଂଶଧର ଅଦ୍ୟାପି ଜୀବିତ । (୧୬) ଏହା ନିଃସନ୍ଦେହ କଳିଙ୍ଗର ଓଡ଼ ସମାଜ ଉତ୍ତରପଟେ ମଗଧରାଜାଙ୍କ ଅପ୍ରତ୍ୟାଶିତ ଆକ୍ରମଣ ଓ ଦକ୍ଷିଣରେ ଚେରଚୋଳ ପାଣ୍ଡ୍ୟାଦିର ଅନେକ ଆକ୍ରମଣ ଦ୍ୱାରା ଧ୍ୱସ୍ତବିଧ୍ୱସ୍ତ ହେବା ଜଣାଯାଏ । ଏହି ବାଣିଜ୍ୟକ ସଙ୍କେତ ହିଁ ଏହି ସୂଚନା ଦିଏ । ଏଣୁ ସମର କୁଶଳ ଜାତିରେ ପରିଣତ କରିବା ପାଇଁ (ଓଡ଼ କାଳିଙ୍ଗୀ) ଅକ୍ଳାନ୍ତ ପରିଶ୍ରମ କରି ଚତୁରଙ୍ଗ ବଳ, ଗ୍ରାମସେନା ଗଠନ, ନୌବାଣିଜ୍ୟ, ସୁଦୃଢ଼ ଦୁର୍ଗ ନିର୍ମାଣ, ଲୋକ ସଂଗଠନ ସମେତ ବାଣିଜ୍ୟ, ବିଦେଶ ଗମନ, ଦ୍ୱୀପାନ୍ତର ଯାତ୍ରା, ମଣିମୁଦ୍ରାଦି ବ୍ୟବସାୟ ଇତ୍ୟାଦି ସମସ୍ତ ପ୍ରକାର ପାର୍ଥିବ ଐଶ୍ୱର୍ଯ୍ୟର କ୍ରମାଭିବୃଦ୍ଧି ସମ୍ପାଦନ କରିବା ଫଳରେ ସମକାଳୀନ ଭାରତ ବର୍ଷର ରାଜ୍ୟ ସଂଘ ମଧ୍ୟରେ ଏକ ଦୁର୍ଦ୍ଧର୍ଷ ସାହସିକ ଜାତିରୂପେ ଖ୍ୟାତି ଅର୍ଜନ କରିଛନ୍ତି । (୧୬) ପୁନଶ୍ଚ ଉପରୋକ୍ତ ଓଡ଼ ଶବ୍ଦରୁ ପ୍ରମାଣିତ ହୁଏ ଯେ ଏହି କଳିଙ୍ଗାଞ୍ଚଳ ବିଶେଷତଃ ମହେନ୍ଦ୍ରାଞ୍ଚଳ ପୂର୍ବରୁ ଶବର ଅଧ୍ୟୁଷିତ ରାଜ୍ୟ ଥିଲା । ଉତ୍ତର କଳିଙ୍ଗର ଓଡ଼ ଶବର ମାଗଧପ୍ରଭାବିତ ହେବାଦ୍ୱାରା ସେଠାରେ 'ଓଡ୍ର-ମାଗଧୀ' ନାମରେ ଏକ ମିଳିତ ସଭ୍ୟତା ଗଢି ଉଠିଲା ଏବଂ ଦକ୍ଷିଣ କଳିଙ୍ଗ ଭିତରକୁ ଦାକ୍ଷିଣାତ୍ୟ ଗୋଷ୍ଠୀ ପଶିଆସିବାରୁ ସେଠାରେ ଏକ ସଂକୀର୍ଣ୍ଣ ସଭ୍ୟତା ଜନ୍ମଲାଭ କଲା । (୧୮) ବର୍ତ୍ତମାନ ଏହି ଅଞ୍ଚଳରେ ଦୁଇ ସଂପ୍ରଦାୟର ଗୋଷ୍ଠୀ ଦେଖାଯାନ୍ତି । 'ଓଡ଼ କାଳିଙ୍ଗୀ' ଓ 'ଆନ୍ଧ୍ର କାଳିଙ୍ଗୀ' । ବାସ୍ତବିକ ଏମାନେ ଥିଲେ ମୂଳ କଳିଙ୍ଗର ଅଧିବାସୀ । ବର୍ତ୍ତମାନ ପାରଳାଖେମୁଣ୍ଡି ଓ ଗୁରଣ୍ଡି ମଝିରେ ଜଙ୍ଗଲ ପଡ଼ା ନିକଟରେ ଗଙ୍ଗରାଜପୁର ଗ୍ରାମ ଅବସ୍ଥିତ । ସେଠାରେ ଶ୍ରୀ ଜଗନ୍ନାଥଙ୍କୁ କାଳିଙ୍ଗୀମାନେ ପୂଜା କରନ୍ତି ଓ ପୁରୁଷାନୁକ୍ରମରେ ସେମାନେହିଁ ପୂଜକ ଅଟନ୍ତି । ଜଙ୍ଗଲ ମଧ୍ୟରେ ଠାକୁର ଥିଲେ । ତାହା ଦୁଇଶତାବ୍ଦୀ ହେଲା ଗଙ୍ଗାରାଜପୁର ନିକଟରେ ଉଦ୍ଧାରସେଲ ଗ୍ରାମରେ ପୂଜିତ ।

ଏହି ମହେନ୍ଦ୍ରାଞ୍ଚଳ ଦିନେ ପାଇକମାନଙ୍କର ଅଧୀନରେ ଥିଲା । ଏହା ଏ ଅଞ୍ଚଳର ଜାଗିର ଓ ପଦବୀମାନଙ୍କରୁ ସ୍ପଷ୍ଟ ପ୍ରମାଣିତ । ଏ ଅଞ୍ଚଳର ପାଇକମାର ଖୋର୍ଦ୍ଧା ପର୍ଯ୍ୟନ୍ତ ଅଗ୍ରସର ହୋଇ ଓଡ଼ିଆମାନଙ୍କୁ ସାହାଯ୍ୟ କରୁଥିବା ଇତିହାସ ପ୍ରମାଣ ଦିଏ । ଏ ଅଞ୍ଚଳର ପାଇକ ଅଶୋକଙ୍କୁ, ଚୋଡଗଙ୍ଗଦେବଙ୍କୁ ଓ ରସେଲ କମିଶନରଙ୍କୁ ଦୁଇ ସହସ୍ର ବର୍ଷ ମଧ୍ୟରେ କିପରି ମୁକାବିଲା କରିଥିଲା ଓ ତାହା ପୂର୍ବରୁ

(୧୬) ପ୍ରାଚୀନ ଉତ୍କଳ : ପ୍ରଥମ ଭାଗ, ପୃ ୨୩
(୧୭) ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତ : ଡକ୍ଟର ବେଣୀମାଧବ ପାଢ଼ୀ, ପୃ ୯୮
(୧୮) ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତ : ଡ: ବେଣୀମାଧବ ପାଢ଼ୀ, ପୃ ୧୬

ବର୍ଣ୍ଣିତ । ଏ ସମସ୍ତ ମୂଳରେ ରହିଲା ଏ ଅଞ୍ଚଳର ସମୃଦ୍ଧି । ପ୍ରାକୃତିକ ସଂପଦ ବନୌଷଧି, ଉପଯୁକ୍ତ ପାରିପାର୍ଶ୍ୱିକ ସୌନ୍ଦର୍ଯ୍ୟ ତଥା ଅନୁକୂଳ ଜଳବାୟୁ ଇତ୍ୟାଦି ଉତ୍ତର ଭାରତ ଓ ଦକ୍ଷିଣ ଭାରତ ତଥା ପୃଥିବୀର ସମସ୍ତ ନାବିକ, ବଣିକଙ୍କ ଲୋଲୁପ ଦୃଷ୍ଟିରେ ଶତାବ୍ଦୀ ଶତାବ୍ଦୀ ଧରି ଶୋଷଣର ଶିକାର ହେଲା ।

ଏ ସମସ୍ତ ଆକ୍ରମଣ ସତ୍ତ୍ୱେ ଏହି ଜାତି ତାର ସାଂସ୍କୃତିକ ପରଂପରାକୁ ବଜାୟ ରଖିଛି । ସଂହତି ରକ୍ଷାକରି ସେହି ଜଗନ୍ନାଥଙ୍କ ପୁରୁଷୋତ୍ତମ ତତ୍ତ୍ୱାନୁଯାୟୀ ସମସ୍ତଙ୍କୁ ସତ୍କାର, ଆତିଥ୍ୟ ପ୍ରଦାନ କରିଛି । ଅରଣ୍ୟ ସଂପଦ ଓ ବନୌଷଧି ସଂଗ୍ରହରେ ପ୍ରଥମ ସ୍ଥାନ ଓ ପ୍ରଧାନ ଆୟନ ଦାୟୀକରେ ଏହି କୁଳାଚଳ ମହେନ୍ଦ୍ରଗିରି । ପ୍ରାକୃତିକ ସଂପଦ ବିଦେଶକୁ ରପ୍ତାନୀ କରି ପ୍ରଚୁର ଅର୍ଥ ସଂଚୟ କରିବା ବିଷୟ ବର୍ତ୍ତମାନ ବଂଶ ଶତାବ୍ଦୀର ନବଯୁବକଙ୍କ ହାସ୍ୟାସ୍ପଦ ହୋଇପାରେ, କିନ୍ତୁ ଟିକିଏ ପୂର୍ବକୁ ଆଖିପକାଇ ଦେଖିଲେ ଦୃଷ୍ଟି ହେବ ଯେତେବେଳେ ପାଶ୍ଚାତ୍ୟରେ ଆଦିମମାନବ କଞ୍ଚାମାଂସ ଖାଉଥିଲା, ସେହି ସମୟରେ ଏଠାରେ ପୁଷ୍ପକଯାନ, ସାଧନା ଭଜନ, ଅଷ୍ଟାଙ୍ଗ ଯୋଗ ସହିତ ଅନନ୍ୟ ବିଷୟରେ ସାମୁଦ୍ରିକ ସଂପର୍କ କେତେ ଉନ୍ନତ ନ ଥିଲା ? ସେସବୁ ଏହି କେତେବର୍ଷ ହେଲା ବୈଦେଶିକ ଆକ୍ରମଣରେ ଧ୍ୱଂସ ଓ କ୍ଷୟପ୍ରାପ୍ତ । ସୁଦୂର ବିଦେଶରେ ଧର୍ମପ୍ରଚାର ଆଦର ସଂକେତ ବୌଦ୍ଧସ୍ତୂପ ବଂଶଧାରା ନଦୀକୂଳର ଶାଳିହୁଣ୍ଡମ, କଳିଙ୍ଗପାଟଣା ଓ ଜଉଗଡ଼ ଶିଳଲେଖ ଓ ମହେନ୍ଦ୍ରାଞ୍ଚଳ ପାଦଦେଶରେ ବୌଦ୍ଧ କୀର୍ତ୍ତି । ମହେନ୍ଦ୍ରଗିରି ଯାତାୟାତ ମାନଚିତ୍ର ଦ୍ରଷ୍ଟବ୍ୟ । ଏହି କଳିଙ୍ଗ ତାର ପଦଚିହ୍ନ ବିଦେଶରେ ରଖିଯାଇଛି ତାକୁ ଭିତ୍ତିକରି ଆମେ ଆମର ପୂର୍ବ ସଂସ୍କୃତି ତଥା ପୂଜାପଦ୍ଧତି ସ୍ମରଣ କରିବା ଆବଶ୍ୟକ । (୧୯)

ଏହି ପରିପ୍ରେକ୍ଷୀରେ ମହେନ୍ଦ୍ରାଚଳର 'ଚେଲି' ମାନଙ୍କର ରାଇଦେବଙ୍କୁ ପୂଜା ବିଷୟ ଅନୁଧାନଯୋଗ୍ୟ । ଚର୍ଯ୍ୟାଗୀତିକାର ଭାଷା ସହିତ ଏମାନଙ୍କ ଭାଷା ସମାନ । ରାଇଲ ପୂଜାରେ ସେମାନେ ପୌଷ ମାସରେ ରାଇଲ ଗୀତ ଗାଇ ବୁଲିଲ ସଂଗ୍ରହ କରି, ଭୋଗ କରି, ପ୍ରସାଦ ସେବନ କରନ୍ତି । ଯଥା—

ବା ଆଗ ବଳଦ ମୁଣ୍ଡି ବାନ୍ଧିଲ୍ ହଳେ
ତାସ (କୃଷ) କଲ୍ ମଇଦର ମାକେଟି, ରାଇଲ୍ ଯେ
ତାସକଲ୍ ମଇଦର ମାଳେ ।

---

(୧୯) History of Orissa : K. Ch. Panigrahi, P. 460 and 466

ମଇଧରର ମାଲଭେ ମୋର କ କ ପାଚ
ଷ୍ଟିଗମୋଦ ମାଣିକର ପାଚଟି ଗଇଲ ଯେ
ଷ୍ଟିଗ ମୋଦ ମାଣିକର ପାଚ ।

× × ×

ବରଷକୁ ଥରେ ମୋର ଘରେଟି ଗଇଲ ଯେ
ବରଷକୁ ଥରେ ମୋର ଘରେ
ଆଣ୍ଡୁଲା ପୁରିଇ ଯେ ଦଅଟି ଗଇ ମୋର
ଆଣ୍ଡୁଲା ପୁରିଇ ଯେ ଦଅ । (୨୦)

ଉପରୋକ୍ତ ଗଇଲ ଗୀତ ମହେନ୍ଦ୍ରର ଚତୁଃପାର୍ଶ୍ୱସ୍ଥ ଗାନ କରାଯାଏ ଓ ଉତ୍ସବ ହୁଏ । ଏମାନେ ଗଇଲଙ୍କୁ ମହେନ୍ଦ୍ରରୁ ହିଁ ଆହ୍ୱାନ କରିଥାଆନ୍ତି । ପାରଲାର ଅନତିଦୂରରେ ଗଇଲଦେବୀଙ୍କ ମଧ୍ୟ ପୂଜା ହୁଏ । ଏହି ଗୀତର ଭାବ ଯେ ଓଡ଼ିଆର ସଂସ୍କୃତି ଓ ବାଣିଜ୍ୟ ପରଂପରାକୁ ମନେପକାଏ ଏଥିରେ ସନ୍ଦେହର ଅବକାଶ ନାହିଁ । ପୁନଶ୍ଚ ଖରଖର ଗୀତରେ ମଧ୍ୟ ବାଣିଜ୍ୟର ଭାବ ସ୍ପଷ୍ଟ । ଚୈତ୍ରମାସରେ ହୁଏ ମାଳାଞ୍ଚଳରେ ଏହି ପୂଜା ଖରଖର ଫୁଲ ପେନ୍ଥା ଯେନ୍ଥା ନେଇ ସ୍ତ୍ରୀମାନେ ଅତି ଆନନ୍ଦରେ ପୂଜ୍ୟ ପାଳନ କରିଥାଆନ୍ତି । (୨୧)

ଓଡ଼ିଆ ସମାଜରେ ଯେଉଁ ନାଗପୂଜା ହୁଏ ତାହା ଆଦିବାସୀ ଧର୍ମର ପ୍ରଭାବ ମାତ୍ର । ଏହି ନାଗପୂଜା ଓଡ଼ିଆ ସାହିତ୍ୟରେ ପରମ୍ପରାକ୍ରମେ ଚାଲି ଆସିଛି । ବ୍ରତାଳ୍ପରେ ନାଗ ଚତୁର୍ଥୀ ବ୍ୟତୀତ କାର୍ତ୍ତିକ ଶୁକ୍ଳ ଚତୁର୍ଥୀ ଦିନ ପିଙ୍ଗଳ ନାଗପୂଜା କରିବା ପଦ୍ଧତି ଓଡ଼ିଶାରେ ଦେଖାଯାଏ । ବ୍ରତକଥା ବ୍ୟତୀତ ଓଡ଼ିଆ ଲୋକଗୀତରେ ମଧ୍ୟ ଆଦିବାସୀ ଧର୍ମଧାରାର ସନ୍ଧାନ ମିଳିଥାଏ । ଏହା ପ୍ରଥମେ ଓଡ଼ିଆ ସମାଜକୁ ପ୍ରଭାବିତ କରି, ପରେ ଲୋକସାହିତ୍ୟକୁ ଆସିଥିବାର ଅନୁମାନ କରାଯାଏ । ଆଦିବାସୀମାନେ ବଡ଼ବଡ଼ିଆ ଅର୍ଥାତ୍ ନିଜ ଭାଷାରେ ଦେବଦେବୀଙ୍କ ପୂଜା କଲାପରେ ଦୀପାବଳୀ ଅମାବାସ୍ୟା ଦିନ ନଳିତା କାଠିରେ ଅଗ୍ନି ସଂଯୋଗ କରି ବଡ଼ବଡ଼ିଆଙ୍କୁ ଆଲୋକ ପ୍ରଦର୍ଶନ କରନ୍ତି । ତାହା ଆଦିବାସୀ ଧର୍ମର ପ୍ରଭାବ । (୨୨) ଶବର ସମାଜରେ ସ୍ତ୍ରୀମାନଙ୍କପରି ପୁରୁଷମାନେ ମୁଣ୍ଡରେ ଖୋସା ବା ଜୁଡ଼ା ବାନ୍ଧନ୍ତି । ପୂର୍ବକାଳରେ ଓଡ଼ିଆ ସମାଜରେ ମଧ୍ୟ ପୁରୁଷମାନେ ଖୋସା ବାନ୍ଧୁଥିଲେ । ଆଜିକାଲି ପୁରୀର ବ୍ରାହ୍ମଣ ପରିବାରରେ ମଧ୍ୟ କେତେକ ବ୍ରାହ୍ମଣ

(୨୦) ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତ : ଏଜନ ପୃ ୧୪୯-୧୫୦
(୨୧) —ଏଜନ— ପୃ ୧୫୧
(୨୨) ଓଡ଼ିଆ ସାହିତ୍ୟର ବିଭିନ୍ନ ଧର୍ମଧାରା : ଶ୍ରୀ ଫକୀରମୋହନ ଦାସ, ପ ୧୭

ଖୋସା ବାନ୍ଧିବା ଦେଖାଯାଏ । ଓଡ଼ିଆ ଧର୍ମ ସମ୍ପୂର୍ଣ୍ଣରୂପେ ଆଦିବାସୀ ଧର୍ମର ମୁଦ୍ରାଙ୍କନ ବହନ କରିଛି । ବୌଦ୍ଧଗାନ ଦୋହାରେ ମଧ୍ୟ ଆମେ ସେକାଳର ସମାଜ ଚିତ୍ର ସ୍ପଷ୍ଟ ଭାବରେ ଦେଖିଥାଉଁ । ସେହି ଦୋହା ସାହିତ୍ୟରେ ବିଶେଷତଃ ଶବରୀପାଙ୍କ ଦୋହାରେ ଓଡ଼ିଶାର ଆଦିବାସୀ ଶବରଙ୍କ ସମାଜ ଚିତ୍ର, ବେଶ, ଭୂଷା, ନୃତ୍ୟ ଶ୍ରେଣୀ ଓ ଜୀବିକାଦି ବିଷୟରେ ସୁନ୍ଦର ସ୍ପଷ୍ଟ ଚିତ୍ର ମିଳିଥାଏ । ଯଥା—

"ଉଁଚ୍ଚ ଉଁଚ୍ଚ ପାବତ ତହିଁ ବସଇ ଶବରୀ ବାଲୀ
ମୋରଙ୍ଗୀ ପିଛ ପରହିତା ଶବରୀ ଗିବତଗୁଞ୍ଜରୀ ମାଲୀ
× × ×
ଏତଲ୍ଲି ଶବରୀ ଏବଣ ହିଣ୍ଡଇ କର୍ଣ୍ଣ କୁଣ୍ଡଳ ବଜ୍ରାଧାରୀ ।
—ଶବରୀପା ଦୋହା

ସମ୍ଭବତଃ ହିନ୍ଦୁଧର୍ମର ବଳିପ୍ରଥା ଆଦିବାସୀ ଧର୍ମଦ୍ୱାରା ପ୍ରଭାବିତ । ଶବରମାନେ ଉତ୍ସବ, ପର୍ବପର୍ବାଣୀମାନଙ୍କରେ ଦେବଦେବୀଙ୍କୁ ସନ୍ତୁଷ୍ଟ କରିବା ନିମିତ୍ତ ଛାଗ, ମହିଷ, ଘୁଷୁରି ପ୍ରଭୃତି ବଳିଦାନ କରିଥାଆନ୍ତି । ତେଣୁ ଓଡ଼ିଆ ସଂସ୍କୃତି ଶାବର ସଂସ୍କୃତିର ପଥକୁ ଅନୁସରଣ କରିଛି ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ମହେନ୍ଦ୍ରର ନିଭୃତ କୋଣରେ ଅବସ୍ଥିତ ଏକ ଶିବଲିଙ୍ଗ ନିକଟରେ ବହୁବର୍ଷ ପୂର୍ବେ ବଳିପ୍ରଥା ଥିବା ଲୋକମୁଖରେ ପ୍ରଚଳିତ । ମହେନ୍ଦ୍ରାଞ୍ଚଳରେ ମିଳିଥିବା କେତେକ ଶିଳାଲେଖ, ପାଲିଭାଷା, ବ୍ରାହ୍ମୀଲିପି, ସଂସ୍କୃତ ଭାଷା, ତେଲୁଗୁ ଓ ତାମିଲ ଲିପି ଏକାଧାରରେ ପୂର୍ବ ମାଗଧୀ, ଅର୍ଦ୍ଧ ମାଗଧୀ ଓ ଦ୍ରାବିଡ଼ ଭାଷାର ସମନ୍ୱୟର ସୂଚନା ଦିଏ । "ଗୁରୁତ୍ କମ୍ ଓଡ଼ିଆ ବୋଧହୁଏ ଜାଣନ୍ତି ଯେ ଆନ୍ଧ୍ରମାନେ ଓଡ଼ିଶାକୁ କଳିଙ୍ଗ ବୋଲି ଆଦୌ ସ୍ୱୀକାର କରନ୍ତି ନାହିଁ ।" ସେମାନେ କହନ୍ତି ଯେ ସେମାନେ ହିଁ ଐତିହାସିକ କଳିଙ୍ଗ । (୨୩) ଏହି ମତକୁ ଖଣ୍ଡନ କରି ଡା: ମାୟାଧର ମାନସିଂ ଓଡ଼ିଶା ମାଟିରେ ପ୍ରାଚୀନତମ ମନୁଷ୍ୟ ଭାଷାରେ ପ୍ରକାଶ ବୋଲି ଯୁକ୍ତି ବାଢ଼ିଥିଲେ । ଏହି ବିଷୟରେ ଆନ୍ଧ୍ରମାନେ ଦକ୍ଷିଣର ଗୋଟିଏ ସ୍ଥାନ୍‌ରେ ଚ୍ୟାଲେଞ୍ଜ କରିଥିବା ପ୍ରମାଣ ମିଳେ । ସେ ଯାହାହେଉ ମହେନ୍ଦ୍ର ସମ୍ପର୍କୀୟ ଦାନ ପଟ୍ଟାଦିରେ ଓଡ଼ିଆ, ତେଲୁଗୁ ଭାଷା ବ୍ୟବହାର ହୋଇଥିବା ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କର ଓ ଗଙ୍ଗବଂଶୀୟ ରାଜାମାନଙ୍କର ଶାସନକାଳରୁ ଜଣାଯାଏ । ପ୍ରଥମତଃ ଆନ୍ଧ୍ରଶିଳ ଖାରବେଳଙ୍କ ଶିଳାଲେଖରୁ ଆମେ ପ୍ରମାଣ ପାଇଥାଉଁ । ଏହି ଶିଳାଲେଖର ଆନ୍ଧ୍ରଶିଳକୁ କେନ୍ଦ୍ରକରି ଆନ୍ଧ୍ର ସାହିତ୍ୟ ମଧ୍ୟ ଓଡ଼ିଶା ମାଟିରେ ତାର ପ୍ରଭାବ ଦାବୀ କରିବା ସ୍ୱାଭାବିକ । ଶତାବ୍ଦୀ ଶତାବ୍ଦୀ ଧରି ଓତଃପ୍ରୋତ ଜଡ଼ିତ

(୨୩) ଓଡ଼ିଆ ସାହିତ୍ୟର ବିଭିନ୍ନ ଧର୍ମଧାରା : ଶ୍ରୀ ଫଙ୍କରମୋହନ ଦାସ, ପୃ ୧୯

ଥିବା ହେତୁ ସ୍ୱତଃ ଆନ୍ଧ୍ର ସାହିତ୍ୟ ଓ ଉତ୍କଳ ସାହିତ୍ୟ ଭାରତର କେନ୍ଦ୍ର ସାହିତ୍ୟ ସଂସ୍କୃତ ସାହାଯ୍ୟରେ ଶୃଙ୍ଖଳିତ ହେବା ସ୍ୱାଭାବିକ । ଏଠାକାର ଅଧିବାସୀମାନେ ମକର ସଂକ୍ରାନ୍ତିରେ ଆନ୍ଧ୍ର ପଞ୍ଜିକା ପାଳନ କରିବା ଦେଖି କେତେକ ଆନ୍ଧ୍ର ସାହିତ୍ୟିକ ଓଡ଼ିଆ ସାଂସ୍କୃତିରେ ଆନ୍ଧ୍ର ପ୍ରଭାବ ଦର୍ଶାଇଛନ୍ତି ।

ଓଡ଼ିଶାର ପ୍ରାଚୀନ ଅଧିବାସୀମାନଙ୍କର ଅନ୍ୟତମ ଗୋଷ୍ଠୀ ଦ୍ରାବିଡବଂଶୀୟ । ଏମାନେ ଓଡ଼ିଶାର ଦକ୍ଷିଣ ଭାଗରେ ବାସ କରୁଥିଲେ । ଏମାନଙ୍କ ମଧ୍ୟରେ ପ୍ରଚଳିତ ନାନା ଶବ୍ଦ ସଂସ୍କୃତ ମାଧ୍ୟମରେ ଓଡ଼ିଆରେ ସ୍ୱୀକୃତ ହୋଇଅଛି । ଅର୍ଥାତ୍ ଏହି ଶବ୍ଦମାନ ପ୍ରଥମେ ସଂସ୍କୃତରେ ଅନୁପ୍ରବିଷ୍ଟ ହେଲା ପରେ ପ୍ରାକୃତ ମାଧ୍ୟମରେ ଓଡ଼ିଆକୁ ଆସିଅଛି । 'ପିଳ' ଏହିପରି ଗୋଟିଏ ଶବ୍ଦ । ଏହି ଶବ୍ଦଟି ତାମିଲ 'ପିଲ୍ଲେ' ଶବ୍ଦରୁ ସଂସ୍କୃତରେ 'ପିଲ୍ଲକ' ରୂପରେ ସ୍ୱୀକୃତ ହୋଇ ପ୍ରାକୃତ ମାଧ୍ୟମରେ ପିଲା, ପିଲିକିଲି, ପିଲାଳିଆ ପ୍ରଭୃତି ଶବ୍ଦର ଉଦ୍ଭବ ହୋଇଛି ବୋଲି ଧରାଯାଇପାରେ । ଏହିପରି ତାମିଲ 'କାଲାରୁ' ସଂସ୍କୃତ ମାଧ୍ୟମରେ 'ଖାଲ' ଶବ୍ଦ ଓଡ଼ିଆରେ ପ୍ରଚଳିତ । ଏହି ଶବ୍ଦରୁ ଖାଲଢିପ, ଖାଲି, ଖମାରି, ଖାଲୋଇ ପ୍ରଭୃତି ଶବ୍ଦ ମଧ୍ୟ ଜାତ । ଏହିପରି ଆମ୍ଭେମାନେ ବୋଝ ଅର୍ଥରେ ଯେଉଁ 'ମୋଟା' ଶବ୍ଦ ବ୍ୟବହାର କରୁଁ ତାହା ମୂଳତଃ ଦ୍ରାବିଡ଼ ଭାଷାରୁ ଗୃହୀତ ।

ଏହି ପରିପ୍ରେକ୍ଷୀରେ ଏହି ଅଞ୍ଚଳର ଆନ୍ଧ୍ର ସଂସ୍କୃତି ସଂସ୍କୃତ ଓ ଓଡ଼ିଆ ଭାଷା ଏବଂ ସଂସ୍କୃତି ଉପରେ କି ପ୍ରଭାବ ପକାଇଛି ବକ୍ତବ୍ୟ ।

## (ଗ) ଆନ୍ଧ୍ର ସଂସ୍କୃତ :

ଏକାଦଶ ଶତାବ୍ଦୀ ଶେଷଭାଗରେ ତାମିଲ ସଙ୍ଗୀତର ଶାସକ ଗଙ୍ଗ ରାଜାମାନେ ଉତ୍କଳରେ ସମ୍ରାଟ ହିସାବରେ ଅସିବା ଫଳରେ ସେମାନେ ଉତ୍କଳର ଛନ୍ଦ ସାହିତ୍ୟକୁ ଅନୁକରଣ କରିଥିଲେ ଏବଂ କର୍ଣ୍ଣାଟ ସଙ୍ଗୀତକୁ ଓଡ଼ିଶାରେ ପ୍ରସାର କରିଥିଲେ । ସେହି କର୍ଣ୍ଣାଟ କଳା ଓ ଉତ୍କଳ କଳାର ସମ୍ମିଶ୍ରଣରେ ସୁନ୍ଦର ସୃଷ୍ଟି ଘଟିଥିଲା । ଏହା ଅନ୍ୟ କୌଣସି ଭାରତୀୟ ଆର୍ଯ୍ୟ କିମ୍ବା ଦ୍ରାବିଡ ଭାଷାରେ ଦେଖାଯାଏ ନାହିଁ । ଛନ୍ଦରେ ଉଚ୍ଚକୋଟୀର ଶବ୍ଦାବଳୀ ବ୍ୟବହୃତ ହେବା ଦୃଷ୍ଟିରୁ ସଂସ୍କୃତ ସାହିତ୍ୟ ଗୃହୀତ ତତ୍ସମ ଶବ୍ଦ ଦ୍ୱାରା ଓଡ଼ିଆ ଭାଷା ସଂବୃଦ୍ଧ ହୋଇ ପାରିଥିଲା । (୨୫) ପରେ ପରେ ଏହାର ପ୍ରଭାବ ବୈଦିକୀୟ ବୌଦ୍ଧିକମାନଙ୍କ ଉପରେ ପଡ଼ିଥିଲା । ସୌରସେନୀ ପ୍ରାକୃତ ନିୟମରେ

---

(୨୪) ଓଡ଼ିଆ ସାହିତ୍ୟର ଇତିହାସ : ଡକ୍ଟର ମାୟାଧର ମାନସିଂ, ପୃ ୩୬

(୨୫) Orissa Historical Research Journal Vol. No. 1 P. 36

ଅପଭ୍ରଂଶ ହୋଇଥିବା ଅର୍ଦ୍ଧ ମାଗଧୀ ଓ ଓଡ଼ିଆ ଅପଭ୍ରଂଶ ମାଗଧୀର ଆଂଶିକ ସମନ୍ୱୟରେ ଓଡ଼ିଆ ଭାଷାର ସୃଷ୍ଟି । ପରବର୍ତ୍ତୀ ଯୁଗରେ ଶବର ଭାଷାର ମିଶ୍ରଣରେ ଏହା ଶବର 'ଓଡ୍ର' ନାମରେ ନାମିତ ହେବା ଜଣାଯାଏ । ପରବର୍ତ୍ତୀ ଯୁଗରେ ଏହା ଦ୍ରାବିଡ଼ ଗୋଷ୍ଠୀର ଶବ୍ଦାବଳୀକୁ ଆତ୍ମସାତ୍ କରି ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ଭାଷାରେ ପରିଗଣିତ ହୋଇଯାଇଛି । ଓଡ଼ିଆ ଭାଷା ମଧ୍ୟରେ ପ୍ରାଚୀନ ଶାବର ଓ ଦ୍ରାବିଡ଼ ଶବ୍ଦ ଏପରି ଜଡ଼ିତ ହୋଇ ରହିଛି ଯେ ତାକୁ ଉଠାଇ ନେଲେ ଓଡ଼ିଆ ଭାଷାର ସ୍ଥିତି ସମ୍ଭବ ନୁହେଁ । ସେଗୁଡ଼ିକ ହିଁ ଦେଶଜ ଶବ୍ଦ ନାମରେ ଅଭିହିତ ହୋଇ ଆସୁଛି । ଦ୍ରାବିଡ଼ ଭାଷାଗତ ଓଡ଼ିଆ ଦେଶଜ ଶବ୍ଦ ମହେନ୍ଦ୍ରାଞ୍ଚଳରେ ବିଶେଷ ଭାବରେ ଦେଖିବାକୁ ମିଳେ । ଯଥା—ବାଡ଼, କାଠ, କଣ୍ଟି, ଆଡା, କଳି, ଗିଡ଼ା, କୋଡ଼, ଗୁଡି, ଚକୋଳି, ଚଳି, ଗେଡ଼ା, ଗୋଡ, ଗୁଡ଼ ଏବଂ ଚକୋଳି (ପିଠା) ପ୍ରଭୃତି ।

ଏହିଭଳି ଆନ୍ଧ୍ର ଅଞ୍ଚଳରେ ଆନ୍ଧ୍ର, ସଂସ୍କୃତ ଓ ଭାଷାର ପ୍ରଭାବ ବହୁଳ ଭାବରେ ପରିଦୃଷ୍ଟ ହୁଏ । ଆଜିକାଲି ଭାରତ ବର୍ଷରେ ପ୍ରଚଳିତ ତେଲୁଗୁ, ତାମିଲ, ମାଲୟାଲମ୍, କନ୍ନଡ ପ୍ରଭୃତି ଦ୍ରାବିଡ଼ ଭାଷାଗୋଷ୍ଠୀ ମୁଣ୍ଡାରୀ ଭାଷା ଗୋଷ୍ଠୀକୁ ଛାଡ଼ିଦେଲେ ଓଡ଼ିଆକୁ ମିଶାଇ ପ୍ରାୟ ସବୁ ଭାରତୀୟଭାଷା, ଆର୍ଯ୍ୟଭାଷା ପରିବାରରୁ ହିଁ ଉଦ୍ଭବ । (୨୭) ଏଣୁ ଆର୍ଯ୍ୟ ସଂସ୍କୃତି ସଂପର୍କରେ ବିସ୍ତୃତ ବିଚାରିବା ନିତାନ୍ତ ଆବଶ୍ୟକ ।

## (୪) ଆର୍ଯ୍ୟ ସଂସ୍କୃତି :

ଆର୍ଯ୍ୟମାନେ ଓଡ଼ିଶାକୁ ଆସିବା ସମୟରେ ଓଡ଼ିଶା ଯେ ଜନଶୂନ୍ୟ ମରୁପ୍ରାନ୍ତର ଥିଲା ତାହା ନୁହେଁ । ଓଡ଼ିଶାରେ ଲୋକବସତି ବହୁ ପ୍ରାଚୀନ । ଗବେଷକ-ମାନେ ମହାନଦୀ ଉପତ୍ୟକାରୁ ପ୍ରାକ୍ ଐତିହାସିକ ଲୋକମାନଙ୍କର ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ରର ସନ୍ଧାନ ପାଇପାରିଲେଣି । ଆର୍ଯ୍ୟମାନେ ଆସିବା ପୂର୍ବରୁ ପ୍ରଧାନତଃ ଦୁଇ-ଗୋଟି ଆର୍ଯ୍ୟେତର ଭାଷାଭାଷୀ ଗୋଷ୍ଠୀ ଓଡ଼ିଶାରେ ବାସ କରୁଥିଲେ । ଓଡ଼ିଶା ଦେଶ କହିଲେ କଳିଙ୍ଗ, ଉତ୍କଳ ଏବଂ କୋଶଳର ସମ୍ମିଳିତ ଭୂଖଣ୍ଡକୁ ବୁଝାଏ । ପ୍ରାଚୀନ କାଳରେ ଏହା ଉଦ୍ର ବା ଓଡ୍ର ଦେଶ ନାମରେ ପରିଚିତ ଥିଲା ଏବଂ ଏହି ଓଡ୍ର ଦେଶବାସୀଙ୍କ ଭାଷାକୁ ଉଦ୍ରଜା କୁହାଯାଉଥିଲା । ଉଦ୍ର ବା ଓଡ୍ର ଶବ୍ଦ ବୈଦିକ ସାହିତ୍ୟରେ ଉପଲବ୍ଧ ହୁଏ ନାହିଁ । କିନ୍ତୁ ଭରତକୃତ ନାଟ୍ୟଶାସ୍ତ୍ରରେ "ଶବର ଚଣ୍ଡାଳ ସଚରଦ୍ରାବିଡ଼ୋଦ୍ରଜାଃ" ବୋଲି ଉଲ୍ଲେଖ ଅଛି । ଆର୍ଯ୍ୟଜାତି ଓ ଶବରଜାତି ନିଜକୁ ଶ୍ରୀ ଜଗନ୍ନାଥଙ୍କ ପୂଜକ ଏବଂ ବଂଶଧର ବୋଲି ପରିଚୟ ଦିଅନ୍ତି । ବର୍ତ୍ତମାନ

(୨୭) ଓଡ଼ିଆ ଭାଷାର ରୂପତତ୍ତ୍ୱ ; ଡକ୍ଟର ବେଣୀମାଧବ ପାଢୀ, ପୃ ୮୨

ଶୁଦ୍ଧା ଶ୍ରାଦ୍ଧ ସମୟରେ ପିତୃକୁଳ ଓ ମାତୃକୁଳର ନାମ ଜଣା ନ ପଡ଼ିଲେ ସେମାନେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ନାମ ଉଚ୍ଚାରଣ କରି ପିଣ୍ଡ ଅର୍ପଣ କରନ୍ତି । ଏହା ପରମ୍ପରାଗତ ପ୍ରଥାନୁଯାୟୀ ପ୍ରଚଳିତ । ଏହା ଆର୍ଯ୍ୟ ସଂସ୍କୃତିର ପରଂପରା ଅଟେ । ଓଡ଼ିଶାରେ ଶବର ଏବଂ ଆର୍ଯ୍ୟ ସଂସ୍କୃତି ଦୃଢ଼ଭାବରେ ସଶ୍ଲିଷ୍ଟ । ଉଭୟଙ୍କ ଧର୍ମ, ସଂସ୍କୃତି ନୀତି ନିୟମର ମିଳନ ମନ୍ତ୍ର ଓଡ଼ିଶୀୟ ସଂସ୍କୃତିର ସ୍ୱାତନ୍ତ୍ର୍ୟ । ଓଡ଼ିଶାର ଶବରମାନେ ନିଜକୁ ଜାରା ଶବର ବଂଶଧର ବୋଲି ପରିଚୟ ଦିଅନ୍ତି ଏବଂ ସେମାନଙ୍କ ଉଚ୍ଛିଷ୍ଟ ଭଗବାନ ରାମଚନ୍ଦ୍ର ଗ୍ରହଣ କରିଥିଲେ ବୋଲି ଗର୍ବବୋଧ କରନ୍ତି ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ତାଙ୍କର 'ଜଗନ୍ନାଥ' ମନ୍ଦିର ଓ 'ଜଗନ୍ନାଥ ତତ୍ତ୍ୱ'ରେ କହିଛନ୍ତି ଜଗନ୍ନାଥ ଆଦିବାସୀ ଦେବତା । ଡକ୍ଟର ବେଣୀମାଧବ ପାଢୀ ମଧ୍ୟ ତାଙ୍କର 'ଦାରୁ ଦେବତା'ରେ ଏହା ଗ୍ରହଣ କରିଛନ୍ତି । (୨୭)

ବୈଦିକ ଯୁଗରେ ଆର୍ଯ୍ୟେତର ଜାତିଙ୍କୁ 'ଦସ୍ୟୁ' ବା 'ଦାସ' ଆଖ୍ୟା ଦିଆଯାଇଥିଲା । 'ଋଗ୍‌ବେଦରେ' ଦାସ-ଦସ୍ୟୁ ନାମକ ରାଜାଙ୍କ ନାମ ଦେଖାଯାଏ । ଆର୍ଯ୍ୟ ସମ୍ପ୍ରଦାୟ ସେମାନଙ୍କୁ ଘୃଣା କରୁଥିଲେ । 'ମହାଭାରତରେ' ଦାସ ରାଜାଙ୍କ ନାମ ଉଲ୍ଲେଖ ଅଛି । ଚନ୍ଦ୍ରବଂଶୀୟ ରାଜା ଶାନ୍ତନୁଙ୍କ ଦ୍ୱିତୀୟା ରାଣୀ ଦାସ ରାଜାଙ୍କର କନ୍ୟା । ସତ୍ୟବତୀ ଯେତେବେଳେ ଅନୂଢ଼ା କୁମାରୀ ଥିଲେ, ସେ ଜଣେ କୈବର୍ତ୍ତ କନ୍ୟା ରୂପେ ପରାଶର ଋଷିଙ୍କ ଔରସରେ କୃଷ୍ଣ ଦ୍ୱୈପାୟନ ଅର୍ଥାତ୍ ବ୍ୟାସ ନାମକ ଋଷିଙ୍କୁ ଜନ୍ମ ଦେଇଥିବା ପ୍ରସଙ୍ଗ ମହାଭାରତରେ ବର୍ଣ୍ଣିତ ଅଛି । ଅଦ୍ୟାପି, ଉତ୍ତର ଭାରତ, ବିହାର, ବଙ୍ଗଳା ଏବଂ ଓଡ଼ିଶାର କୈବର୍ତ୍ତ ବା କେଉଟମାନେ 'ଦାସ' ସଂଜ୍ଞା ବ୍ୟବହାର କରନ୍ତି । (୨୮)

ଏହି ଭଳି ପ୍ରକାର, ଶବରମାନଙ୍କ ସହିତ ଆର୍ଯ୍ୟ ଋଷିମାନଙ୍କର ସହାବସ୍ଥାନ ଫଳରେ ଯେଉଁ ନୂତନ ବଂଶ ସୃଷ୍ଟି ହୋଇଥିଲା, ତାହା ଏହି ଆଦିବାସୀ ଜାରାଶବରମାନଙ୍କର ସଂସ୍କୃତିର ପ୍ରଭାବ ମାତ୍ର । ଆର୍ଯ୍ୟମାନଙ୍କର ପୂଜିତ ଜଗନ୍ନାଥ ଜାରାଶବର, ଦଇତାପତିଙ୍କ ଦ୍ୱାରା ପୂଜିତ । ଆର୍ଯ୍ୟ ସଂସ୍କୃତି ଶବର ସଂସ୍କୃତିର ପ୍ରଭାବରେ ଅନେକାଂଶରେ ଉଭୟେ ଉଭୟଙ୍କୁ ସ୍ୱାଗତ କରିଥିଲେ । ବର୍ତ୍ତମାନ ମହେନ୍ଦ୍ର ଅଞ୍ଚଳର ଆଦିବାସୀ ଶବରମାନେ ମୁଖ୍ୟତଃ ଦୁଇଟି ଗୋତ୍ରରେ ନିଜର ବଂଶପରଂପରାକ୍ରମ ରକ୍ଷା କରିଛନ୍ତି । ସେହି ଦୁଇ ଗୋତ୍ର ହେଲା (୧) ରାମଗୋତ୍ର, (୨) ଭୀମଗୋତ୍ର । ଆଉ କେତେକ ଶବରଙ୍କ ଗୋତ୍ର ମଧ୍ୟ ଅର୍ଯ୍ୟଋଷିମାନଙ୍କ ନାମରେ ପରିଲକ୍ଷିତ ହୁଏ ।

(୨୭) ଦାରୁଦେବତା : ଡକ୍ଟର ବେଣୀମାଧବ ପାଢ଼ୀ ।

(୨୮) ଓଡ଼ିଶାର ଇତିହାସ : ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପୃ-୧୨

ପ୍ରକାଶଥାଉକି ମହେନ୍ଦ୍ରଜନପଦର ଉତ୍ତର ପାର୍ଶ୍ୱ ଭୀମଗୋତ୍ର ଶବର ଓ ଦକ୍ଷିଣ ଭାଗ ରାମଗୋତ୍ର ଶବର ବୋଲି ଅଧିବାସୀମାନେ ଯୁକ୍ତି ବାଢ଼ନ୍ତି । ଏହି ଉତ୍ତର ଭାଗରେ ଯେଉଁ ଲଞ୍ଜିଆ ଶବରମାନେ ଆସ୍ଥାନ ମାଡ଼ିଛନ୍ତି, ବର୍ତ୍ତମାନ ସୁଦ୍ଧା ସେମାନଙ୍କ ମଧ୍ୟରୁ କେତେକ ସଭ୍ୟତାର ବହୁଦୂରରେ ଥିବା ଦେଖାଯାଏ । ଏହି ଲଞ୍ଜିଆ ସ୍ତ୍ରୀମାନେ ପୃଥୁଳକାୟ ଅଟନ୍ତି । 'ପୃଥୁଳ' ଶବ୍ଦ ଲଞ୍ଜିଆ ଭାଷାରେ 'ହିଡ଼ିମ୍ବା' ଅଟେ । ଅର୍ଥାତ୍ ଏହା ପ୍ରମାଣ କରିଯାଇପାରେ ଯେ ମହେନ୍ଦ୍ରଗିରିର ପଶ୍ଚିମାଂଶ ହିଡ଼ିମ୍ବା ଅଞ୍ଚଳ ଯାହାକି ମହାଭାରତର ଯୋଦ୍ଧା 'ଭୀମ' ମଧ୍ୟମ ପାଣ୍ଡବଙ୍କ ବିଚରଣ ସ୍ଥଳ ଓ ମହାଭାରତ କହେ ଘଟୋତ୍କଚ ଭୀମଙ୍କ ପୁତ୍ର । ଏ ସଂକ୍ରାନ୍ତରେ ମହେନ୍ଦ୍ର ପାଦଦେଶରେ, ପଶ୍ଚିମାଞ୍ଚଳର 'ରାୟଗଡ଼ା ଓ 'ନୂଆଗଡ଼' ଗ୍ରାମ ନିକଟସ୍ଥ ଅପୂର୍ବ ହାଡ ପର୍ବତ ଦର୍ଶନ କରିବା ବିଧେୟ । ମନୁଷ୍ୟର ହାଡ଼ ସଦୃଶ ଚୂନ ପଥର, ରୂପାନ୍ତରିତ ଶିଳା ରହସ୍ୟ ଉଦ୍‌ଘାଟନ ପାଇଁ ଦିଗ୍‌ଦର୍ଶକ ।

ଏଥିରୁ ଏହି ମହେନ୍ଦ୍ର ଅଂଚଳରେ ଆର୍ଯ୍ୟମାନଙ୍କର ପ୍ରଭାବ ସ୍ପଷ୍ଟ ଅନୁମେୟ । ବିଭିନ୍ନ ଆର୍ଯ୍ୟ ଦେବଦେବୀଙ୍କ ଉପାସନାରୁ ମଧ୍ୟ ଏହା ପ୍ରମାଣିତ । ପରବର୍ତ୍ତୀ 'ମହେନ୍ଦ୍ରର ମହାତ୍ମ୍ୟ' ପର୍ଯ୍ୟାପ୍ତ ଅବଲୋକନ କଲେ ଏହା ଅଧିକ ସ୍ପଷ୍ଟୀଭୂତ ହେବ ।

## (୪) ଅନ୍ୟାନ୍ୟ ସଂସ୍କୃତି :

ଧର୍ମ ସଂସ୍କୃତି ଦୃଷ୍ଟିରୁ ଉତ୍କଳ, ଭାରତର ଏକ କ୍ଷୁଦ୍ର ପ୍ରତିମୂର୍ତ୍ତି । ଯୁଗେ ଯୁଗେ ଭାରତ ଭୂମିରେ ଯେତେଯେତେ ଧର୍ମ ଓ ଧର୍ମ ସାଧନାର ଉନ୍ମେଷ ଓ ଉତ୍ଥାନ ହୋଇଛି, ସେଗୁଡ଼ିକର ପ୍ରଭାବ ଓଡ଼ିଶାରେ ପଡ଼ିଛି । ଓଡ଼ିଶା ତାର କ୍ଷୁଦ୍ରତର କ୍ଷେତ୍ରରେ ସବୁ ସାଧନା ମାର୍ଗକୁ ଗ୍ରହଣ କରିଛି । ତାନ୍ତ୍ରିକ, ବୌଦ୍ଧ, ବୈଷ୍ଣବ ପ୍ରଭୃତି ଯେତୋଟି ପ୍ରଧାନ ପ୍ରଧାନ ଧର୍ମଦର୍ଶ ଇତିହାସକୁ ପରିପୁଷ୍ଟ କରିଛନ୍ତି, ସେ ସବୁର ସ୍ପର୍ଶ ଓଡ଼ିଆ ମାଟି ପାଇଛି । ପୁରୀ ଦେଉଳର ବଡ଼ଠାକୁର ତାର ପ୍ରତ୍ୟକ୍ଷ ପ୍ରମାଣ । ସେ କୌଣସି ଗୋଟିଏ ଧର୍ମର ସେବ୍ୟ ନୁହନ୍ତି ବା କୌଣସି ଗୋଟିଏ ମାର୍ଗର ଆରାଧ୍ୟ ନୁହନ୍ତି । ନାନା ସମୟରେ ଓଡ଼ିଶା ଭୂମିରେ ଯେତେ ପ୍ରକାର ଧର୍ମଚିନ୍ତାର ସ୍ରୋତ ପ୍ରବାହିତ ହୋଇଛି, ଜଗନ୍ନାଥ ସଂସ୍କୃତି ସମସ୍ତଙ୍କୁ କୋଳ କରିଛି । ସେଥିଲାଗି ସେ ବଡ଼ଠାକୁର । ତାଙ୍କର ଦେଉଳ ବଡ଼ ଦେଉଳ । ତାଙ୍କର ଦାଣ୍ଡ ବଡଦାଣ୍ଡ । ଏ ଏକ ସମନ୍ୱୟର ପୀଠ । ହଠାତ୍ ଏହି ପୀଠରେ ପଞ୍ଚସଖାଯୁଗର ଆବିର୍ଭାବ ଓ ଶୂନ୍ୟଭାବନା ସକଳ ସଂସ୍କୃତିର ସମନ୍ୱୟ ରକ୍ଷାକରି ଆହ୍ୱାନ କରିଥିଲା ସେହି ମହିମା ଧର୍ମ । ଏ ହେଲା ଷୋଡ଼ଶ ଶତାବ୍ଦୀର ସାଧନା ପରମ୍ପରାର ଉନ୍ମେଷ ।

ପୂର୍ବରୁ ସୂଚିତ ଚୈତନ୍ୟଙ୍କ ଭାବଧାରାରେ ଏହି ଅଞ୍ଚଳ ପ୍ଲାବିତ । ମହେନ୍ଦ୍ରଗିରି ସେଥିରୁ ବାଦ ଯାଇନାହିଁ । ମହେନ୍ଦ୍ରଗିରି ଉତ୍କଳର ଧାର୍ମିକ ପ୍ରବାହର ପ୍ରତିରୂପ ।

ସମୁଦ୍ର ଓ ମହେନ୍ଦ୍ରଗିରି ମଧ୍ୟରେ ଯେଉଁ ତାଳବଣ ଓ ନାରିକେଳ ଉଦ୍ୟାନ ରହିଛି ସେଠାରେ ପ୍ରାଚୀନ କଳିଙ୍ଗର ନାବିକମାନେ ବସବାସ କରନ୍ତି । ସେମାନେ ମଧ୍ୟଯୁଗରେ ବୌଦ୍ଧଧର୍ମର ଆଶ୍ରୟ ନେଉଥିଲେ ଏବଂ ବର୍ତ୍ତମାନ ସେମାନେ ମହିମା ଧର୍ମୀ । (୨୯)

ଏହି ମହିମାଧର୍ମୀ ଏ ଅଞ୍ଚଳରେ ଏତେ ପରିମାଣରେ ବ୍ୟାପିଥିଲେ ଯେ ଖୁଡ୍ଡା ଶବର ସମ୍ପ୍ରଦାୟକୁ ଧର୍ମ କରିପାରିନ କହିଲେ ଚଳେ । ତଥାପି କେତେକ କନ୍ଧ, ଶବର, ରେଲି, ଗଉଡ, ପନ୍ଦର, ପାଇକ ଶ୍ରେଣୀର ଲୋକମାନେ ମହିମା ଧର୍ମରେ ଦୀକ୍ଷିତଥିବା ଦେଖାଯାଏ । ପୂର୍ବରୁ ସୂଚନା ଦିଆଯାଇଛି କି କଳିଙ୍ଗପାଟଣା ବନ୍ଦର ନିକଟରେ ଗୋଟିଏ ପଡ଼ା ରହିଛି । ପୂର୍ବର ବନ୍ଦର ଚିହ୍ନ ରହିଛି, ତାର ନାମ ବନ୍ଦରପେଟା । ସେଠାରେ ବିରାଟ ବୌଦ୍ଧସ୍ତୂପ ରହିଛି । ମହେନ୍ଦ୍ରାଞ୍ଚଳର ଚତୁଃପାର୍ଶ୍ୱରେ ଯେଉଁ କେତେକ ମହିମା ଗାଦି ରହିଛି ତା' ଲକ୍ଷ୍ୟକଲେ ବିଚିତ୍ର ଭାବାବେଶରେ ଅଭିଭୂତ ହେବାକୁ ପଡେ । ମହେନ୍ଦ୍ରଗିରିର ପାଦଦେଶରେ ଅବସ୍ଥିତ ଝିଲେଇ, * ସିଂହପୁର, ତରଳା, ଛେଲିଗଡ଼, ଜଙ୍ଗଲପଦା ଇତ୍ୟାଦି ସମେତ ଯେଉଁଭଳି ମହିମା ଗୋସେଇଁମାନେ ଭ୍ରମଣ କରନ୍ତି ଏବଂ ପର୍ବତ ଶୃଙ୍ଗୋପରି ଯଜ୍ଞାନୁଷ୍ଠାନରେ ପ୍ରବୃତ୍ତ ହୁଅନ୍ତି ତାହାହିଁ ଏକ ନୂତନ ସଂସ୍କୃତିର ସଙ୍କେତ ରୂପେ ପ୍ରତୀୟମାନ । ଝିଲେଇ ଓ ସିଂହପୁର ମଧ୍ୟରେ ମଞ୍ଜୁଷା ସନ୍ନିକଟ ପର୍ବତ ଶୃଙ୍ଗରେ କେତେକ ଗାଦି ବ୍ୟତୀତ ମହେନ୍ଦ୍ରରେ ଅସଂଖ୍ୟ ଶୂନ୍ୟପୀଠ ବିଦ୍ୟମାନ । ରୁମ୍ନା, ବୁଡାର ସିଂ ଅଞ୍ଚଳରେ ବୃକ୍ଷଗୁମ୍ଫାରେ ଅବଧୂତ ଧୁନି ଲଗାଇ ଭଜନ କରିବା ଦୃଷ୍ଟିକୁ ଆସେ ।

ମହିମା ଧର୍ମ ଇତିହାସ ସମ୍ପର୍କରେ କୁହାଯାଏ, ଏକଦା ମହିମା ଗୋସେଇଁ ଢେଙ୍କାନାଳ ଅଞ୍ଚଳରେ ଭ୍ରମଣ କରୁଥିବା ସମୟରେ ତାଙ୍କ ସହିତ କାଶୀରୁ ଆସିଥିବା ପଣ୍ଡିତ ମାଧବାନନ୍ଦ ଆଚାର୍ଯ୍ୟ ଧର୍ମତତ୍ତ୍ୱ ସମ୍ବନ୍ଧୀୟ ବିତର୍କ କରିଥିଲେ । ଆଚାର୍ଯ୍ୟଙ୍କ ସମସ୍ତ ଯୁକ୍ତିକୁ ଗୋସେଇଁ ଖଣ୍ଡନ କରିଦେବାରୁ ମାଧବାନନ୍ଦ ତାଙ୍କଠାରୁ ସତ୍ୟ-ମହିମା

(୨୯) ଓଡ଼ିଶାରେ ମହିମାଧର୍ମ : ଶ୍ରୀ ଚିତ୍ତରଞ୍ଜନ ଦାସ, ବିଦ୍ୟାଭବନ, ବିଶ୍ୱଭାରତୀ, ଶାନ୍ତିନିକେତନ, ପୃ ୩୭

* ଏଠାରେ ମହିମା ଗାଦୀ ଅଛି ।

ଧର୍ମର ବ୍ରହ୍ମଜ୍ଞାନ ଉପଦେଶ ଗ୍ରହଣ କରିଥିଲେ । ପରେ ନୃସିଂହବାବାଙ୍କ ଠାରୁ ସତ୍ୟ ମହିମା ଧର୍ମର ବ୍ରହ୍ମଜ୍ଞାନରେ ମୁଗ୍ଧ ହୋଇ ଦୀକ୍ଷା ଗ୍ରହଣ କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଗଙ୍ଗାଧର ମିଶ୍ର, ଧର୍ମୁ ଦାସ ଓ ପୁରୁଷୋତ୍ତମ ଦାସ ନାମକ ତିନିଜଣ ଚୈତନ୍ୟ ଧର୍ମାବଲମ୍ବୀ ସୁକନ୍ଦାଠାରେ ମହିମା ଗୋସେଇଁଙ୍କୁ ଭେଟିଲେ । ସେଠାରୁ ସତ୍ୟ ମହିମା ଧର୍ମର ଉପଦେଶ ଗ୍ରହଣ କରି ପୂର୍ବଗୃହୀତ ସକଳ ବେଶଭୂଷା (ମାଳା, ତିଳକ ଓ ଉପବୀତ) ପରିତ୍ୟାଗ କଲେ ଓ ତା'ର କିଛିଦିନ ପରେ ନୃସିଂହବାବାଙ୍କ ଠାରୁ ଅବଧୂତ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କଲେ । ଏହିପରି ଗୋବିନ୍ଦବାବାଙ୍କ ଠାରୁ ଆରମ୍ଭ କରି ନନ୍ଦବାବାଙ୍କ ପର୍ଯ୍ୟନ୍ତ ଅବଧୂତ ସନ୍ନ୍ୟାସୀ ସିଦ୍ଧାଶ୍ରମ ପଚ୍ଛାରେ ସର୍ବମୋଟ ବର୍ତ୍ତମାନବେ ଜଣ 'ବଲ୍‌କଲ ବାନା' ଗ୍ରହଣ କଲେ । କ୍ରମେ ଗଞ୍ଜାମ, ସମ୍ବଲପୁର ଓ ଅନୁଗୁଳରେ ମଧ୍ୟ ମହିମାଧର୍ମର ପ୍ରଚାର ହେଲା । (୩୦)

ଶୈବ, ବୈଷ୍ଣବ, ବୌଦ୍ଧ, ତାନ୍ତ୍ରିକ ପରମ୍ପରାରେ ଯେଉଁ ସାଧନାଶ୍ରମ, ତାହା ଏହି ଧର୍ମର ଅନୁଗାମୀ ନହେଲେ ମଧ୍ୟ, ଭାଗବତରେ ଅବଧୂତଙ୍କ ଚବିଶଗୁରୁ ଓ ପଶୁରାମଙ୍କ ଅବଧୂତ ବେଶ ଇତ୍ୟାଦିକୁ ଦେଖିଲେ; ଏ ଅଂଚଳ ସକଳ ପ୍ରକାର ସଂସ୍କୃତିକୁ ଗ୍ରହଣ କରି ମାର୍ଜିତ ହେବା ପାଇଁ ଚେଷ୍ଟିତ । ମହେନ୍ଦ୍ରାଞ୍ଚଳରେ ଅବଧୂତ ସନ୍ନ୍ୟାସୀଙ୍କ ସମ୍ପର୍କରେ ଆସି ଏଠାକାର ଲୋକମାନେ, ଭଜନ ଓ ଧୂନପାଇଁ ଆୟୋଜନ କରିଥାଆନ୍ତି । ଅଧୁନା ଶବର ସମ୍ପ୍ରଦାୟରେ ଅନ୍ୟାନ୍ୟ ସଂସ୍କୃତି ମଧ୍ୟରେ ମହିମା ଧର୍ମର ପଦ୍ଧତି ଅନୁସରଣ କରି ତଦ୍ରୂପ ଦିନଚର୍ଯ୍ୟା କରନ୍ତି । ଏଥିରୁ ଅନୁମିତ ଯେ ଏ ଅଞ୍ଚଳରେ ଏହାର ପ୍ରଭାବ ସୁସ୍ପଷ୍ଟ ।

ଏହି ସାଧନା ପୀଠ ମହେନ୍ଦ୍ରଗିରି ବୌଦ୍ଧ ସିଦ୍ଧାନ୍ତ, ଜୈନ ସିଦ୍ଧାନ୍ତ ଏବଂ ଅବଧୂତ ତତ୍ତ୍ୱସହ ବହୁପୂର୍ବରୁ ପରିଚିତ; ଏହା ଦକ୍ଷିଣାମୂର୍ତ୍ତିଙ୍କ ସିଦ୍ଧାନ୍ତ ପ୍ରଚାରରୁ ପ୍ରମାଣିତ । ଦକ୍ଷିଣ ଭାରତର କର୍ଣ୍ଣୋଲ ଶିଳାଲେଖରେ ଖୋଦିତ 'ସିଦ୍ଧାନ୍ତମ୍'କୁ ଭିତ୍ତିକରି ଐତିହାସିକ ଗଣ ମତ ଦିଅନ୍ତି ଏହି ସିଦ୍ଧାନ୍ତ ଆଜକୁ ପାଞ୍ଚହଜାର ବର୍ଷ ପୂର୍ବେ ମହେନ୍ଦ୍ରଗିରିରେ ଦକ୍ଷିଣାମୂର୍ତ୍ତିଙ୍କ ଦ୍ୱାରା ପ୍ରଚାରିତ ହୋଇଥିଲା । (୩୧) (ପ୍ଲେଟ୍ ୬-୭)

---

(୩୦) ଓଡ଼ିଶାରେ ମହିମାଧର୍ମ : ଶାନ୍ତିନିକେତନ । —ଏକନ—

(୩୧) Yoga Dakshina Murty, otherwise called as Mauna Murthy by Madam Blavatsky, sitting underneath a banyan tree in Mahendragiri of Srikukulam Dist. Boarder. Andhra Pradesh preached his siddhanta philosophy much enrlier than the Mohenjodaro-Harappa civilisation.'

ଏହି ସିଦ୍ଧାନ୍ତ ପ୍ରବନ୍ଧରେ ଅଗ୍ରତରେ ଏହି ମହେନ୍ଦ୍ରଗିରି ସାଧନାପୀଠରେ ସାଧକମାନଙ୍କ ଦ୍ୱାରା ଲଭିତ ଉଚ୍ଚକୋଟୀର ଆଦର୍ଶ ପ୍ରସ୍ତୁତ, ତାହା ଅନ୍ୟାନ୍ୟ ସାଧନାପୀଠମାନଙ୍କ ବର୍ଣ୍ଣନାରେ ସ୍ପଷ୍ଟ । ଏହି ସିଦ୍ଧାନ୍ତ ମହେନ୍ଦ୍ରୋଦାରେ ସଭ୍ୟତାଠାରୁ ବହୁପ୍ରାଚୀନ । (୩୨)

(୩୨) Teacher Dakshinamurthy having given was first ever sermon on the Mount in Mahendragiri much earlier than the inception of the vedas. This Mahendragiri has been identified as the top most hillock in Srikakulam District on the boarder about 5000 feet high over looking the sea. Even to-day, the hill tribes in the area consider it as the most ancient Siva temple and all of them usually gather there on Mahasivarathri day to celebrate the festival.

Yoga or Yaga

Published on the occasion of H. H. Sri Sankaracharya of Kanch. 75th Anniversary, 31 8.1982

Ref T.D.T. Tirupati.



## ଷଷ୍ଠ ପରିଚ୍ଛେଦ

# କିମ୍ବଦନ୍ତୀରେ ମହେନ୍ଦ୍ରଗିରିର ମାହାତ୍ମ୍ୟ

ଗବେଷଣାସମ୍ମତ ଉପାଦାନ ଉପରେ ନିର୍ଭର କରି ଇତିହାସ ଲେଖାଯାଏ । ତେବେ ଯେଉଁସ୍ଥଳରେ ଐତିହାସିକ ଉପାଦାନ ଏକାନ୍ତ ଅଭାବଥାଏ, ସେ ସ୍ଥଳରେ କିମ୍ବଦନ୍ତୀ ଉପରେ ଐତିହାସିକ ଭିତ୍ତିଭୂମି ପ୍ରତିଷ୍ଠା କରାଯାଏ । ସବୁ କିମ୍ବଦନ୍ତୀର ସତ୍ୟତା ନଥାଏ, କିମ୍ବା ସବୁ କିମ୍ବଦନ୍ତୀ ମିଥ୍ୟା ଉପରେ ପ୍ରତିଷ୍ଠିତ ନୁହେଁ । ଗୋଟିଏ ଗ୍ରେଟ ଘଟଣାକୁ ନେଇ କିମ୍ବଦନ୍ତୀ ଶାଖାପ୍ରଶାଖା ମେଲିଥାଏ ସତ, କିନ୍ତୁ ସେଥିରେ କେତେକାଂଶରେ ମୌଳିକତା ବା ସତ୍ୟତା ରହିଛି, ତାହା ଖୋଜି ବାହାର କରିବା ସହଜସାଧ୍ୟ ନହେଲେ ମଧ୍ୟ ଅସମ୍ଭବ ନୁହେଁ ।

ମହେନ୍ଦ୍ରର ଐତିହାସିକ ଓ ସାଂସ୍କୃତିକ ପରମ୍ପରା ଲକ୍ଷ୍ୟ କଲେ, ଇତିହାସରେ ଲିପିବଦ୍ଧ ହୋଇନଥିବା ଏମିତି ଅନେକ ଘଟଣା ଲୋକକାହାଣୀ ତଥା କିମ୍ବଦନ୍ତୀରୁ ଦୃଷ୍ଟିଗୋଚରକୁ ଆସେ ଯାହା ଏହି ସ୍ଥାନର ମହତ୍ତ୍ୱକୁ ଶତଗୁଣିତ କରିଦିଏ । ଏସବୁ କାହାଣୀର ସତ୍ୟତା ଯାହାହେଉ ପଛକେ ନିଆଁ ନଥିଲେ ଧୂଆଁ ନଥିଲାଭଳି ସେସବୁକୁ ଅବଜ୍ଞା ବା ଉପେକ୍ଷା କରିହେବ ନାହିଁ । ତେବେ ଗ୍ରନ୍ଥର କଳେବର ବୃଦ୍ଧି ଦୃଷ୍ଟିରୁ ଏଠାରେ ମାତ୍ର କେତୋଟି ଉପାଖ୍ୟାନ ସଂକ୍ଷେପରେ ଅବତାରଣା କରାଯାଉଛି ।

### (୧) ପରମହଂସ ଖୋଲର ପୂର୍ବକଥା : *

ପାରଳା ରାଜ୍ୟର ନ'ଟି ଗଡମାନଙ୍କ ମଧ୍ୟରେ ଜିରାଙ୍ଗଗଡ ପ୍ରଧାନ ଅଟେ । ବଳଦେବଜୀଉ ଏଠାକାର ଗଡ଼ଦେବତା । ତେଣୁ ତୀର୍ଥଯାତ୍ରୀ, ଭକ୍ତ, ସନ୍ଥଜନବୃନ୍ଦ ଓ ପର୍ଯ୍ୟଟକ ଯେ କେହି ହେଉ ଜିରାଙ୍ଗ ବଳଦେବଙ୍କ ଦର୍ଶନ ବିନା ମହେନ୍ଦ୍ର ଯାତ୍ରା କରନ୍ତି ନାହିଁ ।

୧୯୪୬ ମସିହାର ଘଟଣା । ଅଭିରାମ ଦାସ ବାବାଜୀ ପଦାର୍ପଣ କଲେ ଜିରାଙ୍ଗରେ । ସେତେବେଳକୁ ସେଠାରେ ହଇଜାର ପ୍ରାବଲ୍ୟ ଦେଖାଦେଇଥାଏ ।

* ଏହି ଗଡର ଦୁର୍ଗ ଅଧିକାରୀ ଶ୍ରୀ ରାମଶଙ୍କର ବିଶୋୟୀଙ୍କଠାରୁ ମହେନ୍ଦ୍ରର ପରମହଂସ ଖୋଲ୍ ସମ୍ପର୍କୀୟ ବିବରଣୀ ପ୍ରାପ୍ତ ।

ଗ୍ରାମବାସୀଙ୍କ ଅନୁରୋଧରେ ବାବାଜୀ ରୋଗୀମାନଙ୍କୁ ସିନ୍ଦୁର ଟୋପାଏ ଲେଖାଏଁ ଲଗାଇଦେଲେ ଓ ଗୋଟିଏ କୁଣ୍ଡରେ ସାମାନ୍ୟ ଫୋଡ଼ିଦେଲେ । ସମସ୍ତେ ହଇଜାରୁ ମୁକ୍ତ । ଲୋକେ ତାଙ୍କୁ ଧନ୍ୟ ଧନ୍ୟ କହିଲେ । ଏହାପରେ ଅଭିରାମଜୀ ଚାଲିଲେ ମହେନ୍ଦ୍ରଗିରି ଅଭିମୁଖେ, ତପଶ୍ଚରଣ ନିମନ୍ତେ । କୁନ୍ତୀ (ଗୋକର୍ଣ୍ଣେଶ୍ୱର) ମନ୍ଦିର ସମ୍ମୁଖରେ ସାଧନାରେ ରତ ରହିଲେ । ସେ ସବୁଦିନ ସେଠାରେ ୧୦ । ଲିଙ୍ଗ ଦର୍ଶନ ପରେ ନିଜ ଗୁମ୍ଫାକୁ ଚାଲିଯାଆନ୍ତି । ଅକସ୍ମାତ୍ ଖବର ପ୍ରଚାରିତ ହୋଇଗଲା ଯେ ଜଣେ ସାଧୁ ସୌରମାନଙ୍କୁ ଧରି ଜଙ୍ଗଲ କାଟି ପକାଉଛନ୍ତି । ସେତେବେଳକୁ କେତେକ ଲୋକ ସମ୍ବର ଶିକାର କରୁଛନ୍ତି ବୋଲି ମଧ୍ୟ ଗୁଜବ ହୋଇଥିଲା । ଡ଼. ଏଫ୍. ଓ. ବେନାର୍ଜି ସାହେବ ଜଣଙ୍କ ଆସି ଏଠାରୁ କେତେକ ପାଇକଙ୍କୁ ସାଙ୍ଗରେ ନେଇ କଇଁପୁର ଗଲେ ଓ ସେଠାରୁ ପର୍ବତାରୋହଣ କରି କୁନ୍ତୀଦେଉଳ (ଗୋକର୍ଣ୍ଣେଶ୍ୱର) ସମ୍ମୁଖରେ ସୁନ୍ଦର ବଗିଚାଟିଏ ଦେଖିଲେ । ତା ସମ୍ମୁଖରେ ସେ ଦେଖିଲେ ଧ୍ୟାନମଗ୍ନ ବ୍ୟକ୍ତିଙ୍କୁ । ତାଙ୍କୁ ବନ୍ଦୀ କରିବା ଦୂରରେ ଥାଉ ଯୋତା ଖୋଲି ବାହାର କରି ସାଷ୍ଟାଙ୍ଗ ପ୍ରଣିପାତ ହୋଇଥିଲେ । ତା'ପରେ ଅଭିରାମବାବୁ କରମଲା ଚାଲିଗଲେ ଓ ପରବର୍ତ୍ତୀ-କାଳରେ ସେ ପରମହଂସ ପଦବୀରେ ଭୂଷିତ ହେଲେ । ସେହି ଗୁମ୍ଫାଟି ବର୍ତ୍ତମାନ 'ପରମହଂସ ଗୁମ୍ଫା' ନାମରେ ଅଭିରାମ ପରମହଂସଙ୍କ ସାଧନାର ସ୍ମାରକୀ ବହନ କରେ ।

## (୨) ଭୀମାସୁରର ଶୃଙ୍ଗଭଙ୍ଗ :

ମହେନ୍ଦ୍ରଗିରି ଶିଖରରେ ଯେଉଁ ଦାରୁବ୍ରହ୍ମ ଶୈଳ ରହିଛି ତା'ର ପଶ୍ଚିମ ଭାଗେ ଗୋଟିଏ ଶୃଙ୍ଗ ଦେଖାଯାଏ । ସେହି ଶୃଙ୍ଗର ଦୁଇପାର୍ଶ୍ୱରେ ଦୁଇଟି ଗର୍ତ୍ତ ରହିଛି । ଯେକୌଣସି ଆଦିବାସୀଙ୍କୁ ପଚାରିଲେ କହନ୍ତି, "ଭୀମାସୁର ନାମରେ ଜଣେ ଅସୁର ତାର ଦୁଇଶିଙ୍ଗରେ ଭୋଲାନାଥ ଶିବଙ୍କୁ ତାଙ୍କ ଆସନରୁ ଉଠାଇ ଚାଲିଆସିଲା । ସେତେବେଳେ ଭୀମ ତାଙ୍କୁ ହତ୍ୟା କରିଥିଲେ । ସେହି ଶିଙ୍ଗ ଟାଳିବା ସ୍ଥାନ ଦୁଇଟି ଗର୍ତ୍ତ ସ୍ୱରୂପ ଅଦ୍ୟାପି ରହିଛି ।"

ବର୍ତ୍ତମାନ ଶବର ଜାତି ମଧ୍ୟରେ ଭୀମା ଶବର ମହେନ୍ଦ୍ରତନୟାର ଉତ୍ତର ପାର୍ଶ୍ୱରେ ଦେଖାଯାଆନ୍ତି । ଆଦିବାସୀମାନେ କହନ୍ତି କି ଭୀମାସୁର ଏଠାରେ ରାଜାଥିଲେ । (୧)

---

(୧) ଲୋକ ବିଶ୍ୱାସ : ଶ୍ରୀ ରାଜେନ୍ଦ୍ର ପ୍ରସାଦ ଭୂୟାଁ, ସରପଞ୍ଚ ଗଙ୍ଗାବାଡ଼ ପଞ୍ଚାୟତ, ମହେନ୍ଦ୍ରଗିରିଙ୍କ ବିବୃତି ।

## (ଘ) ଜିରଙ୍ଗ ବଳଦେବ :

ଶ୍ରୀ ଶ୍ରୀ ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର (୧) ପାରଳା ମହାରାଜାଙ୍କ ଦୁର୍ଗ (ଗଡ଼) ମାନଙ୍କ ମଧ୍ୟରେ ଶକ୍ତିଶାଳୀ ଦୁର୍ଗ ଜିରଙ୍ଗର ସୈନ୍ୟବାହିନୀ ଶ୍ରେଷ୍ଠଥିଲେ । 'ଜି'ର ଅର୍ଥ ମସ୍ତ ଓ 'ରାଂ'ର ଅର୍ଥ ଘୋଡ଼ା । ତେଣୁ ଜିରାଂ କହିଲେ ଗଜପତିଙ୍କ ମସ୍ତାଧିକାରୀ ସୈନ୍ୟ ।

ପ୍ରାୟ ତିନିଶ ବର୍ଷ ପୂର୍ବର ଘଟଣା । ପାରଳା ମହାରାଜା ମୁସଲମାନମାନଙ୍କ ଆକ୍ରମଣ ଓ ଲୁଣ୍ଠନ ଭୟରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପାରଳାରୁ ନେଇ ଜିରାଂ ଦୁର୍ଗରେ ଲୁଚାଇ ରଖିଥିଲେ । ଜିରାଂ ଗ୍ରାମ ସେତେବେଳେ ପର୍ବତ ଉପରେ ଥିଲା । ଏହି ତ୍ରିମୂର୍ତ୍ତିଙ୍କୁ ବନରେ ପୂଜା କରାଯାଉଥିଲା ଏବଂ ବର୍ଷାକାଳରେ ଗଛ ଉପରକୁ ନେଇ ଲୁଚାଇ ରଖାଯାଉଥିଲା । ଏହି ଅବସରରେ ରାମଗିରି ଲୋକେ ଜଗନ୍ନାଥଙ୍କୁ ଚୋରିକରି ନେଇଗଲେ । ରାମଗିରି ଓ ଜିରାଂ ମଧ୍ୟରେ ଯୁଦ୍ଧ ହେଲା । ଜବାଟ ଗାଁ ନିକଟରେ ଜିରାଂ ହାରିଲା । ଜଗନ୍ନାଥ ରହିଲେ ରାମଗିରିରେ । ସେଠାରୁ ତନେ ଗୁରଣ୍ଡି ଅଞ୍ଚଳର ବ୍ୟବସାୟୀ ଜିରାଂରେ ଶିଅଳି ପତ୍ରାଚ୍ଛାଦିତ ମୂର୍ତ୍ତିଙ୍କୁ ମୂଲ୍ୟବାନ ଜିନିଷ ସୁନା-ରୂପା ମନେକରି ସୁଭଦ୍ରାଙ୍କୁ ଚୋରିକରି ନେବାବେଳେ, କଇଁପୁର ନିକଟରେ ଧରା ପଡ଼ିଲେ । ସେଠାରେ ସଂଘର୍ଷ ହେଲା । ସେହି ସ୍ଥାନ ସୁଭଦ୍ରାପୁର ନାମରେ କଇଁପୁର ନିକଟରେ ଅବସ୍ଥିତ । କିନ୍ତୁ ସୁଭଦ୍ରାଙ୍କୁ ଉଦ୍ଧାର କରାଯାଇ ପାରିଲା ନାହିଁ । ସେ ଗୁରଣ୍ଡି ନିକଟବର୍ତ୍ତୀ ଏକ ଛକଜାଗାରେ ସ୍ଥାପିତ ହେଲେ । ଏହି ସ୍ଥାନ ଏବେ ସୁଭଦ୍ରାନାରାୟଣ ପେଣ୍ଠ ନାମରେ ପରିଚିତ । ଗଜପତି ଜିରାଂରୁ ବଳଦେବଙ୍କୁ ନେବାପାଇଁ ଯେତେବେଳେ ଧ୍ୟାନ କଲେ, ବଳଦେବ ତାଙ୍କୁ ସ୍ୱପ୍ନାଦେଶ ଦେଲେ ଯେ ପର୍ଶୁରାମ କ୍ଷେତ୍ରର ଦ୍ୱାର ରକ୍ଷକ ଭାବେ ସେ ଜିରାଂରେ ହିଁ ରହିବେ । ସେଥିପାଇଁ ବଳଦେବଙ୍କ ସେବା, ଅର୍ଚ୍ଚନା ସକାଶେ ରାଜା କୁରୁନାଙ୍ଗ ଗ୍ରାମରେ ଜାଗିର ଶକ୍ତି ଦେଲେ ।

ଗଜପତି ମହାରାଜା ପୁରୀର ବିଗ୍ରହଠାରୁ ବର୍ତ୍ତ ଚିତ୍ର କରାଇ ପୁରୀରେ ହିଁ ପ୍ରାଣ ପ୍ରତିଷ୍ଠା ପୂର୍ବକ ପାରଳାରେ ସ୍ଥାପନ କଲେ ସିନା ବଳଦେବ କିନ୍ତୁ ଜିରାଙ୍ଗରେ ରହିଗଲେ । ଏହି ପର୍ଶୁରାମ କ୍ଷେତ୍ରରେ ଅନନ୍ତ ଶୟନରେ ଶେଷଶାୟୀ ବାସୁକୀଭଳି ବଳଦେବ ରହିଛନ୍ତି । ପ୍ରତିବର୍ଷ ରଥଯାତ୍ରା ସମୟରେ ତିରୁପତି ଓ ସୀମାଚଳ ଭଳି ଏଠାରେ ଲୁଣ୍ଠିତ ମସ୍ତକରେ ଲକ୍ଷ ଲକ୍ଷ ଲୋକ ମାନସିକ ସିଦ୍ଧି ନିମିତ୍ତ ପ୍ରାର୍ଥନା କରିଥାନ୍ତି । ବଳଦେବଙ୍କର ଆଶୁଫଳଦାତା ।

---

(୧) ମହେନ୍ଦ୍ରତନୟା ନଦୀକୂଳରେ ପୁରୁଣାପାଟଣାରେ ପ୍ରତିଷ୍ଠିତ ପଞ୍ଚଲିଙ୍ଗେଶ୍ୱର ମନ୍ଦିର ଗାତ୍ରରେ ପାରଳାରାଜାଙ୍କ ପ୍ରଶସ୍ତି ଖୋଦିତ ।

(୪) ମଞ୍ଜୁଷାରାଜାଙ୍କ ଅଦ୍ଭୁତ ଅନୁଭୂତି : (୨)

ଜନୈକ ମହନ୍ତ ମହାରାଜ ଜଣେ ମାତାଜୀଙ୍କସହ ସାଧନାର୍ଥେ ସୀମାଞ୍ଚଳଠାରୁ ମହେନ୍ଦ୍ରାଚଳ ଆଗମନ କଲେ । ବାରଘର ଉପରେ ଥିବା ଗୋଟିଏ ଗୁହାରେ ଆଶ୍ରୟ ନେଲେ । ଶ୍ରେଷ୍ଠ କୁଡ଼ିଆରେ ମାତାଜୀ ରହନ୍ତି । ଗୁହାରେ ମହନ୍ତଙ୍କ ସାଧନା ଚାଲନ୍ତି । ଏକଥା ତତ୍କାଳୀନ ମଞ୍ଜୁଷା ରାଜାଙ୍କ କାନକୁ ଗଲା । ରାଜା ସାହେବ ଏହି ସନ୍ନ୍ୟାସୀ ଓ ସନ୍ନ୍ୟାସିନୀଙ୍କୁ ଦର୍ଶନ ନିମନ୍ତେ ମହେନ୍ଦ୍ରକୁ ଗଲେ । ରାଜାଙ୍କୁ ବାବାଜୀ ପଚାରିଲେ ଆପଣ କୌଣସି କାଞ୍ଚନ ଧରିଛନ୍ତି କି ? ରାଜା ସାହେବ ନିଜେ ଧରିଥିବା ଶସ୍ତ୍ରାଧାରରେ ନିର୍ମିତ ନାଗଦାନଟି ଦେଖାଇଲେ । ସାଧୁ ମହାରାଜ ସେଇଟିକୁ ଗୁହାର ଦ୍ୱାରଦେଶରେ ଥିବା ଗୋଟିଏ ପ୍ରସ୍ତର ସ୍ତମ୍ଭରେ ସ୍ପର୍ଶ କରି ଦିଅନ୍ତେ ତାହା ସୁନାରେ ପରିଣତ ହେଲା । ତତ୍ପରେ ସେ ରାଜାଙ୍କୁ ଚକ୍ଷୁ ବନ୍ଦକରି ଏକ ଗୁପ୍ତ ସ୍ଥାନକୁ ନେଇଗଲେ । ସେଠାରେ ମହାରାଜା ଏକ ବିରାଟ ଯଜ୍ଞାନୁଷ୍ଠାନ ଦେଖିଲେ ଓ ମୁଗ୍ଧ ହୋଇ ଯୋଗୀ ସାଧକଙ୍କ ଚରଣରେ ରାତ୍ରି ଯାପନ କଲେ । ପ୍ରାତଃ ସମୟରେ ଦେଖିଲେ ଯେ, ସେ ଆଉ ପର୍ବତ ଶୃଙ୍ଗରେ ନାହାନ୍ତି, ନିଜ ରାଜ ମହଲରେ ।

ଆଦ୍ୟାପି କାର୍ତ୍ତିକ ମାସରେ ମହେନ୍ଦ୍ରରେ ତର୍ପଣଧ୍ୱନି ଶୁଭେ ବୋଲି ଲୋକ ବିଶ୍ୱାସ ରହିଛି ।

ନିଜେ ଲେଖକ ମଧ୍ୟ ରାତ୍ରିଜାଗର ରହି ଏହା ଉପଲବ୍ଧି କରିଛନ୍ତି ।

(୫) ଜାନ ଜାଗିର ହରାଇଲେ :

ମହେନ୍ଦ୍ରରେ ଶିବଲିଙ୍ଗ ପୂଜା ବ୍ରାହ୍ମଣ, ମାଳି ଓ ଶବରମାନଙ୍କ ଦ୍ୱାରା ହୁଏ । ଶବର ପୂଜକଙ୍କୁ ଜାନ କୁହାଯାଏ । ଏହି ପୂଜକମାନେ ଗଜପତିଙ୍କ ପୂଜକମାନଙ୍କ ଅଧୀନରେ ପୂଜକ ହିସାବରେ କର୍ମ କରିଥାଆନ୍ତି । ବ୍ରିଟିଶ ଶାସନ କାଳରେ ମଞ୍ଜୁଷାର ପାଗଳ ରାଜା ଏହି ଅଞ୍ଚଳରୁ ପୁରାତନ ବଗ୍ରହଗୁଡ଼ିଏ ନେଇ ମଞ୍ଜୁଷା ପୁରାହାଡ଼ ଗଡ଼ ନିକଟର ବାସୁଦେବ ମନ୍ଦିରରେ ରଖିଥିଲେ । ରାଜାଙ୍କ ପାଗଳାମି ଦେଖି ବ୍ରିଟିଶ୍ କଂପାନୀ ଦ୍ୱାରା ତାହା ଇଂଲଣ୍ଡର ମ୍ୟୁଜିୟମ୍‌କୁ ହସ୍ତାନ୍ତରିତ ହେଉଥିଲା । ଏହି ଖବର ଜାନ ପାଇବା ସଙ୍ଗେ ସଙ୍ଗେ ସେ ମନ୍ଦିର ନିକଟରେ ଧାରଣା ଦେଲା । ଗୋକର୍ଣ୍ଣେଶ୍ୱରଙ୍କର ପ୍ରସାଦରୁ ସେ ଚୋରି କରିବା ବ୍ୟକ୍ତିଙ୍କୁ ଧରିବା ପାଇଁ ସଫଳ ହେଲା । ମଞ୍ଜୁଷାର ପାଗଳ ରାଜା ଗଞ୍ଜାମ କଚେରି ଶାବଳରେ ଭାଙ୍ଗିବା ସମୟରେ ରାଜା ଓ

---

(୨) ଏ ଘଟଣା ପୁରୋହିତ ବାସୁଦେବ ପାଠୀଙ୍କଠାରୁ ଶୁଣି ସ୍ତମ୍ଭୀଭୂତ ହେବାକୁ ପଡ଼ିଲା ।

ଜାନଙ୍କ ମଧ୍ୟରେ ଧସ୍ତାଧସ୍ତି ଫଳରେ ଉଭୟେ ଉଭୟଙ୍କଠାରୁ ମାଡ଼ ଖାଇଥିଲେ । ତା ପରେ ରାଜା ପ୍ରତିଶୋଧ ପରାୟଣ ହୋଇ ମହେନ୍ଦ୍ରର ପାଦଦେଶରେ ମାବାଗ୍ରାମ ନିକଟରେ ଥିବା ଜାଗିର ଜାନଠାରୁ କାଢି ଦେଇଗଲେ ।

## (୭) ଅଶ୍ରୁଫଳଦାତା ଗୋକର୍ଣ୍ଣେଶ୍ୱର :

ଶ୍ରୀକାକୁଲମ୍‌ର ଜନୈକ ବ୍ୟକ୍ତି ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇଥାଆନ୍ତି । ଥରେ ସେ ସ୍ୱପ୍ନାଦେଶ ପାଇଲେ ଯେ ଏହି ଅସାଧ୍ୟ ରୋଗରୁ ମୁକ୍ତ ହେବାପାଇଁ ତାଙ୍କୁ ଗୋକର୍ଣ୍ଣେଶ୍ୱର ଓ ଯୁଧିଷ୍ଠିର ମନ୍ଦିରରେ ଭାଗବତ ପାଠ କରିବାକୁ ହେବ । ତଦନୁଯାୟୀ ସେ ମହେନ୍ଦ୍ରାଭିମୁଖେ ବାହାରିଲେ । କିନ୍ତୁ ବାଟବଣା ହୋଇ ପହଞ୍ଚିଗଲେ ବାରଘର ଗ୍ରାମ ନିକଟରେ । ସେଠାରେ ଜଣେ ଗୋପାଳ ବାଳକ ତାଙ୍କୁ ବାଟ ଦେଖାଇ ଗୋକର୍ଣ୍ଣେଶ୍ୱର ମନ୍ଦିର ନିକଟରେ ପହଞ୍ଚାଇ ଥିଲା ଓ ପନ୍ଦର ଦିନଯାଏ ତାଙ୍କପାଇଁ ଦୁଗ୍ଧ ଯୋଗାଇ ଥିଲା । କିନ୍ତୁ ବ୍ୟକ୍ତି ଜଣକ ରୋଗମୁକ୍ତ ହୋଇ ପିଲାଟିକୁ ତାହାର ପାଉଣା ଦେବାପାଇଁ ଖୋଜିଲା ବେଳକୁ ସେ ଅଦୃଶ୍ୟ ହୋଇଗଲା ନାହିଁ କି ତାର କୌଣସି ପତ୍ତା ମିଳିଲା ନାହିଁ ।

## (୭) କାଠୁରିଆର ରୋଗମୁକ୍ତି :

ବାସ୍ତବିକ ଗୋକର୍ଣ୍ଣେଶ୍ୱରଙ୍କ ମହାତ୍ମ୍ୟର ପଟାନ୍ତର ନାହିଁ । ତାଙ୍କଠାରେ ଶରଣାପନ୍ନ ହୋଇ ଅନେକ ଅପୁତ୍ରିକ ସନ୍ତାନ ଲାଭ କରିଛନ୍ତି । ଅନେକ ରୋଗୀ ରୋଗ ମୁକ୍ତ ହୋଇଛନ୍ତି । ଜନୈକ କାଠୁରିଆ ତା ଗୋଡରେ ଆଘାତ ପାଇ ସେ (ଗୁରଣ୍ଡି ଡାକ୍ତରଖାନାରେ ଚିକିତ୍ସା ପାଇଁ ଭର୍ତ୍ତିହେଲା । ଡାକ୍ତର ମହାଶୟ ଗୋଡଟି କାଟି ଦେବାପାଇଁ ପରାମର୍ଶ ଦେଲେ । କାଠୁରିଆ ରାଜି ନହୋଇ କେବଳ ଗୋକର୍ଣ୍ଣେଶ୍ୱରଙ୍କ ଉପରେ ଭରସା ରଖି ସେ ମହେନ୍ଦ୍ରକୁ ଆସିଗଲା ଓ ନିକଟସ୍ଥ ଝରଣାର ଜଳ ଏବଂ ଔଷଧ ବୃକ୍ଷର ପତରପତ୍ର ଡ଼ାଳ ଛଅମାସ ମଧ୍ୟରେ ରୋଗରୁ ମୁକ୍ତ ହେଲା । ଡାକ୍ତର ବାବୁ ପରେ ଏ ଖବର ଶୁଣି ତାଙ୍କୁ ଦେଖିବାକୁ ଯାଇ ଗୋକର୍ଣ୍ଣେଶ୍ୱରଙ୍କୁ ପ୍ରାର୍ଥନା କରିବା ଘଟଣା ଗୁରଣ୍ଡି ଅଞ୍ଚଳରେ ଅଦ୍ୟାପି ମୁଖରିତ ।

## (୮) ସ୍ୱୟଂ ମହାଦେବ ଗୋକର୍ଣ୍ଣେଶ୍ୱରଙ୍କ ପ୍ରତିଷ୍ଠାତା :

ସତ୍ୟଯୁଗର କଥା । ଥରେ ମହାଦେବ ଯୋଗ ନିଦ୍ରାରୁ ଉଠି ପ୍ରାତଃ ସ୍ନାନ ଓ ନିତ୍ୟକର୍ମ ସମାପନପୂର୍ବକ ସୁରଗଙ୍ଗା କୂଳରେ ଇଷ୍ଟସିଦ୍ଧିଙ୍କୁ ଆରାଧନା କରି ସକଳ ବିଧିବିଧାନ ଅନୁଯାୟୀ ତର୍ପଣ କରିବା ସମୟରେ ପାଣିରୁ କୁଶଗୁଡ଼ିକ ଅନ୍ତର୍ଦ୍ଧାନ ହୋଇଗଲା । କ୍ରୋଧରେ ତ୍ରିଶୂଳ ଧରି ସେ ଏହାର କାରଣ ଜାଣିବାପାଇଁ ଯିବା

ସମସ୍ତରେ କପିଳା ଗାଈ କୁଣ୍ଡକ ଖାଉଥିବା ତାଙ୍କର ଦୃଷ୍ଟିଗୋଚର ହେଲା । ସେ କପିଳା ଗାଈର ମସ୍ତକ ତ୍ରିଶୂଳରେ ଛିନ୍ନ କଲେ । 'ଗୋ' ବଧର ବିଭିନ୍ନ ପ୍ରାୟଶ୍ଚିତ୍ତ ପାଇଁ ବିଧାନ ଚନ୍ଦ୍ରପ୍ରଦକ ମହାଦେବ ଗଙ୍ଗାକୂଳରେ ସାତ ଦିନ ଘୋର ତପସ୍ୟା କଲେ । ସେ ଜାଣିପାରିଲେ ଯେ ଗାଈର ଶରୀରଟି ସାଗରରେ ପଡିତ ଓ କର୍ଣ୍ଣଟି ମହେନ୍ଦ୍ରରେ ଅବସ୍ଥିତ । ତତ୍‌କ୍ଷଣାତ୍ ସେ ମହେନ୍ଦ୍ରକୁ ଆସି ସପ୍ତଯୁଗ ପର୍ଯ୍ୟନ୍ତ ତପସ୍ୟା କରି ଗୋହତ୍ୟା ପାପରୁ ମୁକ୍ତିଲାଭ କଲେ । ଗୋ କର୍ଣ୍ଣ ଯେଉଁଠାରେ ପଡ଼ିଥିଲା ସେଠାରେ ସେ ଶିବଲିଙ୍ଗ ପ୍ରତିଷ୍ଠା କରିଥିଲେ । ତାହା ବର୍ତ୍ତମାନ ଗୋକର୍ଣ୍ଣେଶ୍ୱର ନାମରେ ପରିଚିତ । (୧) ଗୋକର୍ଣ୍ଣେଶ୍ୱରଙ୍କ ମହିମା ଅପାର । ଶଙ୍କରଙ୍କ ବଚନରେ ଯାହା ସିଦ୍ଧ ହୁଏ, ସେହି ଫଳ ଏଠାରୁ ମିଳିଥାଏ । ତେଣୁ ସିଦ୍ଧ, ତପସ୍ୱୀ, ଯୋଗୀ, ସାଧକ ଓ ଦେବଗଣ ଆଦି ଆସି ଏଠାରେ ପୂଜା ଅର୍ଚ୍ଚନା କରି ଯାଇଥାଆନ୍ତି । ଗୋ କର୍ଣ୍ଣଙ୍କୁ ପୂଜା କଲେ ସାଧକ ନିଶ୍ଚିତ ଭାବରେ ସିଦ୍ଧିଲାଭ କରେ ।

## (୯) ରାମଖୋଲ :

ବାରଘର ଓ ଇନ୍ଦ୍ରକୁଣ୍ଡ ମଝିରେ ଥିବା ସ୍ଥାନଟି ରାମଖୋଲ । କିମ୍ବଦନ୍ତୀ ଅଛି— ରାମଚନ୍ଦ୍ର ମିଥିଳାରୁ ସମୁଦ୍ର ଦର୍ଶନ କରିବାପାଇଁ ମହେନ୍ଦ୍ର ପାଦଦେଶ ଦେଇ ବଙ୍ଗୋପସାଗରକୁ ଆସି ମହୋଦଧିର ସ୍ନାନଯାତ୍ରା ବାଜା ବଜାଇ ପର୍ଶୁରାମଙ୍କ ଆଶ୍ରମ ପାର୍ଶ୍ୱ ଦେଇ ଯାଉଥିଲେ । ହଠାତ୍ ପର୍ଶୁରାମ ଆଶ୍ରମରୁ ବାହାରି ସେମାନଙ୍କର ଶୋଭାଯାତ୍ରାକୁ ଅଟକାଇଲେ ଓ ସେଠାରେ ରାମ ଏବଂ ପର୍ଶୁରାମଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ହେଲା । ରାମଚନ୍ଦ୍ର ଜିତିଲେ ଓ ପର୍ଶୁରାମ ହାରିଲେ । ତଥାପି ଏହି ରାମଖୋଲ ନିକଟରେ ପର୍ଶୁରାମ ରହିଗଲେ । ପର୍ଶୁରାମଙ୍କୁ ଭେଟିବା ପାଇଁ ଅନେକ ଭକ୍ତ ମହେନ୍ଦ୍ର ଯାଉଥିଲେ ଓ ତାଙ୍କଠାରୁ ଦୀକ୍ଷା ନେଇ ଫେରିଥିଲେ । ତେଣୁ ଏହି ଅଞ୍ଚଳରେ ପ୍ରତିବର୍ଷ ଶ୍ରୀରାମ ନବମୀ ସମୟରେ ବହୁତ ଲୋକ କାନ୍ଧରେ ଚଢିଥିବା ହାଣ୍ଡି, ହସ୍ତରେ ପରଶୁ ଓ ଜାନୁରେ ଘଣ୍ଟିବାନ୍ଧି ରାମପର୍ଶୁରାମଙ୍କ ଯୁଦ୍ଧ ସାହାରେ ପ୍ରଚାର କରି ମୁଷ୍ଟିଭିକ୍ଷା କରିଥାନ୍ତି । ଏହି ଜାନୁଘଣ୍ଟି ପର୍ଶୁରାମ ଜାତିର ଲୋକ ମହେନ୍ଦ୍ରର ପାଦଦେଶରେ ବସବାସ କରିଥାଆନ୍ତି । ତାଙ୍କ ପୂର୍ବପୁରୁଷ ଯେଉଁ ହାଣ୍ଡି ଏହି ସ୍ଥାନରୁ ପୂଜାକରି ନେଇଥାଆନ୍ତି, ତାହା ଧରି ତାଙ୍କର ବଂଶଧରମାନେ ଜାନୁଘଣ୍ଟି ପର୍ଶୁରାମ ହିସାବରେ ଗ୍ରାମ ଗ୍ରାମ ବୁଲିଥାନ୍ତି । ସେମାନଙ୍କ କଣ୍ଠରୁ ବାହାରିଥାଏ "ଆରେ ଅପୂର୍ବିକ ବୋଲି ସିନା ତୋତେ ଛାଡ଼ିଦେଲି" । ଚକଟି, ମଞ୍ଜୁଷା ଓ ଗଜପତି ଅଞ୍ଚଳର ଏହି ଲୋକମାନେ ଲକ୍ଷପତି

---

(୧) ଗୋକର୍ଣ୍ଣେଶ୍ୱର ମେଳା —ହାଡୁ ସ୍ୱସ୍ତିଗୁରୁ, ଜଲନ୍ତର

ହେଲେ ମଧ୍ୟ ପର୍ଶୁରାମଙ୍କ ଆଦର୍ଶରେ କୂଳବେଉଷା ଜାନୁଘଣ୍ଟ ପର୍ଶୁରାମ ବେଶଧାରୀଙ୍କ ପରମ୍ପରାକୁ ରକ୍ଷା କରିଛନ୍ତି ।

## (୧୦) ପଞ୍ଚୁପାଣ୍ଡବ ଖୋଲ :

ପାଣ୍ଡବମାନଙ୍କର ବନବାସ କାଳରେ ମହେନ୍ଦ୍ରଗିରିରେ ସେମାନେ ମନ୍ଦିର ସବୁ ନିର୍ମାଣ କରିଥିଲେ । କିମ୍ବଦନ୍ତୀ ଅନୁଯାୟୀ ପାଣ୍ଡବମାନେ ସମୁଦ୍ର କୂଳେ କୂଳେ ଆସି ବୃନ୍ଦାରସିଙ୍ଗି ଜଙ୍ଗଲରେ ପ୍ରବେଶ କଲେ । ସେଠାରୁ ମହେନ୍ଦ୍ର ଶୃଙ୍ଗ ଅଧ ଛଡ଼ । ହନୁକୁଦା ପାହାଡ଼ ତଳେ ଅର୍ଥାତ୍ ଦାରୁବ୍ରହ୍ମ ଉପର ଦରେ ପର୍ବତ ଶ୍ରେଣୀର ନିମ୍ନରେ ଯେଉଁ ଖୋଲ ଅଛି ତା'ର ଉର୍ଦ୍ଧ୍ୱରେ ସମତଳ ସ୍ଥାନଟିଏ ଅଛି । ସେ ସ୍ଥାନରେ ମନ୍ଦିର ତୋଳାଇବା (ଚି : ନଂ-୫) ପାଇଁ ପାଞ୍ଚଭାଇ ଶିଆଳି ଲଟିଟିଏ ଧରି ତାଡ଼କେଶ୍ୱର ମନ୍ଦିର ନିକଟରୁ ଗତାଗତ ଉପରକୁ ଚଢ଼ିଲେ । କିନ୍ତୁ ପ୍ରଭାତ ହେବାରୁ କୁକ୍କୁଟ ରବ ଶୁଣି ସେଠାରୁ ଫେରିଆସି ପର୍ବତର ଅନ୍ୟପଟେ ଚଢ଼ିବା ପାଇଁ ଆୟୋଜନ କରିଥିଲେ । ପଞ୍ଚୁପାଣ୍ଡବ ଏହି ଫେରିବା ସ୍ଥାନରେ ହିଁ ମନ୍ଦିର ନିର୍ମାଣ ପାଇଁ ସ୍ଥିର କରିଥିଲେ । କିନ୍ତୁ ମାଢ଼ାଙ୍କୁ ଉପରକୁ ନେଇପାରି ନଥିବାରୁ ଠିକ୍ ପହଞ୍ଚିବା ପୂର୍ବରୁ ପକ୍ଷୀରବ ହେବା ଯୋଗୁଁ ଅମଙ୍ଗଳର ସୂଚନା ମନେକରି ଫେରିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ଭୀମସେନ ଅନ୍ୟପଟେ ଚାଲିଯାଇ ନିଜେ ମନ୍ଦିରଟିଏ ତିଆରି କରି ଦେଇଥିଲେ । ଅନ୍ୟ ଚାରିଭାଇ ଶୃଙ୍ଗର ସମତଳ ଅଞ୍ଚଳରେ ମନ୍ଦିର ତିଆରି କରିଥିଲେ । ତେଣୁ ପୂର୍ବ ସ୍ଥିରୀକୃତ ସ୍ଥାନରେ ମନ୍ଦିର ତୋଳା ନହେଲେ ମଧ୍ୟ ସେହି ଖୋଲର ନାମ ଅଦ୍ୟାପି ଶବରମାନେ ଶିଆଳିଲଟା ଖୋଲ ବା ପଞ୍ଚୁପାଣ୍ଡବ ଖୋଲ ନାମରେ ପରିଚିତ । ଏହି ସ୍ଥାନଟି ସର୍ବଦା ଦ୍ୱନ୍ଦ୍ୱ ସୃଷ୍ଟି କରିବା ସ୍ଥାନ ଅଟେ । ଯେତେ ପରିଚିତ ହେଲେ ସୁଦ୍ଧା ଏହି ରାସ୍ତାରେ ଯାତ୍ରୀପଥ ଭ୍ରଷ୍ଟ ହେବା ସ୍ୱାଭାବିକ । ଏହା ଗୋଟିଏ ଗୁପ୍ତଘାଟି ଅଟେ ।

## (୧୧) ଭୀମଙ୍କ ନିଶ୍ୱାସରେ ମନ୍ଦିରଟି ଫାଟିଲା :

ମହେନ୍ଦ୍ରଗିରିର ସର୍ବୋଚ୍ଚ ଶୃଙ୍ଗରେ ଏକ ମସ୍ତବଡ଼ ପଥରର ମନ୍ଦିର ଦେଖିବାକୁ ମିଳେ । ସ୍ଥାନୀୟ ଲୋକଙ୍କ ମତରେ ଏହା ପୂର୍ବେ ଅସୁର ଜାତିର ଲୋକମାନେ ନିର୍ମାଣ କରିଥିଲେ । ଏହା ଗ୍ରେନାଇଟ ପଥରରେ ତିଆରି । ହଠାତ୍ ଦେଖିଲେ ନଅଗୋଟି ପଥରରେ ତିଆରି ହେଲାଭଳି ଦିଶୁଛି । ମହାଭାରତରୁ ପ୍ରମାଣ ମିଳେ ଯେ ପଞ୍ଚପାଣ୍ଡବଙ୍କ ବନବାସ କାଳରେ ଭୀମସେନ ନିଜେ ଏହି ମନ୍ଦିର ତିଆରି କରିଥିଲେ । ପସନ୍ଦ ନହେବାରୁ ପଦାଘାତ କରି ଫଟାଇ ଦେଇଥିଲେ । ତାଙ୍କ ନିଶ୍ୱାସ ନିର୍ଗତ ବାୟୁ ଚାପରେ ମନ୍ଦିରଟି ଫାଟି ଯାଇଥିବା ସମ୍ପର୍କରେ ମଧ୍ୟ କିମ୍ବଦନ୍ତୀ ରହିଛି । କିନ୍ତୁ ଏହି ଫାଟ ବଜ୍ରପାତ ଯୋଗୁଁ ସମ୍ଭବ ବୋଲି ଇଷ୍ଟଇଣ୍ଡିଆ କମ୍ପାନୀ ରାଜତ୍ୱ କାଳରେ

କ୍ୟରେଟର କ୍ୟଟୋ ସାହେବ ମତପ୍ରଦାନ କରିଛନ୍ତି । ତଥାପି ଲୋକେ କହନ୍ତି "ଶ୍ରୀମ କଣ୍ଠାପରେ ମନ୍ଦର ଫାଟିଗଲା ।"

## (୧୨) ମଞ୍ଜୁଷା ଗଡର ଇତିବୃତ୍ତ :

ମହେନ୍ଦ୍ରର ଉତ୍ତର ଦିଗରେ ପଞ୍ଚନନ୍ଦ ଭୂମିରେ ପୁରୁଷପୁର ନାମକ ଗୋଟିଏ ରାଜ୍ୟଥାଏ । ସେଠାର କନିଷ୍ଠ ରାଜପୁତ୍ର ବାମନସିଂ ଦିଗ୍‌ବିଜୟ ଉଦ୍ଦେଶ୍ୟରେ ଦକ୍ଷିଣ ଦିଗକୁ ବାହାରିଲେ । ତାଙ୍କର ଦେବତା ଓ ବ୍ରାହ୍ମଣମାନଙ୍କ ଉପରେ ଭକ୍ତିଥାଏ । ସେ ଶୁଦ୍ଧ ଓ ବିଚ୍ଛିରବନ୍ତ ଥିଲେ । ଏଥିଯୋଗୁଁ ଅପ୍ରତ୍ୟାଶିତ ଭାବେ ସେ ମହେନ୍ଦ୍ର ପର୍ବତରେ ପହଞ୍ଚିଗଲେ । ଏଠାରେ ବାମନଙ୍କ କାମ, କ୍ରୋଧ, ଲୋଭ ଓ ସଂସାରିକ ଲୋପ ପାଇଲା ଓ ମନରେ ବୈରାଗ୍ୟ ଭାବର ଉଦ୍ରେକ ହେଲା । ରାଜ୍ୟ ସ୍ଥାପନ କରିବାପାଇଁ ଇଚ୍ଛାହେଲା ନାହିଁ । ସେଠାରେ ସେ ଗୋକର୍ଣ୍ଣେଶ୍ୱରଙ୍କୁ ପୂଜା କରି ଘୋର ତପସ୍ୟାରତ ହେଲେ । ଏକବିଂଶଦିନ ନିର୍ଜଳ ଉପବାସ କରି ତପଶ୍ଚରଣ ଦ୍ୱାରା ଈଶ୍ୱରଙ୍କୁ ସନ୍ତୁଷ୍ଟ କଲେ । ଈଶ୍ୱର ଭକ୍ତଙ୍କ ସମ୍ମୁଖରେ ଉଭାହୋଇ କ୍ଷାତ୍ରଧର୍ମ ଅନୁଯାୟୀ ପ୍ରଜାପାଳନାର୍ଥେ ବର ମାଗିବାକୁ ଆଦେଶ ଦେଲେ ଓ ସାଧନାପୀଠର ସପ୍ତପାଦ ପୂର୍ବଦିଗକୁ ଦାଉଁ ଯାଇ ନିଜ ବାହୁ ବଳରେ ପ୍ରସ୍ତର ଖଣ୍ଡିଏ ଉତ୍ତୋଳନ କରିବାପାଇଁ ନିର୍ଦ୍ଦେଶ ଦେଲେ । ବାମନ ଏହା କରନ୍ତେ ସେହି ପ୍ରସ୍ତର ତଳୁ ଏକ ଗିରିଝର ବାହାରି ଦୁଇ ଶାଖାରେ ନିମ୍ନଗାମୀ ହୋଇ ମହୋଦଧିରେ ମିଶିଗଲା । ଏହି ଦୁଇନଦୀ ମଧ୍ୟବର୍ତ୍ତୀ ସ୍ଥାନରେ ରାଜ୍ୟ ସ୍ଥାପନ କରିବାପାଇଁ ଈଶ୍ୱର ଉପଦେଶ ଦେଲେ । ମଞ୍ଜୁଳ ଉଷା ସେହି ସମୟରେ ଦେଖାଦେଇଥିବା ଯୋଗୁଁ ରାଜ୍ୟର ନାମ ମଞ୍ଜୁଷା ରଖିବା ପାଇଁ ମଧ୍ୟ ଆଦେଶ ଦେଲେ ।

ତା ପରେ ଈଶ୍ୱର ନିର୍ଦ୍ଦେଶ ଦେଲେ ବାମନ ରାଜା ଦକ୍ଷିଣ ଭାଗର ଉପନଦୀରେ ଗୋଟିଏ ନିଶାଣ ପକାଇବେ ଓ ତା ଯେଉଁଠାରେ ଭାସମାନ ଅବସ୍ଥାରେ ରହିଯିବ, ସେଠାରେ ଗଡ଼ ତିଆରି କରିବେ । ତାହାହିଁ ହେଲା । ଦୈବ ଉପଦେଶ ଅନୁଯାୟୀ ବାମନ ରାଜା ନିଜର ସ୍ୱର୍ଣ୍ଣ ମୁଦ୍ରିକା ନଦୀରେ ପକାଇଥିବାରୁ ସେହି ନଦୀର ନାମ "ସୁନା ମୁଦଆ" ଅଛି । ମଞ୍ଜୁଷାଗଡ଼ ସ୍ୱର୍ଣ୍ଣମୁଦ୍ରା ନଦୀରେ ପ୍ରତିଷ୍ଠିତ ହେଲା । (୧) ଏହି ଖବର ଦେଶ ବିଦେଶରେ ବ୍ୟାପିଗଲା । ଅନଙ୍ଗଭୀମ ରାଜା ଖବର ପାଇ ଦକ୍ଷିଣକୁ ଯାତ୍ରାକଲେ ଏବଂ ରାଜା ବାମନ ସିଂହର ପ୍ରଶଂସା ଗାନ କରିବା ସଙ୍ଗେ ସଙ୍ଗେ ତାଙ୍କୁ

---

(୧) ସତରାଜ ଆଚାର୍ଯ୍ୟ ଶର୍ମା : ବାମନସିଂଙ୍କ ଘଟଣା ଦ୍ୱାଦଶ ଶତାବ୍ଦୀ ବୋଲି ମତ ପୋଷଣ କରନ୍ତି ଏବଂ ମଞ୍ଜୁଷା ଗଡ଼ର ଉତ୍ପତ୍ତି ସେହି ସମୟର ବୋଲି ମତ ପୋଷଣ କରନ୍ତି ।

ନିଜର କନ୍ୟାଦାନ କରିଥିଲେ । ବାମନ ସିଂହ ଗୋକର୍ଣ୍ଣେଶ୍ୱରଙ୍କ ପ୍ରସାଦରୁ ପାଣ୍ଡିତ୍ୟ, ଐଶ୍ୱର୍ଯ୍ୟ ଓ ସୌଭାଗ୍ୟପ୍ରାପ୍ତ ହୋଇଥିବା ଯୋଗୁଁ ଗୋକର୍ଣ୍ଣେଶ୍ୱର ପ୍ରତ୍ୟକ୍ଷ ଫଳପ୍ରଦ ବୋଲି ଜନଶ୍ରୁତି ରହିଛି । ଗୋକର୍ଣ୍ଣେଶ୍ୱରଙ୍କୁ ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ମହାଶିବରାତ୍ରି ଅବସରରେ ଯେ ପୂଜାଅର୍ଚ୍ଚନା କରେ, ସେ ନିଶ୍ଚିତ ରୂପରେ ସକଳ ପାପରୁ ନିସ୍ତାର ପାଏ ।

## (୧୩) ହେଉଛି ଅଛି, ହେଉଛି ନାହିଁ :

ମହେନ୍ଦ୍ରଗିରିର ଉଚ୍ଚତମ ଶୃଙ୍ଗ ଦୁଇଟି ଶୃଙ୍ଗ ମଧ୍ୟରେ ଏପରି ଗୋଟିଏ ସମତଳ ସ୍ଥାନ ଅଛି ସେ ସ୍ଥାନରେ ଗୋକର୍ଣ୍ଣେଶ୍ୱରଙ୍କ ଆସ୍ଥାନ ରହିଛି । ପଞ୍ଚପାଣ୍ଡବ ବନବାସ କାଳରେ ଏହି ଖୋଲରେ ରହୁଥିଲେ ବୋଲି ଏହାକୁ ପଞ୍ଚପାଣ୍ଡବ ଖୋଲ କୁହାଯାଏ । (୧) ପଞ୍ଚପାଣ୍ଡବ ଏହି ସ୍ଥାନରେ ମନ୍ଦିରମାନ ନିର୍ମାଣ କରି ବନବାସ କାଳରେ ପୂଜା କରୁଥିଲେ । ସ୍ଥାନଟି ଏପରି ନିକାଞ୍ଚନ ଓ ମନୋମୁଗ୍ଧକର ଯେ ସେଠାକୁ ଗଲେ ସମସ୍ତ ମନ୍ଦିର ଦେଖିହୁଏ । କିନ୍ତୁ ଅଳ୍ପ ତଳକୁ ଓହ୍ଲେଇ ପଡ଼ିଲେ ମନ୍ଦିରମାଳା କିଛି ଦେଖାଯାଏ ନାହିଁ । ତେଣୁ ଶବରମାନେ କହନ୍ତି ହେଉଛି ଅଛି, ହେଉଛି ନାହିଁ ।

## (୧୪) ପୂରୁଆ ସାହିର କୁଣ୍ଡ ରକ୍ତବର୍ଣ୍ଣ କାହିଁକି ?

ମହେନ୍ଦ୍ରଗିରିର ପାଦଦେଶରେ ରୁମ୍ବା ଗ୍ରାମଠାରୁ ପ୍ରାୟ ଦଶ କିଲୋମିଟର ଦୂରରେ ମହେନ୍ଦ୍ରତନୟାର ଗର୍ଭରେ ଯେଉଁ କେତେକ କୁଣ୍ଡ ହାତରେ ଖୋଳା ହେଲି ଭଳି ଜଣାଯାଇଥାଏ ସେଗୁଡ଼ିକ ପର୍ଶୁରାମ କୁଣ୍ଡ ନାମରେ ସୁପରିଚିତ । ଏଠାରେ ଗୋଟିଏ ଶବର ପଲ୍ଲୀ ରହିଛି । ଏହାର ନାମ ପୂରୁଆ ସାହି । ଏଠାରେ ମହାବୀର ପର୍ଶୁରାମଙ୍କର ଆଶ୍ରମ ଥିଲି । ପର୍ଶୁରାମଙ୍କ ପିତା ଜମଦଗ୍ନି ଗଞ୍ଜାମର ରାମଗିରିରେ ଆଶ୍ରମ କରିଥାଆନ୍ତି । ସେଠାରେ ମହାବୀର କାର୍ତ୍ତବୀର୍ଯ୍ୟ ରାଜା ଜମଦଗ୍ନିଙ୍କୁ ହତ୍ୟା କରିବା ସମୟରେ ପର୍ଶୁରାମଙ୍କ ମାତାଙ୍କ ପିଠିରେ ଏକୋଇଶକାର ଚ୍ଛୁରିକ ପ୍ରହାର କରିଥିବାରୁ ସେହି ସ୍ମୃତିରେ ପର୍ଶୁରାମ ସମଗ୍ର ପୃଥିବୀକୁ ନିକ୍ଷତ୍ର କରିବା ଲାଗି ଏକୋଇଶବାର ଅଭିଯାନ ଚଳାଇ କାର୍ତ୍ତବୀର୍ଯ୍ୟ ରାଜାଙ୍କ ସମେତ କ୍ଷତ୍ରିୟବର୍ଗଙ୍କ ରକ୍ତରେ ଏହି କୁଣ୍ଡମାନଙ୍କରେ ପିତୃତର୍ପଣ କରିଥିଲେ । ଏଥିଯୋଗୁଁ ପଥରଗୁଡ଼ିକ ଲାଲ ଦେଖାଯାଏ ।

---

(୧) ଓଡ଼ିଶାର କିମ୍ବଦନ୍ତୀ : ଡ଼କ୍ଟର୍ ପ୍ରସନ୍ନକୁମାର ମିଶ୍ର, ପୃ ୧୩୭

## (୧୫) ବଙ୍ଗୋପସାଗରର ବତୀଘର :

ପୁରାଣଯୁଗର ସପ୍ତକୁଳାଚଳ ପର୍ବତମାନଙ୍କ ମଧ୍ୟରୁ ମହେନ୍ଦ୍ରଗିରି ଭାରତ ମହାସାଗର ଉତ୍ତରରେ ପ୍ରସିଦ୍ଧ ପୂଣ୍ୟଭୂମି । ଭାରତ ଖଣ୍ଡର ପୂର୍ବପାର୍ଶ୍ୱରେ ବଙ୍ଗୋପସାଗରର ପଶ୍ଚିମ ସୀମାରେଖାରେ ଅବସ୍ଥିତ । ମହେନ୍ଦ୍ରଗିରି ଓ ଏହାର ନିକଟସ୍ଥ ସମସ୍ତ ଶୃଙ୍ଗ ଉପରେ ପରିଦୃଷ୍ଟ ଅଗ୍ନିଦଗ୍ଧ ଶିଳାଖଣ୍ଡମାନ ବର୍ତ୍ତମାନ ମୂକସାକ୍ଷୀ ସ୍ୱରୂପ ସୂଚନା ଦେଇଥାଏ ଯେ ଅତୀତରେ ଏହିଠାରେ ଅଗ୍ନି ସଂଯୋଗ ପୂର୍ବକ ଅନୁଷ୍ଠିତ ମଙ୍ଗଳାନୁଷ୍ଠାନମାନ ବଙ୍ଗୋପସାଗରରେ ଯାତାୟାତ କରୁଥିବା ଜାହାଜଗୁଡ଼ିକର ଗତିପଥ ନିର୍ଦ୍ଦିଷ୍ଟ କରିବା ପାଇଁ ବତୀଘର ରୂପେ କାର୍ଯ୍ୟ କରୁଥିଲେ ।

## (୧୬) ମହେନ୍ଦ୍ରର ସତୀଆମ୍ବ :

ପଞ୍ଚୁପାଣ୍ଡବଙ୍କ ବନବାସ କାଳର କଥା । ଥରେ ସେମାନେ ଖାଇବାକୁ କିଛି ଫଳମୂଳ ପାଇଲେ ନାହିଁ । ତେଣୁ ଦ୍ରୌପଦୀ ଗୋଟିଏ ଆମ୍ବଗଛକୁ ଲକ୍ଷ୍ୟ କରି କହିଲେ ଯେ ଯଦି ସତୀ ହୋଇଥିବେ ଗଛଟି ଫଳ ଦେବ । ତତ୍‌କ୍ଷଣାତ୍ ଆମ୍ବଗଛ ବଉଳିଲା, ଫଳ ଧରିଲା ଓ ପାଚି ତଳେ ପଡ଼ିଲା । ପଞ୍ଚୁପାଣ୍ଡବ ତାହା ଖାଇ କ୍ଷୁଧା ମେଣ୍ଟାଇଲେ । ଏହି ଆମ୍ବଗଛ ମହେନ୍ଦ୍ରାଞ୍ଚଳରେ ଭରପୂର । ବର୍ଷକ ବାରମାସ ଏଥିରେ ଆମ୍ବଥାଏ, ବଉଳଥାଏ, ଫଳଥାଏ, ପାଚିଲେ ମଧ୍ୟ ଥାଏ । ଏହା ଖାଇଲେ ସ୍ତ୍ରୀର ବନ୍ଧ୍ୟାତ୍ୱ ଦୂର ହୁଏ ଓ ସେ ବିଧବା ହୁଏ ନାହିଁ ବୋଲି ମଧ୍ୟ ପ୍ରବାଦ ଅଛି । ଶବରମାନେ କହନ୍ତି— "ଦ୍ରୌପଦୀ ଇ ଆମ୍ବ ଫଳାଇଚନ୍ତି" । ଏ ଲୋକ କଥାଟି ସାରଳା ଦାସଙ୍କ ମହାଭାରତରେ ବର୍ଣ୍ଣିତ ବିବରଣୀ ଠାରୁ ଭିନ୍ନ ଅଟେ ।

## (୧୭) ପଞ୍ଚୁପାଣ୍ଡବ ସଭାମଣ୍ଡପ :

ମହେନ୍ଦ୍ରଗିରିର ଯୁଧିଷ୍ଠିର ମନ୍ଦିର ପୂର୍ବଭାଗର ନିମ୍ନରେ ପାଞ୍ଚଗୋଟି କଳା ପଥର ପଡ଼ିରହିଥିବା ଦୃଷ୍ଟିଗୋଚର ହୁଏ । ତାର ଅଳ୍ପ ନିମ୍ନରେ ଆଉ କେତୋଟି ପଥର ପଡ଼ିରହିଥିବା ଦୃଷ୍ଟିକୁ ଆସେ । ପ୍ରବାଦ ଅଛି ପଞ୍ଚୁପାଣ୍ଡବ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ବଡ଼ଭାଇଙ୍କ ପାଖକୁ ଆସି ଆଳାପ ଆଲୋଚନା କରୁଥିବା ପ୍ରବାଦ ରହିଛି । ପାଞ୍ଚଭାଇ ଏକତ୍ର ସେହି ମଣ୍ଡପରେ ବସନ୍ତି ଓ ସମସ୍ତ ବିଷୟ ଆଲୋଚନା କରୁଥାଆନ୍ତି । ତାର ନିମ୍ନରେ ଭୀମସେନ ବାଘଗୁଡ଼ିଏ ବାନ୍ଧିରଖି ଖେଳ ଖେଳୁଥାନ୍ତି ଓ ଅନ୍ୟଭାଇମାନେ ସେହି ଦୃଶ୍ୟ ଦର୍ଶନ କରୁଥାଆନ୍ତି । ତେଣୁ ଏହି ମଣ୍ଡପର ପ୍ରାଧାନ୍ୟ ରହିଛି । ଏଠାରେ ଥାଇ ଉତ୍ତରଦିଗେ ଦୃଷ୍ଟିପାତ କଲେ ମହେନ୍ଦ୍ରତନୟା ଗର୍ଭରେ ପର୍ଶୁରାମ କୁଣ୍ଡ, ଟେକଟିର ବାଳକୁମାରୀ, ସୁରଙ୍ଗୀର କୁରେଇଶୁଣି ପାହାଡ଼, ଜରଡ଼ା ପାର୍ଥସାରଥି ତଥା ଭୁମ୍ବାଠ ରୁ ଟେକଟୀଯାଏ ସ୍ପଷ୍ଟଭାବେ ଦେଖାଯାଏ । ଏଠାକାର ଶବରମାନେ ଏହି ସ୍ଥଳକୁ ପଞ୍ଚୁପାଣ୍ଡବ ସଭାମଣ୍ଡପ କହିଥାନ୍ତି ।

(୧୮) ହନୁମାନ ଖୋଲ :

ମହେନ୍ଦ୍ର, ଦାରୁବ୍ରହ୍ମ ଓ ଅର୍ଜ୍ଜୁନ ଗୁମ୍ଫା ମଧ୍ୟରେ ଗୋଟିଏ ବିସ୍ତୃତ ଖୋଲ ରହିଅଛି । ଏଠାରେ ବିସ୍ତୃତ ପଦଚିହ୍ନ ଭଳି ଗୋଟିଏ ଗର୍ତ୍ତ ଦେଖାଯାଏ । ସନ୍ନ୍ୟାସୀ ତୀର୍ଥଯାତ୍ରୀ ଏଠାରେ ପ୍ରଣିପାତ କରନ୍ତି । ସୀତା ଖୋଜିବା ପାଇଁ ବାନର ସାଥୀମାନଙ୍କ ସହିତ ଏହି ସ୍ଥାନରେ ହନୁମାନ ଆଲୋଚନା କରିଥିଲେ । ଶବରମାନେ କହନ୍ତି ପାଞ୍ଚଟି ବାନର ବୀର ପାଞ୍ଚଟି ଶୃଙ୍ଗକୁ ଧରିବାକୁ ହନୁମାନ ଗୋଟିଏ ଶୃଙ୍ଗରେ ଗଛ ପତ୍ରରେ ଉଚ୍ଚଳାଗାରେ ପାଦଦେଇ ଡେଇଁଲଭଳି ଡେଇଁଥିବା ଯୋଗୁଁ ଶୃଙ୍ଗ ଦବିଯାଇ ଗର୍ତ୍ତ ହୋଇଗଲା । ହନୁ କୁଦାରେ ଏହି ଗର୍ତ୍ତ ହୋଇଥିବା ଯୋଗୁଁ ଏହି କୁଦାକୁ 'ହନୁମାନ ଖୋଲ' କୁହାଯାଏ । (ଚିତ୍ର ନଂ ୫୦ ଦ୍ରଷ୍ଟବ୍ୟ)

ପୂର୍ବୋକ୍ତ ପ୍ରକାରେ (୪ର୍ଥ ପରିଚ୍ଛେଦ) ମହେନ୍ଦ୍ରଗିରି ହନୁମାନ ସାଧନାର ଆଦିପୀଠ । ନିଷ୍ଠାପର ଓ ନିଃସ୍ୱାର୍ଥ ସେବାଦ୍ୱାରା ପ୍ରଭୁ ରାମଚନ୍ଦ୍ରଙ୍କୁ ପ୍ରସନ୍ନ କରାଇ ନିଜ ହୃଦୟରେ ତାଙ୍କ ପାଇଁ ଆସ୍ଥାନ ସ୍ଥାପନ କରିପାରିଥିବା ହନୁମାନଙ୍କର ପ୍ରକୃତ ଓ ପ୍ରକୃଷ୍ଟ ରାମସେବାର ଶୁଭାରମ୍ଭ ଏହିଠାରେହିଁ ହୋଇଥିଲା । କାରଣ ଅପହୃତା ସୀତାଙ୍କର ସନ୍ଧାନରେ ହନୁମାନ ମହେନ୍ଦ୍ରରୁ ହିଁ ଲଙ୍କା ଅଭିଯାନ କରିଥିଲେ । ଏଣୁ ଆଜି କେବଳ ମହେନ୍ଦ୍ରାଞ୍ଚଳର ଚତୁର୍ଦ୍ଦିଗରେ ଅସଂଖ୍ୟ ହନୁମାନ ମନ୍ଦିର ଯେ ଗଢ଼ି ଉଠିଛି, ତାହା ନୁହେଁ, ଭାରତବ୍ୟାପୀ ହନୁମାନ ଉପାସନାର ମାହାତ୍ମ୍ୟ କୋଟିକଣ୍ଠରେ ନିନାଦିତ ହେଉଛି ।

ପବନ ତନୟ ସଙ୍କଟ ହରନ ମଙ୍ଗଲ ମୂରତି ରୂପ,<br>ରାମ ଲକ୍ଷନ ସୀତା ସହିତ ହୃଦୟ ବସହୁ ସୁରଭୂପ ।

ହନୁମାନଙ୍କ ବ୍ୟତୀତ ଗୋକର୍ଣ୍ଣେଶ୍ୱର ମହାଦେବ, ପରଶୁରାମ ଓ ଶକ୍ତି-ଉପାସନାର ପୀଠ ରୂପେ ମଧ୍ୟ ଏ ପୀଠ ପ୍ରସିଦ୍ଧ, ଏହାର ପୁନରୁକ୍ତି ଅନାବଶ୍ୟକ । ପୁରାଣ ମତରେ ସ୍ୱୟଂ ମହାଦେବ ଗୋକର୍ଣ୍ଣେଶ୍ୱରଙ୍କ ପ୍ରତିଷ୍ଠାତା ଆଉ ମହାଭାରତର ପଞ୍ଚପାଣ୍ଡବ ତାଙ୍କର ଆଦିପୂଜକ । ତେବେ ବର୍ତ୍ତମାନର କଳିଯୁଗରେ ଶକ୍ତି ଆରାଧନା ସାଙ୍ଗକୁ ହନୁମାନ ଉପାସନାର ପ୍ରାଧାନ୍ୟ ଉପରେ ଗୁରୁତ୍ୱ ଦିଆଯାଇଥିବା ଦୃଷ୍ଟିରୁ ଏବଂ ମହେନ୍ଦ୍ର ହନୁମାନଙ୍କ ରାମସେବା ପାଇଁ ପ୍ରଥମ କ୍ଷେତ୍ର ପ୍ରସ୍ତୁତ କରିଥିବା ଯୋଗୁଁ କେବଳ ଭାରତ କାହିଁକି ସମଗ୍ର ବିଶ୍ୱରେ ଆଗାମୀ ଯୁଗ ଯୁଗ ପାଇଁ ଏହାର ଅବଦାନ ଯେ ଚିର ସ୍ମରଣୀୟ ହୋଇ ରହିବ, ଏହା ନିଃସନ୍ଦେହ ।

●

# ସପ୍ତମ ପରିଚ୍ଛେଦ

# ଉପସଂହାର : ମହେନ୍ଦ୍ରଗିରିର ଅବଦାନ

**ଉପସଂହାର :**

ସ୍ୱାନୁଭୂତରୁ ଜଣାଯାଏ ନୀଳାଚଳ ପୁରୁଷୋତ୍ତମ କ୍ଷେତ୍ର, ପୂର୍ବଘାଟ ପର୍ବତମାଳାରେ ସିଂହାଚଳ (ନୃସିଂହାବତାର), ଶ୍ରୀ କୂର୍ମ (କୂର୍ମ ଅବତାର), ମହେନ୍ଦ୍ରାଚଳ (ରାମବତାର ରାମ ଓ ପର୍ଶୁରାମ) ତଥା ଶ୍ରୀ ନୀଳାଚଳ କ୍ଷେତ୍ରରେ ସର୍ବଧର୍ମର ସମାହାର ଶ୍ରୀ ଜଗନ୍ନାଥ ଏକ ସରଳରେଖାରେ ନ ରହି ଭୌଗୋଳିକ ସ୍ଥିତି ଅନୁଯାୟୀ ମହୋଦଧି ସହ ଶଙ୍ଖାକୃତରେ ରହିବା ଅତୀବ ଚମତ୍କାର । ବିଷ୍ଣୁକ୍ଷେତ୍ର ଭେଙ୍କଟାଚଳ ଓ ପର୍ଶୁରାମ-କ୍ଷେତ୍ର ମହେନ୍ଦ୍ରଗିରି ମଧ୍ୟରେ ଶେଷୋକ୍ତ ପୀଠର ଆଧ୍ୟାତ୍ମିକ ଆକର୍ଷଣ ସର୍ବାଧିକ । ନିଶ୍ଚଳ ଧ୍ୟାନ ଓ ଯୋଗସାଧନା ନିମିତ୍ତ ବାସ୍ତବିକ ଏଭଳି ଏକ ମନୋରମ ନିରାଞ୍ଜନ ସ୍ଥାନ ଅନନ୍ୟ । ଏଠାରେ ଭକ୍ତ ପ୍ରାଣରେ ବେପଥୁ ଜାଗ୍ରତ ହେବା ଏକାନ୍ତ ସ୍ୱାଭାବିକ । ଏହାର ପଦସ୍ପର୍ଶ କଲାମାତ୍ରେ ସ୍ୱତଃ ଆଧ୍ୟାତ୍ମିକ ଚେତନାର ଜାଗରଣ ଘଟିଥାଏ । ଏଣୁ ସମଗ୍ର ପୃଥିବୀର ଲୋକେ ଏଭଳି କ୍ଷେତ୍ରମାନଙ୍କରେ ରୁଣ୍ଡହୋଇ ସନାତନ ଧର୍ମର ପବିତ୍ର ଧ୍ୱଜାତଳେ ଆଶ୍ରିତ ହଅନ୍ତି ।

**ଆଧ୍ୟାତ୍ମିକ ପୀଠ :**

ସିଂହାଚଳରୁ ମହେନ୍ଦ୍ରାଚଳକୁ ଥିବା ନିକଟତମ ରାସ୍ତାରେ ଅସଂଖ୍ୟ ଶାକ୍ତପୀଠ, ବୈଷ୍ଣବ ପୀଠ, ଶୈବ ପୀଠ, ବୌଦ୍ଧ ପୀଠ, ସୌର ପୀଠ ଓ ଅନ୍ୟାନ୍ୟ ଆଧ୍ୟାତ୍ମିକ ଚିନ୍ତାଧାରାର ମଠ ଓ ମନ୍ଦିରମାଳା ଦୃଷ୍ଟିଗୋଚର ହୁଏ । ପୂର୍ବେ ତୀର୍ଥଯାତ୍ରୀମାନେ ପଦବ୍ରଜରେ କିମ୍ବା ଶକଟ ଅଶ୍ୱାଦି ବାହନରେ ଏହି ଦୁର୍ଗମ ମାଳାଞ୍ଚଳ ରାସ୍ତାମାନଙ୍କରେ

ଯାତାୟାତ କରୁଥିଲେ । ସପ୍ତପାହାଡବ୍ୟାପୀ ଶଙ୍କରାଧିପତି ଭେଙ୍କଟାଚଳ ଯେପରି ଖ୍ୟାତି ଲାଭ କରିଛି, ସେହିପରି ନୀଳାଚଳ ଓ ସୀମାଚଳ ମଧ୍ୟ ପ୍ରସିଦ୍ଧି ଲାଭ କରିଅଛି । କିନ୍ତୁ ଶଙ୍କରାଧିପତି ମହେନ୍ଦ୍ର ସୁପ୍ତାବସ୍ଥାରେ ଏ ସମସ୍ତଙ୍କୁ ଧରି ସନାତନ ଧର୍ମର ପ୍ରତୀକ ହିସାବରେ ସକଳ ସଂସ୍କୃତିର ଆଧାର ଭାବରେ ବହୁ ଭକ୍ତାଭକ୍ତୀଙ୍କ ଅଭ୍ୟୁଦୟକଳ୍ପେ ଯେ ଅସାମାନ୍ୟ ଦାୟିତ୍ୱ ନିର୍ବାହ କରିଛି, ଏହା ହୁଏତ ଆଜି ବିସ୍ମୃତପ୍ରାୟ । ଦିନଥିଲା ଏହି ମହେନ୍ଦ୍ରଗିରି ବୈଷ୍ଣବାଗ୍ରଣୀ, ବୌଦ୍ଧସନ୍ନ୍ୟାସୀ, ତନ୍ତ୍ରସାଧକ ଏବଂ ଶ୍ରୀ ଚୈତନ୍ୟ ଦେବ ଓ ଅଭିରାମ ପରମହଂସଙ୍କ ଭଳି ସାଧୁସନ୍ଥ ମହନ୍ତଙ୍କ ପାଦସ୍ପର୍ଶରେ ମର୍ତ୍ତ୍ୟ-ବୈକୁଣ୍ଠରେ ପରିଣତ ହୋଇଥିଲା । ଆବହମାନ କାଳରୁ ପାର୍ବତ୍ୟ ଅଞ୍ଚଳର ଅଧିବାସୀ-ମାନେ ଏଠାରେ ପାରମ୍ପରିକ ପ୍ରଥାରେ ଯଜ୍ଞ ସମ୍ପାଦନ କରି ଏ ପୀଠର ପବିତ୍ରତା ବଜାୟ ରଖିଛନ୍ତି । ତା'ପରେ ପାଣ୍ଡବମାନଙ୍କ ଯଜ୍ଞ ସମୟରେ ଯେଉଁମାନଙ୍କୁ ଆହ୍ୱାନ କରାଯାଇଥିଲା ସେଥିରୁ ଅନୁମିତ ହୁଏ ଯେ ଏହି ସ୍ଥଳ ଯେ ପ୍ରକୃତରେ ଆଧ୍ୟାତ୍ମିକ କେନ୍ଦ୍ର ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ହିନ୍ଦୁମାନଙ୍କ ତୀର୍ଥଯାତ୍ରା ଜୀବନ କାଳ ମଧ୍ୟରେ ଏକ ମୁଖ୍ୟ ବିଷୟ, ପୁରାଣବର୍ଣ୍ଣିତ ଅର୍ଜ୍ଜୁନଙ୍କ କର୍ତ୍ତବ୍ୟ ଯଜ୍ଞରକ୍ଷା ଓ ଯଜ୍ଞଦୀକ୍ଷା କରିବା ପାଇଁ ରାମଚନ୍ଦ୍ରଙ୍କ ବିଶ୍ୱାମିତ୍ରଙ୍କ ସହିତ ଗମନ ନିତାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ପୁନଶ୍ଚ ଯଜ୍ଞରକ୍ଷା ଥିଲା ପ୍ରାଚୀନ ରାଜାମାନଙ୍କର ଏକ ପରମ କର୍ତ୍ତବ୍ୟ । ଅନାଦି କାଳରୁ ହିନ୍ଦୁମାନେ ବହୁ କଷ୍ଟ ସ୍ୱୀକାର ପୂର୍ବକ ବର୍ଷ ବର୍ଷ ଧରି ଚତୁର୍ଦ୍ଧାମକୁ ତୀର୍ଥଯାତ୍ରାରେ ବାହାରୁଥିଲେ ଏବଂ ରଥ, ଗଜ, ଅଶ୍ୱ କିମ୍ବା ଶକଟର ଆଶ୍ରୟରେ ତୀର୍ଥାଟନ କରୁଥିଲେ । ଯାତ୍ରା ସମୟରେ ଦସ୍ୟୁ ବା ହିଂସ୍ରଜନ୍ତୁ ଆକ୍ରମଣରୁ ରକ୍ଷା ପାଇବାପାଇଁ ରାଜାମାନଙ୍କ ନିକଟରେ ଆଶ୍ରୟ ନେଉଥିଲେ । ଏହିଭଳି ବର୍ଷ ବର୍ଷ ଧରି ଦେଶ ବିଦେଶ ଭ୍ରମଣରେ ପ୍ରବୃତ୍ତ ଥିଲେ ମହାଭାରତର ମହାନାୟକ ପଞ୍ଚପାଣ୍ଡବ, ତଥା ଶ୍ରୀକୃଷ୍ଣ ବଳରାମଙ୍କ ସହିତ ଅସଂଖ୍ୟ ତୀର୍ଥଯାତ୍ରୀ (୧) ପ୍ରଦ୍ୟୁମ୍ନଙ୍କ ଯାତ୍ରା (୨) ଏଠାରେ ଉଲ୍ଲେଖ କରିବା ଅବାନ୍ତର ହେବ ନାହିଁ ଯେ ମହାଭାରତ ପର୍ଶୁରାମ ମହେନ୍ଦ୍ରଗିରିଠାରୁ ଉତ୍ତର ଦିଗେ ହିମାଳୟ ଅତିକ୍ରମ

---

(୧) Krishnavatara-Volume (II) K Munshi, Bharatiya Vidya Bhavan, Bombay 7—ପୃ 82-83.

(୨) ଗର୍ଗସଂହିତା ପୃ ୨୭୮. (ପ୍ରଦ୍ୟୁମ୍ନଙ୍କ ଯାତ୍ରାପଥ ହିଁ ପଶ୍ଚିମଘାଟ ପର୍ବତମାଳା)ଠାରୁ ପୂର୍ବଘାଟ ପର୍ବତମାଳାର ଅର୍ଥାତ୍ ସହ୍ୟାଚଳରୁ ମହେନ୍ଦ୍ରାଞ୍ଚଳକୁ ପ୍ରାକୃତିକ ପ୍ରତିବନ୍ଧକ ବିହୀନ ରାସ୍ତା । ପରବର୍ତ୍ତୀ ଯୁଗରେ ଏହି ରାସ୍ତାରେ ହିଁ ପରିବ୍ରାଜକମାନେ ଗତିକରିଥିବା ଐତିହାସିକ ଓ ଭୌଗୋଳିକମାନେ ମତ ଦିଅନ୍ତି । ଏ ସମ୍ବନ୍ଧରେ "Bharatavarsa Ancient trade routes Map Fig 16" The Geography of Puranas by S. M. Ali, Page 176." ଦ୍ରଷ୍ଟବ୍ୟ ଏହି ମାନଚିତ୍ର ତତ୍କାଳୀନ ସଂସ୍କୃତ ସାହିତ୍ୟ ପାଲି (ବୌଦ୍ଧ ସାହିତ୍ୟ), ଜୈନ

କରି ଚୀନ ଦେଇ ବେରିଂ ପ୍ରଣାଳୀ ଲଙ୍ଘନ କରି ବର୍ତ୍ତମାନର ଆମେରିକା ଅଞ୍ଚଳରେ ପହଞ୍ଚିଥିଲେ । ସେ ସମଗ୍ର ପୃଥିବୀ ଅଧିକାର କରି ତାହା କାଶ୍ୟପ ମହର୍ଷିଙ୍କୁ ଅର୍ପଣ କରିବା ପ୍ରସଙ୍ଗ ପୂର୍ବରୁ ବର୍ଣ୍ଣିତ । ଏଠାରେ ସୂଚନା ଦିଆଯାଇପାରେ ଯେ "ପ୍ରାଚୀନ ଜମ୍ବୁଦ୍ୱୀପର କେନ୍ଦ୍ରସ୍ଥଳୀ ଯେଉଁଠାରେ ଆର୍ଯ୍ୟମାନଙ୍କର ବା କାଶ୍ୟପାସ୍ତନଙ୍କ ବସତି ରହିଥିଲା, ସେହିସ୍ଥାନ କାଶ୍ୟପ ନାମାନୁସାରେ ଅଦ୍ୟାପି "କାସ୍ପିୟାନ୍ ସାଗର" ରୂପେ ପରିଦୃଷ୍ଟ । ତାର ନିମ୍ନ ଦେଶରେ ପରଶୁ ସାହାଯ୍ୟରେ ଶାସିତ ଅଞ୍ଚଳ ପାରସ୍ୟ ବର୍ତ୍ତମାନ ଇରାନ୍ ନାମରେ ଖ୍ୟାତ । ଏଭଳି ପରଶୁରାମ ପର୍ଯ୍ୟଟନ କରିଥିବା ଅସଂଖ୍ୟ ସ୍ଥାନ ତାଙ୍କ ନାମର ସଙ୍କେତ ବହନ କରେ । ତେବେ, ଏ ସମସ୍ତ ସ୍ଥାନ ମଧ୍ୟରେ ପରଶୁରାମ କ୍ଷେତ୍ରରୂପେ ମହେନ୍ଦ୍ର ଅଗ୍ରଗଣ୍ୟ । ଯଥାର୍ଥରେ ପରଶୁରାମଙ୍କୁ ମହେନ୍ଦ୍ରାଧିପତି ଆଖ୍ୟା ଦିଆଯାଇପାରେ ।

(୬) ଗିରିଦୁର୍ଗ ମହେନ୍ଦ୍ରଗିରି :

ଧନ୍ୱଦୁର୍ଗଂ ମହୀଦୁର୍ଗମବ୍ଦୁର୍ଗଂ ବାର୍କ୍ଷମେବ ଚ
ନୃଦୁର୍ଗଂ ଗିରିଦୁର୍ଗଂ ଚ ସମାଶ୍ରିତ୍ୟ ବସେତ୍ପୁରମ୍ ।
ସର୍ବେଣତୁ ପ୍ରଯତ୍ନେନ ଗିରିଦୁର୍ଗଂ ସମାଶ୍ରୟେତ୍
ଏଷାଂ ହି ବାହୁଗୁଣ୍ୟେନ ଗିରିଦୁର୍ଗଂ ବିଶିଷ୍ୟତେ ।

(ମହର୍ଷି ମନୁଙ୍କ ବିଭୂତି) । (୧)

ଅର୍ଥାତ୍ ମହର୍ଷି ମନୁ କହିଛନ୍ତି— ଧନୁଦୁର୍ଗ, ପୃଥିବୀଦୁର୍ଗ (ସୁଡ଼ଙ୍ଗ), ଜଳଦୁର୍ଗ, ବୃକ୍ଷଦୁର୍ଗ, ମନୁଷ୍ୟଦୁର୍ଗ ଓ ଗିରିଦୁର୍ଗକୁ ଆଶ୍ରୟକରି ବାସକରିବା ଉଚିତ । କିନ୍ତୁ ସର୍ବବିଧ ଉଦ୍ୟମ କରି ଗିରିଦୁର୍ଗ ଆଶ୍ରୟ ନେବା ଶ୍ରେୟସ୍କର । ଯେହେତୁ ଏହି ଦୁର୍ଗମାନଙ୍କ ମଧ୍ୟରେ ଗିରିଦୁର୍ଗ ହିଁ ସର୍ବୋପରି ଶ୍ରେଷ୍ଠଦୁର୍ଗରୂପେ ସ୍ୱୀକୃତ ।

ରଘୁ ମହାରାଜାଙ୍କ ଦିଗ୍ବିଜୟ ସମୟରେ ମହେନ୍ଦ୍ରନାଥ ଏହି ଗିରିଦୁର୍ଗର ଅଧିକାରୀ ଥିଲେ । ମହାକବି କାଳିଦାସଙ୍କ ବର୍ଣ୍ଣନାନୁସାରେ ରଘୁମହାରାଜା କପିଶାନଦୀ ପାରହୋଇ ଉତ୍କଳଦେଇ କଳିଙ୍ଗକୁ ଯାଇଥିଲେ ଏବଂ ସେଠାରେ କଳିଙ୍ଗର ରାଜାଙ୍କୁ ପରାସ୍ତ କଲାପରେ ମହେନ୍ଦ୍ର ପର୍ବତରେ ଆଶ୍ରୟ ନେଇଥିଲେ ।

---

ସାହିତ୍ୟକୁ ଭିତ୍ତି କରି ଅଂକିତ । ବୈଦେଶିକ ଲେଖକ ଓ ପରିବ୍ରାଜକ Cunningham, Law, Sarcar ଓ ଅନ୍ୟାନ୍ୟଙ୍କ ଯାତାକାଳୀନ ପଥକୁ ଲକ୍ଷ୍ୟକରି ଅଂକିତ ।

(୧) ମହର୍ଷି ମନୁଙ୍କ ବିଭୂତି—ମହେନ୍ଦ୍ରର ଆହ୍ୱାନ ସ୍ମରଣିକା ୧୯୬୦ (ମହେନ୍ଦ୍ରଗିରିରେ ଅଧ୍ୟାପିକା ଗୌରୀକୁମାରୀ ବ୍ରହ୍ମାଙ୍କ ଉଦ୍‌ବୋଧନ ।)

ଉତ୍କଳା ଦର୍ଶିତା ପଥା କଳିଙ୍ଗାଭିମୁଖଂ ଯଯୌ
ଶ୍ରୀମ୍ଭ ମହେନ୍ଦ୍ରନାଥସ୍ୟ ଜହାର ନତ ମେଦନମ୍ ।

ମହାଭାରତରୁ ଜଣାଯାଏ, ତତ୍କାଳୀନ କଳିଙ୍ଗରାଜା ରାଜସୂୟ ଯଜ୍ଞରେ ଅପମାନିତ ହେବାପରେ କୌରବଙ୍କ ପକ୍ଷରେ ମହାଭାରତ ଯୁଦ୍ଧରେ ନିଜର ଧନ ପୁତ୍ରଙ୍କ ସହିତ ଷାଠିଏ ହଜାର ରଥ ଓ ଦଶହଜାର ପର୍ବତକାୟ ହସ୍ତୀସହ କୁରୁକ୍ଷେତ୍ର ଯୁଦ୍ଧରେ ଯୋଗ ଦେଇଥିଲେ । (୧) ଯଥାର୍ଥରେ ଏହି ଦୁର୍ଗମ ଗିରିଦୁର୍ଗ ମହେନ୍ଦ୍ରଗିରି "ହସ୍ତୀ-ଦୁର୍ଗ" ହିସାବରେ କେଉଁ ଆଦିମଯୁଗରୁ ପ୍ରସିଦ୍ଧି ଲାଭ କରିଛି । ଏଠାକାର ପାଚିଲିଆ ହସ୍ତୀ ନିବାସ ହିଁ ଜ୍ୱଳନ୍ତ ପ୍ରମାଣ ।

ଆଲେକ୍‌ଜାଣ୍ଡାରଙ୍କ ଦିଗ୍‌ବିଜୟ ସମୟରେ କଳିଙ୍ଗର ହସ୍ତୀ କିଭଳି ନନ୍ଦ ସାମ୍ରାଜ୍ୟର ମର୍ଯ୍ୟାଦା ରକ୍ଷା କରିଛି, ତାହା ଐତିହାସିକମାନଙ୍କ ଗବେଷଣାରୁ ପ୍ରମାଣିତ । ଧନନନ୍ଦଙ୍କ ଅଭୂତପୂର୍ବ ଯୁଦ୍ଧ ପ୍ରସ୍ତୁତ ଦେଖି ଗ୍ରୀକ୍ ସେନାବାହିନୀ ପ୍ରମାଦ ଗଣିଥିଲେ ଏବଂ ବିଶାଳକାୟ ଅଭିଜ୍ଞ ହସ୍ତୀମାନଙ୍କ ଦ୍ୱାରା ରଚିତ ରହସ୍ୟମୟ ବ୍ୟୂହ ଭେଦ କରିବା ଦୁଃସାଧ୍ୟ ମନେକରି ଆଲେକ୍‌ଜାଣ୍ଡାର ନିଜ ସେନାଙ୍କୁ ନେଇ ଆଉ ଅଗ୍ରସର ହେବାକୁ ସାହସ କରିନଥିଲେ । ତେଣୁ ସେ ବିପାଶା ତୀରରୁ ହତାଶ ହୋଇ ପ୍ରତ୍ୟାବର୍ତ୍ତନ କରିବାପାଇଁ ବାଧ୍ୟ ହୋଇଥିଲେ । ମେଘାସ୍ଥିନିସ୍ ଓ ଡ଼ାଇଡୋରସ୍ ମଧ୍ୟ ସ୍ୱୀକାର କରିଛନ୍ତି ଯେ କଳିଙ୍ଗର ହସ୍ତୀଗୁଡ଼ିକ ଅତି ଶକ୍ତିଶାଳୀ ଓ ଭୟପ୍ରଦ ଥିଲେ । ଅଶୋକଙ୍କ କଳିଙ୍ଗ ଯୁଦ୍ଧ କାଳରେ ମହେନ୍ଦ୍ରାଞ୍ଚଳର ଦୁର୍ଦ୍ଧର୍ଷ ଓଡ଼ିଆ ପାଇକମାନେ ହିଁ ଅଶୋକଙ୍କୁ କଳିଙ୍ଗ ନଗରଠାରୁ ଧଉଳି ପାହାଡ଼ ପର୍ଯ୍ୟନ୍ତ ବିତାଡ଼ିତ କରିପାରିଥିଲେ । ଯେତେବେଳେ ସମୁଦ୍ରଗୁପ୍ତ ଉତ୍ତର ଭାରତରେ ଶାସନ କରୁଥିଲେ, ସେତେବେଳେ (ଖ୍ରୀ : ଅ : ୩୫୦-୫୦୦) କଳିଙ୍ଗରେ ମାଠର ବଂଶ ରାଜତ୍ୱ କରୁଥିଲେ । ଏମାନେ ଥିଲେ ପରାକ୍ରମଶାଳୀ ସ୍ୱାଧୀନ ରାଜା । ସେମାନଙ୍କର ହସ୍ତୀଥିଲା ପ୍ରଧାନ ସମ୍ପଦ । ସମୁଦ୍ରଗୁପ୍ତ ଦକ୍ଷିଣାପଥ ଅଭିଯାନ କ୍ରମେ ଏହି ଅଞ୍ଚଳ ଅଧିକାର କରି କଳ୍ପୁର ସମେତ (୨) ସେହି ରାଜ୍ୟ ସମୂହକୁ ସମ୍ପୃକ୍ତ ରାଜାମାନଙ୍କୁ ଫେରାଇ ଦେଇଥିଲେ ସ୍ତ୍ରୀରା ସେ ମହେନ୍ଦ୍ରଗିରିରେ ଗିରିଦୁର୍ଗ ସ୍ଥାପନ କରି ସେହି ଦକ୍ଷିଣାପଥ ଅଭିଯାନରେ ସଫଳତା ଅର୍ଜନ କରିଛନ୍ତି । କଳିଙ୍ଗରେ ତତ୍କାଳୀନ ମାଠର, ଗଙ୍ଗ, ଶୈଳୋଦ୍ଭବ ଓ ଭୌମରାଜାମାନଙ୍କ ଅମଳରୁ ଏହି ମହେନ୍ଦ୍ରଗିରି ଗୁପ୍ତଘାଟି ଓ ଗିରିଦୁର୍ଗ ହିସାବରେ ତଥା ହସ୍ତୀଦୁର୍ଗ ରୂପେ ବ୍ୟବହୃତ ହୋଇଆସୁଛି । ଏହାରୁ ପ୍ରବଳ ପରାକ୍ରମ ହସ୍ତୀ ବିଦେଶକୁ ରପ୍ତାନୀ ହେଉଥିବାର ମଧ୍ୟ ପର୍ଯ୍ୟାପ୍ତ ପ୍ରମାଣ ମିଳେ ।

---

(୧) ଓଡ଼ିଶାର ଇତିହାସ—ଡ଼: ହରେକୃଷ୍ଣ ମହତାବ ।

(୨) i) Indian culture—Vol III. Page 230.

(iii) History of Ancient, India by Ramsankar Tripathy. Page 242.

ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ଅନନ୍ତ ବର୍ମା ବଜ୍ରହସ୍ତ ଯେଉଁ ଏକ ହଜାର ହସ୍ତୀ ପ୍ରାର୍ଥୀମାନଙ୍କୁ ଦାନ ଦେଇଥିଲେ, ସେ ସବୁ ହସ୍ତୀ ନିର୍ଣ୍ଣିତ ରୂପେ ମହେନ୍ଦ୍ରାଞ୍ଚଳର ସମ୍ପତ୍ତି । କେନ୍ଦୁପାଟଣା ପଞ୍ଚାବୀ ମଠ ତାମ୍ର ଶାସନରୁ ଜଣାଯାଏ ଯେ ଚୋଡ଼ଗଙ୍ଗ ଦେବ ଉତ୍କଳ ଜୟକରି ଅଗଣିତ ଅଶ୍ୱ ଓ ପଦାତିକ ସୈନ୍ୟ ସାଙ୍ଗକୁ ଅସଂଖ୍ୟ ଯୁଦ୍ଧହସ୍ତୀ ଓ ପ୍ରଚୁର ଧନ ଅଧିକାର କରିଥିଲେ (୭) । ଐତିହାସିକ ଅଭିଲେଖରୁ ଜଣାଯାଏ ଯେ ଚୋଡ଼ଗଙ୍ଗ ଦେବଙ୍କର ଅନେକଶତ ହଜାର ହସ୍ତୀ ଥିଲେ ।

> ନବନବତ ସହସ୍ର କୁଞ୍ଜ-ସ୍ୱାମୀଶ୍ୱର
> ତ୍ରି କଳିଙ୍ଗାଧିପତି ଗଙ୍ଗାନ୍ୱୟାବଲମ୍ବନ
> ସମ୍ପ୍ରୀ ଚୋଡ଼ଙ୍ଗ ଦେବ । (୮)

ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଓଡ଼ିଶାରେ ଓଡ଼ିଶାର ସୀମାଥିଲା ଉତ୍ତରରେ ଗଙ୍ଗାନଦୀ, ଦକ୍ଷିଣରେ ଗୋଦାବରୀନଦୀ, ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ପୂର୍ବଘାଟ ପର୍ବତମାଳା । ଯଥାର୍ଥରେ, ମହେନ୍ଦ୍ରାଞ୍ଚଳ ଏହି ରାଜ୍ୟସୀମାନ୍ତର୍ଗତ କେନ୍ଦ୍ରାଞ୍ଚଳ ଅଟେ । ନରସିଂହ ତାମ୍ରଶାସନରେ ଦେଖିବାକୁ ମିଳେ—

> "ଧନ-କନକ-ସମୃଦ୍ଧୋ ଗଙ୍ଗବାଡ଼ି ପ୍ରସିଦ୍ଧଃ ।
> ସକଳ ବସୁଧ ଭୂତଃ ସ୍ୱର୍ଗବର୍ଗୋପି ଭୋଗ୍ୟଃ ।
> ତଦଧିପ ଇତି ଶ୍ୟୋଭୋଽନନ୍ତ ବର୍ମନୃପେନ୍ଦ୍ରଃ
> ସମଭବ ଦତି ରୂପରଙ୍ଗ ନାମ୍ନା ତଦାଦ୍ୟ ।" (୯)

ବର୍ତ୍ତମାନ କାଳରେ ମହେନ୍ଦ୍ରଗିରି ଏକ ସ୍ୱତନ୍ତ୍ର ପ ।ସ୍ତର ଶାସନାଧୀନ । ତାର ହେଡ଼କ୍ୱାର୍ଟରସ୍ ହେଉଛି "ଗଙ୍ଗାବାଡ" । ଏହା ମହେନ୍ଦ୍ରଗିରି ବ୍ଲକର ଅନ୍ତର୍ଗତ ଏହି 'ଗଙ୍ଗାବାଡ' ହିଁ ତେଲୁଗୁ ଭାଷୀଙ୍କ ମୁଖରେ 'ଗଙ୍ଗାବାଡ଼ୀ' ରୂପେ ଉଚ୍ଚାରିତ । ପୁନଶ୍ଚ ଏହି ଅଞ୍ଚଳରେ ଯେଉଁଠାରେ 'ଶିକୁଲୀ ଗଙ୍ଗାବାଡ' ସ୍ଥାନଟି ଅବସ୍ଥିତ ସେହିଠାରେ ହିଁ 'ଗୁପ୍ତମହେନ୍ଦ୍ର' ନାମରେ ପରିଚିତ । ଏହା ଦୁର୍ଗମ ମହେନ୍ଦ୍ରଗିରି ଦୁର୍ଗର ଗୁପ୍ତସ୍ଥାନ ଅଟେ । ଏହି ସ୍ଥାନରୁ 'ଦାରୁବ୍ରହ୍ମ'ର ଦୃଶ୍ୟ ହିଁ "ସ୍ୱର୍ଗ ବର୍ଗୋପିଭୋଗ୍ୟଃ" ସ୍ଥାନ । ମହେନ୍ଦ୍ରଗଡ଼ ନାମକ ପ୍ରାଚୀନଦୁର୍ଗ ଓଡ଼ିଶାର ମହାରାଜା କପିଳେନ୍ଦ୍ରଦେବ ନିର୍ମାଣ କରିଥିବା ପ୍ରସଙ୍ଗ ମାଦଳାପାଞ୍ଜିରେ ଉଲ୍ଲେଖ ହୋଇଅଛି ।

ମୋଗଲ ରାଜତ୍ୱ କାଳରେ ଏହି ଅଂଚଳ ସମ୍ପୂର୍ଣ୍ଣଭାବେ ଅବହେଳିତ ବୋଲି କୁହାଯାଇପାରେ । ସମ୍ଭବତଃ ମୋଗଲ ଆକ୍ରମଣ ପରେ ଓଡ଼ିଆ ରାଜାମାନଙ୍କ ପତନ ପର୍ଯ୍ୟନ୍ତ ମୋଗଲ ଓ ମରହଟ୍ଟାମାନଙ୍କ ସମୟରେ ଯେଉଁ ବିପର୍ଯ୍ୟସ୍ତ ବାତ୍ୟା ଓଡ଼ିଶାକୁ

୭, ୮ ଓ ୯ ଇତିହାସ ତଥ୍ୟର ଦ୍ରଷ୍ଟବ୍ୟ

ଷଡ଼ବିଂଶତ କଳ୍ପ ସେଥିରେ ମହେନ୍ଦ୍ର ଓ ତତସ୍ଥ ଜନପଦର ଅବହେଳିତ (୧) ତାହାର ନିଦର୍ଶନ ଭାବେ ମହେନ୍ଦ୍ରଗିରିର ଭଗ୍ନବିଗ୍ରହ ଇତସ୍ତତଃ ପଡ଼ିରହିଥିବା ଭଗ୍ନ ପ୍ରସ୍ତର କଳା ଅଦ୍ୟାପି ଇଙ୍ଗିତ ଦିଏ । ପୂର୍ବରୁ ସୂଚିତ ମହେନ୍ଦ୍ରଗିରି ପାଦଦେଶର ଶିବାଳୟ 'ତାଡ଼କେଶ୍ୱର', ନାଗସ୍ୱଣପୁର ଗଡ଼ ନିକଟସ୍ଥ ଶିବାଳୟ 'ତ୍ରିମୂର୍ତ୍ତେଶ୍ୱର' ଜୀର୍ଣ୍ଣୋଦ୍ଧାର ସେହି ଯୁଗ ବିଶ୍ୱାସିତାର ନମୁନା ଯୋଗାଏ । ଏହି ଅଞ୍ଚଳମାନ ଅଦ୍ୟାପି ହସ୍ତୀ ବିଚରଣ ସ୍ଥଳ ଅଟେ ।

ବ୍ରିଟିଶ ଶାସନ କାଳରେ ନବଗଡ଼ଦୁର୍ଗର ଅଧଃପତନ ହୁଏ । ସେହି ଗଡ଼ଦୁର୍ଗମାନଙ୍କ କେନ୍ଦ୍ରରେ ମହେନ୍ଦ୍ରଗିରି ଖ୍ୟାତ ଅକ୍ଷୁଣ୍ଣ ରହିଥିଲେ ହେଁ ରାସ୍ତାଘାଟର ଆଶାନୁରୂପ ଉନ୍ନତ ପରିଲକ୍ଷିତ ହୁଏନାହିଁ । କେବଳ ମଞ୍ଜୁଷା ରାଜାଙ୍କଦ୍ୱାରା ଆଧ୍ୟାତ୍ମିକ ପୀଠ ପର୍ଯ୍ୟନ୍ତ ରାସ୍ତା ମରାମତି (୨) ଓ ତିଆରି ହୁଏ । ବିଦ୍ରୋହୀମାନଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ହେଉ ଅଥବା ବାଣିଜ୍ୟ କାରବାରର ସଫଳ ଉଦ୍ଦେଶ୍ୟରେ ହେଉ ବ୍ରିଟିଶ ଯୁଗରେ ସାମାନ୍ୟ ରାସ୍ତା ମରାମତି ହେବା ସଙ୍କେତ ମିଳେ । ଅନ୍ୟାନ୍ୟ ଗିରିଦୁର୍ଗମାନଙ୍କର ଶକ୍ତିକ୍ଷୟ ମହେନ୍ଦ୍ରଗିରି ଦୁର୍ଗର ଖ୍ୟାତି ହ୍ରାସର କାରଣ ହେଲା । ତଥାପି ଏହି ଗିରିଦୁର୍ଗ ଯେ ଦିନେ ହସ୍ତୀଦୁର୍ଗ ଥିଲା ତାର ସଙ୍କେତ ସ୍ୱରୂପ ତାର ଚତୁର୍ଦ୍ଦିଗରେ ଅବସ୍ଥିତ ଗ୍ରାମଗୁଡ଼ିକ ଅଂଚଳ 'ହାତୀବାଡ଼ି' ନାମରେ ପରିଚିତ ହୋଇ ଅଦ୍ୟାପି ପ୍ରତ୍ୟକ୍ଷ ପ୍ରମାଣ ଯୋଗାଏ । ଏହି ଗିରିଦୁର୍ଗର ଦକ୍ଷିଣ ପଶ୍ଚିମରେ ଅବସ୍ଥିତ ଦୁର୍ଗ ଗଣ୍ଡାହାତୀ ଗଡ଼ର ପୂର୍ବତନ ଶାସକ ବଂଶୋଦ୍ଭବମାନଙ୍କ ଗଜେନ୍ଦ୍ରପଦବୀ ଅଦ୍ୟାପି ସେହି ଗୌରବାବହ ସ୍ମୃତି ବଜାୟ ରଖିଛି ।

ଯଥାର୍ଥରେ ଭାରତ ଉପରେ ବୈଦେଶିକ ଆକ୍ରମଣ ଯୋଗୁଁ ଓ ସେହି ବଣିକ ଗୋଷ୍ଠୀର ଶାସନ କାଳରେ ବାଣିଜ୍ୟ ବ୍ୟବସାୟ ଦ୍ୱାରା ଏହି ଗିରିଦୁର୍ଗ ବିପ୍ଳବୀ ଜାତୀୟ ବୀରଙ୍କ ଗୁପ୍ତଘାଟିରେ ପରିଣତ ହୋଇଥିଲା । ମରହଟ୍ଟା ଶାସନ କାଳରୁ ପୂର୍ବ ଭାରତ କମ୍ପାନୀ ରାଜତ୍ୱକାଳ ପର୍ଯ୍ୟନ୍ତ କଳିଙ୍ଗ ପାଟଣାଠାରୁ ଖୋର୍ଦ୍ଧା ପର୍ଯ୍ୟନ୍ତ ରେଲରାସ୍ତା ନିର୍ମାଣ ଓ ସେହି କମ୍ପାନୀ ଶକ୍ତିକୁ ଅଥର୍ବ କରିବା କ୍ଷେତ୍ରରେ ମହେନ୍ଦ୍ରଗିରିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବ୍ରିଟିଶ ରାଜତ୍ୱ କାଳରେ ଜାତୀୟ ବିପ୍ଳବୀଗଣ ହତ୍ୟା ଓ ଅତ୍ୟାଚାର ଭୟରେ

---

(୧) ମହେନ୍ଦ୍ରଗିରି ପ୍ରବନ୍ଧ : ଡକ୍ଟର କୃଷ୍ଣଚନ୍ଦ୍ର ଜେନା, ଉତ୍କଳ ପ୍ରସଙ୍ଗ, ଡିସେମ୍ବର ୧୯୮୦

(୨) ମହେନ୍ଦ୍ର—ଚିନ୍ତାମଣି ଗ୍ରନ୍ଥାବଳୀ ପୃ ୭୬୧. (୧୯୧୮ର ଅବସ୍ଥା ସୂଚିତ) ସାବାଗଡ଼ର ସାରଙ୍ଗ ବଂଶୋଦ୍ଭବ ୧୦ ମାଇଲ ମଧ୍ୟରେ ୭୦ ଗୋଟି ପାବଚ୍ଛ ନିର୍ମାଣ କରି ତତ୍କାଳୀନ ଗଭର୍ଣ୍ଣମେଣ୍ଟଙ୍କଠାରୁ ଯଥେଷ୍ଟ ପୁରସ୍କାର ପାଇଥିଲେ ।

ନିଜର ସୁରକ୍ଷା ପାଇଁ ଏହି ଗିରିଦୁର୍ଗରେ ଆତ୍ମଗୋପନ କରୁଥିଲେ । ୧୯୩୬ ମସିହାରେ ଓଡ଼ିଶା ପ୍ରଦେଶ ସ୍ୱତନ୍ତ୍ର ହେଲା, କିନ୍ତୁ ମହେନ୍ଦ୍ରଗିରି ଦୁର୍ଗର ଅବହେଳିତ ରୂପ ବାରବାଟୀ ଦୁର୍ଗର ଧ୍ୱଂସାବଶେଷ ଭଳି ଦର୍ଶକଙ୍କ ପାଇଁ କେବଳ ଏକ ପର୍ଯ୍ୟଟନ ସ୍ଥଳ ହୋଇ ରହିଲା । ସମ୍ପ୍ରତି ଏହା ନକ୍ସଲପନ୍ଥୀଙ୍କ ଆଡ୍ଡାସ୍ଥଳୀ ଭାବେ ଦେଶରେ ବିଶୃଙ୍ଖଳା ସୃଷ୍ଟି କରିବା ଫଳରେ ମହେନ୍ଦ୍ରାଞ୍ଚଳବାସୀଙ୍କ ସୁରକ୍ଷା କରିବା ନିମିତ୍ତ ଏଠାକାର ବିଭିନ୍ନ ଅଞ୍ଚଳର ସୈନ୍ୟ ଛାଉଣିରେ ପରିଣତ । (୧) ଅଧୁନା ମହେନ୍ଦ୍ରଗିରି ବ୍ଲକ୍ ଠାରୁ ମନ୍ଦିର ସ୍ଥଳୀ ପର୍ଯ୍ୟନ୍ତ ରାସ୍ତା ନିର୍ମାଣ ଆରମ୍ଭ ହୋଇଛି । ଏହା ସମ୍ପୂର୍ଣ୍ଣ ହେବା ପରେ ଭକ୍ତମାନଙ୍କ ଗୋକର୍ଣ୍ଣେଶ୍ୱର ମହାଦେବଙ୍କ ପୂଜା ଅର୍ଚ୍ଚନା କରିବା ସୁଯୋଗ ମିଳିବା ସଙ୍ଗେ ସଙ୍ଗେ ପରିଦର୍ଶକମାନଙ୍କ ପକ୍ଷେ ମହେନ୍ଦ୍ରଗିରିର ପ୍ରାକୃତିକ ଶୋଭାସମ୍ଭାର ଅବଲୋକନ ତଥା ପ୍ରାଚୀନ ସଂସ୍କୃତିର ପୁନରୁତ୍ଥାନ ଲାଗି ମାର୍ଗ ଉନ୍ମୋଚିତ ହେବ ।

## (୩) ପ୍ରାଚୀନ ସଂସ୍କୃତି:

ଭାରତର ପ୍ରାଚୀନ ସଂସ୍କୃତିର ବିକାଶ ମୂଳରେ ମହେନ୍ଦ୍ରଗିରିର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଗୋଟିଏ ଜାତି ତାର କଳା ଓ ସଂସ୍କୃତି ମାଧ୍ୟମରେ ହିଁ ତିଷ୍ଠି ରହେ । ଭାରତର ପ୍ରାଚୀନ କଳା ଓ ସଂସ୍କୃତି ବହନ କରି ଏହି କଳିଙ୍ଗ ତିଷ୍ଠି ରହିଛି । ସମସ୍ତ କଳାର ସମାହାର ଏହି ମହେନ୍ଦ୍ରଗିରିରେ ହିଁ ପରିଷ୍ଫୁଟ । କେତୋଟି ମନ୍ଦିର ଅଦ୍ୟାପି ଅକ୍ଷତ ଅବସ୍ଥାରେ ସୁରକ୍ଷିତ । (୨) ଏହା ଚିହ୍ନଟ କରିବା ଆମର କର୍ତ୍ତବ୍ୟ । ଚିତ୍ରକଳା, ଶିଳ୍ପକଳା, ସ୍ଥାପତ୍ୟକଳା, ମୂର୍ତ୍ତିକଳା ଓ ନିର୍ମାଣ କଳାର ସମାହାର ଏହି ମହେନ୍ଦ୍ରଗିରିର ମନ୍ଦିର ସମୂହ ଏବଂ ଭଗ୍ନାବସ୍ଥାରେ ଥିବା ବିକ୍ଷିପ୍ତ ମନ୍ଦିର ମଧ୍ୟ ଉତ୍କଳୀୟ ଶିଳ୍ପ ଓ ସ୍ଥାପତ୍ୟର ସଙ୍କେତ ବହନ କରିଛି । ଅବ୍ୟାହତ ରହିଛି ତାର ପୁରାତନ ଉନ୍ନତ ସାଂସ୍କୃତିକ ପ୍ରବାହର ଭାବଧାରା । ଯଦିଏତ ଜଣେ ଗବେଷକ ବୌଦ୍ଧକୀର୍ତ୍ତି ପାଇଁ ହାରନାଥ ବା ବୌଦ୍ଧଗିରି, ସମୁଦ୍ରଗୁପ୍ତଙ୍କ କଳାପାଇଁ ଏଲୋରା ଓ କଳିଙ୍ଗ ଶିଳ୍ପପାଇଁ କୋଣାର୍କ ବା ଭୁବନେଶ୍ୱର ଯାଇପାରେ । କିନ୍ତୁ ମହେନ୍ଦ୍ରଗିରିରେ ଏସବୁ ବିଭିନ୍ନ ସଂସ୍କୃତିର ସମାହାରର ଚିତ୍ର ଉପଲବ୍ଧ । ଶିଳ୍ପ ଶାସ୍ତ୍ରାନ୍ତର୍ଗତ ବସ୍ତୁଦ୍ୟୋତକ ପ୍ରାଚୀନ କୁନ୍ତିଗୁମ୍ଫା ଯାହାକି ଆର୍ଯ୍ୟସ୍ଥାପତ୍ୟର ସ୍ମାରକୀ ଓ ଦ୍ରାବିଡ଼ କଳାର ପ୍ରଭାବ ସହ ନାଗର, ଦ୍ରାବିଡ଼ ଓ ବେଶର ସମସ୍ତ କଳାକୃତିର ସଙ୍କେତ ବହନ କରେ ତା'ର ସାଂସ୍କୃତିକ ଭାବଧାରାକୁ

---

(୧) ବର୍ତ୍ତମାନ ସରକାରଙ୍କ ଦ୍ୱାରା ଛଅଗୋଟି କେନ୍ଦ୍ରରେ ଅବସ୍ଥାପିତ । ସତେ ମନେହୁଏ ସେହି ଗିରିଦୁର୍ଗର ସ୍ୱାକ୍ଷର ବହନ କରି 'ଲବଣ୍ୟଗଡ଼' ଉକ୍ତ ଛାଉଣୀମାନଙ୍କ ହେଡକ୍ୱାର୍ଟର ହିସାବରେ ଦଣ୍ଡାୟମାନ ।

(୨) କର୍ପୂର ଉଡ଼ିଗଲେ ମଧ୍ୟ କନାଟି ପଡ଼ିରହିଛି ।

ଅଙ୍ଗୁଳି ନିର୍ଦ୍ଦେଶ କରି ଯେପରି କହିଦେଉଛି —"ରେ ଉତ୍କଳବାସୀ ! ତୁ ଭୀରୁ ନୁହଁ, କାପୁରୁଷ ନୁହଁ, ସ୍ୱାର୍ଥପର ନୁହଁ, କୁଳାଙ୍ଗାର ନୁହଁ, ତୁ ଅଟୁ ବୀର ପୁଙ୍ଗବ । ଶାନ୍ତି ଶିକିଏ ପଛକୁ ହଟିବା ।" ଆମେ ନିଜେ ନିଜ ଧର୍ମରକ୍ଷା କଲେ ହେବ । "ଧର୍ମୋରକ୍ଷତି ଧାର୍ମିକଂ" ।

ସପ୍ତକୁଳାଚଳ ମଧ୍ୟରେ ଶ୍ରେଷ୍ଠ ମହେନ୍ଦ୍ର ଗିରି ପ୍ରାଚୀନ କଳିଙ୍ଗର ପ୍ରାଣକେନ୍ଦ୍ର ସ୍ଥଳରେ ସମଗ୍ର କଳିଙ୍ଗ, କଙ୍ଗୋଦ, କୋଶଳ ଓ ତୋଷାଳୀ ଅର୍ଥାତ୍ ବର୍ତ୍ତମାନର ସମସ୍ତ ଦକ୍ଷିଣ ଭାରତର ଶୈବ, ଶାକ୍ତ ଓ ବୈଷ୍ଣବ, ବୌଦ୍ଧ ସଂସ୍କୃତିର ମୂଳପିଣ୍ଡ ହିସାବରେ ଦଣ୍ଡାୟମାନ । ଏହିଠାରେ ହିଁ କେନ୍ଦ୍ରୀଭୂତ ସୂର୍ଯ୍ୟପୂଜା, ସହଜ ସାଧନା ଓ ବୌଦ୍ଧ ଭାବନାର ସାଂସ୍କୃତିକ ସ୍ୱବ୍ୟାସ, ଭାଗବତ ଧର୍ମର ଗଣତାନ୍ତ୍ରିକ ସ୍ୱବ୍ୟାସ । (୧) ପ୍ରାଚୀନ କୀର୍ତ୍ତିର ଭଣ୍ଡାର ଏହି ମହେନ୍ଦ୍ର ଗିରି ପୂର୍ବରୁ ପରଂପରାକ୍ରମେ ଆଦିବାସୀମାନଙ୍କ ଉପରେ ସାଂସ୍କୃତିକ ପ୍ରଭାବ ପକାଇଛି ଓ ପ୍ରଭାବାନ୍ୱିତ ହୋଇଛି । ଉତ୍ତର ଭାରତ ଓ ଦକ୍ଷିଣ ଭାରତର ସାଂସ୍କୃତିକ ସମନ୍ୱୟରେ ଏହି ପର୍ବତମ ଶେଷ କେବଳ ଚମତ୍କାରପ୍ରଦ ଘଟଣାମାନଙ୍କ ଦୃଷ୍ଟିକୁ ଆଣିଛି ତାର ମୂକସାକ୍ଷୀ ତାରୁବ୍ରହ୍ମ ଫାଟକ ଓ ଦୁର୍ଗାଞ୍ଚଳ କଣ୍ଟୁର ରାଜ୍ୟ (ଗିରିକୋଟର) । ଏଠାକାର ମୁଖ୍ୟ ଆକର୍ଷଣ ହେଉଛି 'ଗୋକର୍ଣ୍ଣେଶ୍ୱର ମହାଦେବ' ଯାହାଙ୍କୁ କି 'ପୁରୁଷୋତ୍ତମ' ଆଖ୍ୟା ପ୍ରଦାନ କରାଯାଇଛି ଓ କାଳକ୍ରମେ ପରଂପରା ଅନୁଯାୟୀ ବିଭିନ୍ନ ଧର୍ମାବଲମ୍ବୀ ରାଜାମାନେ ଭିନ୍ନ ଭିନ୍ନ ରୂପରେ ପୂଜା କରିଛନ୍ତି ।

ଏହି ମହେନ୍ଦ୍ର ଗିରିରେ ବିଶଲ୍ୟକରଣୀ ମହୌଷଧି ମିଳିବା ପ୍ରମାଣ ମଧ୍ୟ ଆୟୁର୍ବେଦବିତ୍‌ଙ୍କ ଦ୍ୱାରା ସମର୍ଥିତ । ପ୍ରକୃତରେ ଏହା ମହା ବନୌଷଧିର ଭଣ୍ଡାର ଏବଂ ମହେନ୍ଦ୍ର ଗିରିର ବନୌଷଧି ହିମାଳୟର ବନୌଷଧି ଭଳି ଗୁଣକାରକ । ଏକ ଦିଗେ ଅଶୋକ ବୃକ୍ଷର ଗୁମ୍ଫା, ଅନ୍ୟ ଦିଗରେ ବାରମାସୀ ଚମ୍ପକ ବୃକ୍ଷ । ହରିଡ଼ା, ବାହାଡ଼ା, ଅଳା, ସହଜମାରି, ଗୁଡ଼ମାରି, ଜନ୍ଦାମାରି, ଭ୍ରମରମାରି ଇତ୍ୟାଦି ବନୌଷଧି ସବୁହି ନିମିତ୍ତ ଅସଂଖ୍ୟ ଆୟୁର୍ବେଦବିତ୍ ପର୍ଯ୍ୟଟକପରି ସତତ ଅନୁସନ୍ଧାନରତ । ଲୋକ ବିଶ୍ୱାସ ରହିଛି ମହେନ୍ଦ୍ରରେ ଅବସ୍ଥାନ କାଳରେ ଉତ୍କଟ ମାରାତ୍ମକ ବ୍ୟାଧିରୁ ମଧ୍ୟ ମୁକ୍ତ ମିଳିଥାଏ । ପ୍ରକୃତି ସହିତ ମାନବର ସମ୍ପର୍କ କେଉଁଭଳି ଘନିଷ୍ଠ ତାହା ମହେନ୍ଦ୍ର ହିଁ ଶିକ୍ଷାଦିଏ । ବସନ୍ତ ଋତୁରେ ଅଶୋକ ଫୁଲର ଶୋଭା, ପଳାଶ ଫୁଲର ରକ୍ତିମା ଓ ସଙ୍ଗଆମ୍ବ ବଗିଚାର ମନୋଜ୍ଞ ଆକର୍ଷଣ ଯାତ୍ରୀଙ୍କର ମନୋହରଣ କରିଥାଏ ।

---

(୧) ଭାଗବତ ଧର୍ମ ସମୀକ୍ଷା : ଡକ୍ଟର ସର୍ବେଶ୍ୱର ଦାସ, ପୃ ୧୭୩.

ଏହିଭଳି ଏକ ପ୍ରାକୃତିକ ସମ୍ପଦର ସୁରକ୍ଷା ପାଇଁ ଉତ୍କଳବାସୀଙ୍କ ଉଦାସୀନତା ବାସ୍ତବରେ ବିସ୍ମୟକର । ଏକଦା ଇଷ୍ଟଇଣ୍ଡିଆ କଂପାନୀ ଏଠାରେ ଶୈଳ ନିବାସ ପ୍ରତିଷ୍ଠା ପାଇଁ ଯୋଜନା କରିଥିଲି, କିନ୍ତୁ ତାହା ଫଳପ୍ରସୂ ହୋଇନଥିଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପରେ ମଧ୍ୟ ଏ ଦିଗରେ କୌଣସି ତତ୍ପରତା ପ୍ରକାଶ ପାଇ ନାହିଁ । ଯଦିଓ ନୂତନ ଓଡ଼ିଶାରେ କୌଣସି ଶୈଳ ନିବାସ ନାହିଁ । ତେବେ ପାଶ୍ଚାତ୍ୟ ସାଧକ ଉଚ୍ଚତା ବିଶିଷ୍ଟ ଏହି ମହେନ୍ଦ୍ରଗିରି ହେବ ଓଡ଼ିଶାର ଶ୍ରେଷ୍ଠ ପ୍ରାକୃତିକ ପାର୍ବତ୍ୟ ନିବାସ । (୧)

ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶା ମିଶ୍ରଣ ଆନ୍ଦୋଳନର ନେତୃବର୍ଗଙ୍କ ଅଶାନ୍ତ ଉଦ୍ୟମ ସତ୍ତ୍ୱେ ମହେନ୍ଦ୍ରର ଦକ୍ଷିଣ ପୂର୍ବାଞ୍ଚଳ (ଟିକଲି, ବ୍ରାହ୍ମଣ ତରଳା, ମଞ୍ଜୁଷା, ମୁକ୍ତାପୁର) ଓଡ଼ିଶାର ଅନ୍ତର୍ଭୁକ୍ତ ନ ହେବା ଫଳରେ ଏହାର ସାଂସ୍କୃତିକ ବିକାଶଧାରା ବିଶେଷ ବାଧାପ୍ରାପ୍ତ ହୋଇଛି । ସ୍ୱତନ୍ତ୍ର ଓଡ଼ିଶା ଗଠିତ ହେବାପରେ ମଧ୍ୟ ୧୯୭୧ ପର୍ଯ୍ୟନ୍ତ ଏକ ପବିତ୍ର ତୀର୍ଥ ସ୍ଥଳ ରୂପେ ମାନ୍ୟତାକୁ ଅକ୍ଷୁଣ୍ଣ ରଖିଥିବା ମହେନ୍ଦ୍ରଗିରିରେ ନକସଲପନ୍ଥୀଙ୍କ ଆବିର୍ଭାବ ଏହାର ସାଂସ୍କୃତିକ ପ୍ରଗତି ମୂଳରେ କୁଠାରାଘାତ ଭଳି ମନେହୁଏ । କିନ୍ତୁ ଏମାନଙ୍କ ଦ୍ୱାରା ସଂଘଟିତ ଆତଙ୍କ ତୁଳନାରେ ଦ୍ୱାଦଶ ଶତାବ୍ଦୀ ପ୍ରାରମ୍ଭରେ ଚୋଡ଼ଗଙ୍ଗ ଦେବଙ୍କ କଳିଙ୍ଗ ବିଜୟକାଳୀନ ରକ୍ତାକ୍ତ ଯୁଦ୍ଧ ସହସ୍ର ଗୁଣ ରୋମହର୍ଷଣ କରିଥିଲା । ଏତଦ୍‌ବ୍ୟତୀତ ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ପାରଳାର ଆଧିପତ୍ୟ ଦମନ ଓ ଘୁମୁସରର ଗୃହଯୁଦ୍ଧ, ଭଞ୍ଜ-ଗଜପତି ମଧ୍ୟରେ ସୃଷ୍ଟି ଗୋଳମାଳର କେନ୍ଦ୍ର ମହେନ୍ଦ୍ରାଞ୍ଚଳ, ବିଦ୍ରୋହର କେନ୍ଦ୍ର ସ୍ଥାନରେ ବିଦ୍ରୋହୀଙ୍କ ଜାଗରଣର କେନ୍ଦ୍ର ବିନ୍ଦୁ ହେଲା । ଏ ସମ୍ପର୍କରେ ମହାବୀର ଦୋରବିଷୋୟୀ ଓ ଘୁମୁସର ମେଳି, ବୀର ଚକରାଙ୍କ ଗାଇବା ମେଳି (୨) ପାରଳା ପାଇକ ମେଳି (୩) ଇତ୍ୟାଦି ଆଲୋଡ଼ନ କରିବା ନିତାନ୍ତ ଆବଶ୍ୟକ । କଳେବର ଅଯଥା ବୃଦ୍ଧି ଅନାବଶ୍ୟକ ମନେକରି ଏଠିକି ସୂଚନା ଦିଆ-

(୧) ଜ୍ୟୋତିଷ ବିଶାରଦ ପଣ୍ଡିତ ବାଇକୋଲି ମହାପାତ୍ର— ଓଡ଼ିଶା ଇତିହାସରେ ଖଲିକୋଟର ସ୍ଥାନ ପୃ ୧୧୮ରୁ ୧୧୭

(୨) ମହାବୀର ଦୋରବି ବିଶୋୟୀ— ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ, ସନ୍ତୋଷ ପବ୍ଲିକେସନ, କଟକ ୧୯୭୧

(୩) (i) ପାଇକ ବିଦ୍ରୋହ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଏମ୍.ଏ. ଓଡ଼ିଆ ଇତିହାସ ଗବେଷଣା ଭବନ, ପୁରୀ

(ii) ଓଡ଼ିଆରେ ସ୍ୱାଧୀନତା ସଂଗ୍ରାମ ଇତିହାସ—ପ୍ରଥମ ଭାଗ - ପୃ. ୪ ଠାରୁ ୧୮

ଯାଇପାରିବ; ଉପରୋକ୍ତ ସଂଗ୍ରାମର ଦମନ ଉଦ୍ଦେଶ୍ୟରେ ଜର୍ଜ ରସେଲ ସାହେବଙ୍କ ଦ୍ୱାରା ଆୟୋଜିତ ଆକ୍ରମଣ କାଳରେ ଯେଉଁ ଅସାଧାରଣ ରକ୍ତପାତ ଘଟିଥିଲା ମହେନ୍ଦ୍ରଗିରି ହିଁ ମୂକସାକ୍ଷୀ । ସେହି ସମୟରେ ରସେଲ ସାହେବଙ୍କ ଲବଣ୍ୟଗଡ଼ ଓ ବୁସ୍ତଗଡ଼ ଦୁଇଟି ଗଡଦୁର୍ଗର ଦୁଇ ବିଶୋୟୀ ବାହୁବଳେନ୍ଦ୍ର ବଳଆର ସିଂ ଓ ରାଧାକୃଷ୍ଣ ଦଣ୍ଡସେନାଙ୍କୁ ମୁକ୍ତାକାଶ ତଳେ ସହସ୍ର ଜନତାର ସମ୍ମୁଖରେ ଯେଉଁଭଳି ଫାଶି ଖୁଣ୍ଟରେ ଝୁଲାଇ ଆତଙ୍କ ପରିବେଶ ସୃଷ୍ଟି କରିବା, ପୁନଶ୍ଚ ବିଦ୍ରୋହ ଦମନ ନିମନ୍ତେ ଗଞ୍ଜାମ ବନ୍ଦର ଦେଇ ହଜାର ହଜାର ସୈନ୍ୟଙ୍କ ଆଗମନ, କଳିଙ୍ଗ ପାଟଣା ବନ୍ଦର ଦେଇ ଅସଂଖ୍ୟ ଫୌଜ ପାରଳାରେ ପଦାର୍ପଣ, ଫରାସୀ ଓ ଇଂରେଜମାନଙ୍କ ଦମନ ଲୀଳା, ପରିଶେଷରେ ପିଣ୍ଡାରୀମାନଙ୍କ ଦମନ ଲୀଳା ଏବଂ ଜାଠମାନଙ୍କ ତାଣ୍ଡବଲୀଳା—ଏ ସମସ୍ତର ନୀରବଦ୍ରଷ୍ଟା ଏହି ମହେନ୍ଦ୍ରଗିରି, ଗଞ୍ଜାମ ଋଷିକୁଲ୍ୟା ମୁହାଣର ପୋତାଗଡ଼ ଦୁର୍ଗ ଓ ତତ୍ସ୍ଥ ଇଂରେଜ କେପ୍‌ଟେନ ଓ କମାଣ୍ଡରଙ୍କ ସମାଧି ସମୂହ, ମହେନ୍ଦ୍ର ପାଦଦେଶର ନାରାୟଣପୁର—ଲକ୍ଷ୍ମୀପଦର ଗ୍ରାମର ତୋପ ଓ ବାରୁଦସ୍ତୂପ ଓ ଅନ୍ୟାନ୍ୟ ଅବକ୍ଷୟଜନିତ ଗଡ଼ଦୁର୍ଗମାନଙ୍କ ସ୍ଥିତି,(୩) ତାହା ମହେନ୍ଦ୍ର ଅଞ୍ଚଳ ଇତିହାସର ଏକ କଳଙ୍କିତ ଅଧ୍ୟାୟ । ଖ୍ରୀ:ଅ: ୧୭୬୭ଠାରୁ ସଂଗ୍ରାମ ଆରମ୍ଭ ହୁଏ । ପାରଳା ରାଜା ନାରାୟଣ ଦେବଙ୍କୁ ଦମନ କରିବା ଉଦ୍ଦେଶ୍ୟରେ କର୍ଣ୍ଣେଲ ପିଚ ମାନ୍ଦ୍ରାଜରୁ ଯେଉଁ ସେନାବାହିନୀ ପ୍ରେରଣ କରିଥିଲେ: ସେମାନଙ୍କ ଆତଙ୍କରାଜ କୋହଲ ମୁସଲମାନ ଫଉଜ ସହିତ ଘୁମୁସର, ମହୁରୀ ସମେତ ପାରଳାର ରାଜାମାନଙ୍କର ସଂଘର୍ଷ ହିଁ ଦାୟୀ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗଠାରୁ ଊନବିଂଶ ଶତାବ୍ଦୀ ମଧ୍ୟଭାଗଯାଏ ଉପରୋକ୍ତ ସଂଘର୍ଷ ଓ ସଂଗ୍ରାମ ଆଣିଦେଲା ଏକ ଅଶାନ୍ତ ବାତାବରଣ । ଫଳରେ ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରତି କୁଠାରାଘାତ ହେବା ସଙ୍ଗେ ସଙ୍ଗେ, ଏ ଅଞ୍ଚଳର ପ୍ରାଚୀନ ସଂସ୍କୃତିର ଅବକ୍ଷୟ ପାଇଁ ଦ୍ୱାର ଉନ୍ମୁକ୍ତ ହେଲା । ଏହି ପରିପ୍ରେକ୍ଷୀରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ମହେନ୍ଦ୍ରଗିରିର ଭୂମିକା ବିସ୍ମରଯୋଗ୍ୟ ।

---

(3) History of Ganjam District under British rule. Provincial Gazetters of India, Madras Vol-II

For detail the following may be referred.

a) District Mannual by T. J. Maltby (1882).

b) S. C. Macpheresan's Report on the Khonds.

c) Printed Report of Mr. Russell's Mission.

d) Mereach Agents from 1836 to 1861.

e) History of Gangas Vol-I & II by Dr S. N. Rajguru.

## (୪) ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ମହେନ୍ଦ୍ରଗିରିର ଭୂମିକା :

ପାରଳାଖେମୁଣ୍ଡି ମହାରାଜାଙ୍କୁ ଦମନ କରିବା ପାଇଁ ୧୭୬୭ରେ ମିଃ କଟସ୍‌ଫୋର୍ଡ଼ ଗଞ୍ଜାମରେ ପଦାର୍ପଣ କଲା ପରେ ଏ ଅଞ୍ଚଳରେ ଇଂରଜ ଶକ୍ତି ସୁଦୃଢ଼ ହେଲା । (୧) ଇଂରେଜମାନେ ଏହି ଅଞ୍ଚଳର ଓଡ଼ିଆମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଯାଇ ବହୁ ସଂଖ୍ୟକ ତେଲୁଗୁ ସିପାହିଙ୍କୁ ଭୂମିଦାନ ଦେଇ ଘୁମୁସରଠାରୁ ପାରଳାଖେମୁଣ୍ଡି ମଧ୍ୟରେ ଅବସ୍ଥାପିତ କରାଇଲେ । ଏଥିପାଇଁ ସାହାଯ୍ୟ କରିଥିଲେ ବିଜୟନଗରର ରାଜଭ୍ରାତା ସୀତାରାମ ରାଜୁ । ତାଙ୍କ ଅତ୍ୟାଚାରରେ ଓଡ଼ିଆ କୃଷକମାନେ ଜମି ଗୃହାଦି ତ୍ୟାଗ କରି ବଣ ଜଙ୍ଗଲରେ ଆତ୍ମଗୋପନ କରିବାକୁ ବାଧ୍ୟ ହୋଇଥିଲେ । ମହେନ୍ଦ୍ରଗିରି ହିଁ ସେତେବେଳେ ସେମାନଙ୍କର ଥିଲା ଏକମାତ୍ର ନିରାପଦ ଆଶ୍ରୟ ସ୍ଥଳ । ଓଡ଼ିଆ କୃଷକମାନଙ୍କ ଅପସାରଣ ଫଳରେ ଗଞ୍ଜାମରେ 'ପାଞ୍ଚମାଣିଆ କାଳ୍ପାର' (ଦୁର୍ଭିକ୍ଷ) ଅବସ୍ଥା ସୃଷ୍ଟି ହେଲା । ଆନ୍ଧ୍ର ସିପାହି ନିଯୁକ୍ତି ଓ ଅନ୍ଧ୍ରଙ୍କ କାରବାର ଫଳରେ ଓଡ଼ିଆ ଭାଷାଭାଷୀଙ୍କ ସଂଖ୍ୟା ମଧ୍ୟ କ୍ଷୀଣରୁ କ୍ଷୀଣତର ଥିଲା । ତେଲୁଗୁମାନେ ଶବର ଜାତିର ଲୋକମାନଙ୍କୁ ମଧ୍ୟ ତେଲୁଗୁ ଭାଷାଭାଷୀରେ ପରିଣତ କରିବା ପାଇଁ ପ୍ରଗାଢ଼ ଉଦ୍ୟମ କରିଥିଲେ ।

(୧) ଖ୍ରୀ: ୧୮୨୦ରେ ମିଷ୍ଟର ଓ୍ୱାଲଟର ହେମିଲଟନ ତାଙ୍କର Hindustan ନାମକ ଗ୍ରନ୍ଥରେ ଲେଖିଛନ୍ତି ଯେ ଗଞ୍ଜା ଓ ବଣାଖାପାଟଣା ଯାହାର ପୂର୍ବ ସୀମାରେ ଚିଲିକା ମାଲିଦାଠାରୁ ଦକ୍ଷିଣରେ ରାଜ ମହେନ୍ଦ୍ରୀ ପର୍ଯ୍ୟନ୍ତ ପ୍ରସାରିତ ତାହା ଓଡ଼ିଆର ପ୍ରାଚୀନ ଅଂଶ ହୋଇଥିଲା । (୨)

[୨] ୧୮୭୫ରେ ବିଷ୍ଣୁପ କଲଡୱେଲ୍ କହନ୍ତି—"ଶ୍ରୀକାକୁଲମଠାରେ ତେଲୁଗୁ ଶେଷ ଏବଂ ଓଡ଼ିଆ ଭାଷାର ଆରମ୍ଭ ହୁଏ । [୩] ୧୮୮୧ ଗଞ୍ଜାମ ମେନ୍ୟୁଆଲରେ ଲେଖା ଅଛି ତରଲା (ପଲଶା) ତେଲୁଗୁ ଭାଷାର ଶେଷ ଓ ଓଡ଼ିଆ ଭାଷାର ଆରମ୍ଭ ସ୍ଥଳ । ଉକ୍ତ ଭାବରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସମନ୍ୱୟ ମାଗେ ପରିସ୍ଥିତି ତତ୍କାଳୀନ ଓଡ଼ିଆ ଜାତି ପ୍ରେମୀମାନଙ୍କ ପାଇଁ ଏକ ଆହ୍ୱାନ ଥିଲା । ଏହା ଫଳରେ ୧୯୦୩ରେ ଗଢ଼ି-ଉଠିଥିଲା ଜାତୀୟ ଭାବ ଦ୍ୟୋତନାର ପୀଠ ଉତ୍କଳ ସମ୍ମିଳନୀ । ମଧୁସୂଦନ ଦାସଙ୍କ

---

(୧) ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ପୃ. ୧ ଓ ୧୦

(୨) Hindustan—Vol. II, P. 31.

ଉଦ୍ୟମରେ ସମ୍ବଲପୁର ଓ ଗଞ୍ଜାମ ବିଚ୍ଛିନ୍ନାଞ୍ଚଳମାନଙ୍କରୁ ପ୍ରତିନିଧିବୃନ୍ଦ ଏକତ୍ରିତ ହୋଇଥିଲେ । (୧)

ଆନ୍ଧ୍ରମାନଙ୍କ ତରଫରୁ ୧୯୧୦ ରେ ପ୍ରତିବାଦ ସ୍ୱର ଉଠିବା ଫଳରେ ଆନ୍ଧ୍ରର ସୀମା କୌଣସି ଯାଏ ଚହଲିଟ ହୋଇଥିଲା । ସେତେବେଳେ ଆନ୍ଧ୍ରର ଅଧିକାରୀ ମହେନ୍ଦ୍ରାଞ୍ଚଳର ଓଡ଼ିଆ ଲୋକଙ୍କ ନାମକୁ ତେଲୁଗୁରେ ବଦଳାଇ ଦେଇ ତାଙ୍କର ଜନସଂଖ୍ୟା ଅଧିକ ଦେଖାଇବା ପାଇଁ ଚେଷ୍ଟା କରିଥିଲେ । ଏହି ଅପଚେଷ୍ଟା ୧୯୩୧ ଜନଗଣନା ଯାଏ ଚାଲିଥିଲା । ମହେନ୍ଦ୍ରଗିରି ପାରଳା ଜମିଦାରୀ ଓ ମଞ୍ଜୁଷା ଜମିଦାରୀର କେନ୍ଦ୍ରରେ ଉଭୟ ଜମିଦାରୀର ସୀମାରେଖା ନିର୍ଦ୍ଦେଶ କରୁଥିଲା । ସେଠାକାର ମନ୍ଦିର ମାନଙ୍କ ମଧ୍ୟରୁ ଭୀମ ଦେଉଳଟି ଗଜପତିଙ୍କ ଅଧୀନରେ ଓ କୁନ୍ତୀ ମନ୍ଦିର, ଯୁଧିଷ୍ଠିର ମନ୍ଦିର ଓ ଦାରୁବ୍ରହ୍ମ ସମେତ ମଞ୍ଜୁଷା ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ତେଣୁ ଏହି ସମସ୍ତରେ ଏକ ସମସ୍ୟା ସୃଷ୍ଟି ହୋଇଥିଲା—ଏହା କେଉଁ ପ୍ରଦେଶରେ ରହିବ ? ସେତେବେଳେ ଓଡ଼ିଶା ସାରା ପ୍ରତିବାଦ ହେଲା ପାରଳା ଓଡ଼ିଶାରୁ ବାଦ୍ ଗଲେ ଓଡ଼ିଶା ଗଠନ ନିରର୍ଥକ । ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶାରେ ଦକ୍ଷିଣାଞ୍ଚଳର ସମ୍ମିଶ୍ରଣ ଲାଗି କେତେକ ନେତାଙ୍କ ବିରୁଦ୍ଧ ମତ ସତ୍ତ୍ୱେ ଅପ୍ରାଣ ଉଦ୍ୟମ କରିଥିଲେ । ମଧୁବାବୁ ଓ ମହତାବ ଚାହିଁଲେ ଯେ କୌଣସି ମତେ ଦକ୍ଷିଣ ଅଂଶ ବାଦ ଗଲେ ମଧ୍ୟ ସ୍ୱତନ୍ତ୍ର ଓଡ଼ିଶା ଗଠିତ ହେଉ । ପରଶୁରାମ କ୍ଷେତ୍ର ବାଦ ଗଲେ ଶ୍ରୀକ୍ଷେତ୍ରର ଅବମାନନା ହେବ । ଏହା ଯେପରି ବିଧି ନିର୍ଦ୍ଦେଶ ଥିଲା ।

ବହୁଘାତ ପ୍ରତିଘାତ ମଧ୍ୟରେ ପାରଳା ମହାରାଜାଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା ।' କେବଳ ପାରଳାର ଦୁଇ ତୃତୀୟାଂଶ ଅଞ୍ଚଳ ମଞ୍ଜୁଷା ଓ ଜଳନ୍ତରର ମାଳାଞ୍ଚଳ ଓଡ଼ିଶାର ଅଙ୍ଗୀଭୂତ ହୋଇପାରିଲା । ଏଥିରେ ବ୍ୟଥିତ ହୋଇ ଶଶିଭୂଷଣ ରଥ କହିଥିଲେ ଯେ, ମଞ୍ଜୁଷାକୁ ବଳି ଦେଲା ପରି ହେଲା । (୨) ଦୁଃଖର ବିଷୟ ଏକ ସ୍ୱରବ୍ୟଞ୍ଜକ ସୁନ୍ଦର ନାଦ ମଞ୍ଜୁଷା, ଯାହାର ଅର୍ଥ ଚନ୍ଦ୍ର ପେଟିକା, ତାହା ଆଜି ବିକୃତ ହୋଇ ମନ୍ଦାଶା ରୂପେ ପରିଚିତ ।

ଏହି ସ୍ୱତନ୍ତ୍ର ଓଡ଼ିଶା ଗଠନ ଫଳରେ ମହେନ୍ଦ୍ରଗିରି ପାଦଦେଶର ସମତଳ ଅଞ୍ଚଳ ଓଡ଼ିଶାରେ ମିଶିଲା ନାହିଁ । ଏ ସଂପର୍କରେ ଶଶୀବାବୁ ତାଙ୍କ ଅଭିଭାଷଣରେ ଭବିଷ୍ୟତ ବାଣୀ ଶୁଣାଇଛନ୍ତି—

---

(୧) କୋଣାର୍କ-୫୯ ପୃ-୩୬, ୪୮୬

(୨) ସ୍ୱର୍ଗତ ଶଶିଭୂଷଣଙ୍କ ଜୀବନୀ—ଶ୍ରୀ ଶରତଚନ୍ଦ୍ର ମହାପାତ୍ର, ପୃ ୮୬ ।

"ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନେ ଜାଣିରଖନ୍ତୁ ସେମାନଙ୍କ ଭବିଷ୍ୟତ ଉଜ୍ଜ୍ୱଳ ନୁହେଁ । ସେମାନେ ଓଡ଼ିଶାରେ ମିଶିବା ପାଇଁ ଯେଉଁ ଆଗ୍ରହ ପ୍ରକାଶ କରିଛନ୍ତି ଓ କରିବେ ତାହା କାର୍ଯ୍ୟକାରୀ ହୋଇ ନପାରେ । ସେ ଅବସ୍ଥାରେ ସେମାନେ ନିରାଶ ନହୋଇ ନିଜର କର୍ମ ଆଦରି ଆନ୍ଧ୍ରଭାଇମାନଙ୍କ ସହିତ ତାଙ୍କକୁ କାନ୍ଧ ମିଳାଇ ମାତୃଭାଷା ଯେ କୌଣସି ପ୍ରକାରେ ରକ୍ଷା କରିବାକୁ ଯତ୍ନବାନ ହେବେ ।"

ଓଡ଼ିଶାରେ ବ୍ରିଟିଶ୍ ଶାସନ କାଳର କଥା । ୧୮୦୩ରୁ ଉତ୍କଳ ସମ୍ମିଳନୀ ଗଠନ ସମୟ ୧୯୦୩ ଯାଏ, ଓଡ଼ିଶାର ରାଜନୈତିକ, ସାମାଜିକ, ଭାଷାଗତ ନିଦାରୁଣ ବେଦନା ମଧ୍ୟରେ ୧୯୩୬ ର ଆନନ୍ଦ ମୁଖର ଘଟଣା ସତ୍ତ୍ୱେ ଦାକ୍ଷିଣାତ୍ୟର ବିଚ୍ଛିନ୍ନାଞ୍ଚଳ ଏକ ଦୁଃଖଭରା ନେତ୍ରରେ ତାହାର ପ୍ରାଣକେନ୍ଦ୍ର ମହେନ୍ଦ୍ରଗିରିକୁ ଚାହିଁ ଅଶ୍ରୁବିସର୍ଜନ କରୁଛି । କବିବର ରାଧାନାଥ ରାୟଙ୍କ ଭାଷାରେ—

"ସମଗ୍ର ଉତ୍କଳ ଶୋଭା ତିଲୋତ୍ତମା
ଛବିଳ ଉତ୍କଳେ ଏ ଛବିଳତମା ।"(୧)

ଏହା ବେଦବ୍ୟାସ, ବାଲ୍ମୀକି, କାଳିଦାସ, ସାରଳା ଦାସଙ୍କ ଠାରୁ ଗୋପବନ୍ଧୁ, ଗୋଦାବରୀଶ ଓ କବିଶେଖର ଚନ୍ଦ୍ରମଣିଙ୍କ ପର୍ଯ୍ୟନ୍ତ ଅନେକ କୃତୀ ସାହିତ୍ୟ ରଥୀଙ୍କୁ ମଧ୍ୟ ଅକୃଷ୍ଟ କରିଛି ।

ହଣ୍ଟର ସାହେବ, ଷ୍ଟର୍ଲିଂ ସାହେବ, ଟଏନବୀ ସାହେବ, ଫର୍ଗୁସନ ସାହେବ, ସ୍ମିଥ୍ ସାହେବ, କ୍ୱଲ. ଫାହିୟାନ, ମଣ୍ଟୁ, ହୁଏନ୍ ସାଂ, କନିଂହାମ ପ୍ରମୁଖ ପାଶ୍ଚାତ୍ୟ ପଣ୍ଡିତ ଗବେଷକଙ୍କ ମତାନୁଯାୟୀ ପ୍ରଭାବିତ ହୋଇ କଣ ଯମେ ଆମର ପୂର୍ବଜ ଆର୍ଯ୍ୟପୁତ୍ରଙ୍କ ମତ ତଥା ମହାଭାରତ, ରାମାୟଣ, ମାଦଳ ପାଂଜି, ବ୍ରହ୍ମବୈବର୍ତ୍ତ ବାୟୁପୁରାଣ, ବିଷ୍ଣୁପୁରାଣାଦି ପ୍ରାମାଣିକ ଗ୍ରନ୍ଥକୁ ଅବଜ୍ଞା କରିବା ? ମିଷ୍ଟର ଦାସ କାହାନ୍ତି ? କାହାନ୍ତି ଗୋପବନ୍ଧୁ ? କାହିଁ ପଞ୍ଚସଖା ଯୁଗ········· ଯାହାଙ୍କ ସେବାର ପରାକାଷ୍ଠା ଦେଖି ବିଚ୍ଛିନ୍ନାଞ୍ଚଳ ଝୁରିଥାଏ ? ଆମେ କ'ଣ ସେମାନଙ୍କ ଦାୟାଦ ନୋହୁଁ ? ଫକୀରମୋହନ, ଗୋଦାବରୀଶ, ନୀଳକଣ୍ଠ, ମଧୁସୂଦନ ରାଓ, ଚନ୍ଦ୍ରମଣି ପ୍ରଭୃତି ଉତ୍କଳ ସାହିତ୍ୟ ଅଙ୍ଗନର ପ୍ରଦୀପାବଳୀକୁ ଆଦର୍ଶ କରି କ'ଣ ସୁପ୍ତ ଉତ୍କଳୀୟଙ୍କୁ ଜାଗ୍ରତ ଅବସ୍ଥାକୁ ଆଣିହେବ ନାହିଁ ? × × × ଏହି ଅବସରରେ ମୁଁ ଆଶା

(୧) ରାଧାନାଥ ଗ୍ରନ୍ଥାବଳୀ—ଚିଲିକା କାବ୍ୟ ।

କରୁଛି—ମହେନ୍ଦ୍ରଗିରି ପରିପ୍ରେକ୍ଷୀରେ ଓଡ଼ିଶା ଇତିହାସର ପୁନର୍ଲିଖନ ଉଦ୍ୟମ ହେଉ ।" (୨)

## ମହେନ୍ଦ୍ରଗିରିର ପ୍ରତ୍ନତାତ୍ତ୍ୱିକ ଇତିବୃତ୍ତ (୩)

ମହେନ୍ଦ୍ରଗିରିର ପ୍ରତ୍ନତତ୍ତ୍ୱ ଜାଣିବାକୁ ହେଲେ ମହେନ୍ଦ୍ରଗିରିର ପ୍ରାଚୀନ କୀର୍ତ୍ତି, ମହେନ୍ଦ୍ର ତନୟା ନଦୀ ଉପତ୍ୟକାର ପ୍ରତ୍ନତତ୍ତ୍ୱ, ବଂଶଧାରା ନଦୀ ଉପତ୍ୟକାର ପ୍ରତ୍ନତତ୍ତ୍ୱ, ପାରଲା, ଚକଟି, ମଂଜୁଷା ବିଶେଷକରି ପାରଲାର ଚତୁର୍ଦ୍ଦିଗର ନବଗଡ଼ ଦୁର୍ଗର ପ୍ରତ୍ନତତ୍ତ୍ୱ ସମେତ ପାରଲା ସହରର ପ୍ରତ୍ନତତ୍ତ୍ୱ ବିଷୟରେ ଅବଗତ ହେବା ଦରକାର ।

ମହେନ୍ଦ୍ରଗିରିର ସର୍ବୋଚ୍ଚ ଶିଖରରେ ତିନୋଟି ଅକ୍ଷତ ମନ୍ଦିର, ସାତଗୋଟି ଆଦିମ ଶୈଳୀରେ ନିର୍ମିତ ମନ୍ଦିର ଓ ଦଶଗୋଟି ସ୍ତୂପାକାର ଭଗ୍ନ ମନ୍ଦିର ସମେତ ପାଞ୍ଚବର୍ଷର ବିଶିଷ୍ଟ ବ୍ରିଟିଶ ଗଡଦୁର୍ଗର ପ୍ରାୟ କୋଡ଼ିଏଟି ବର୍ଷର ସଂପୂର୍ଣ୍ଣ ଭଗ୍ନାବସ୍ଥାରେ ଥିବା ଦୃଷ୍ଟିକୁ ଆସେ । ସେଥିରୁ ଗୋଟିଏ ବର୍ଷର ଓଡ଼ିଶା ସରକାରଙ୍କ ଦ୍ୱାରା ପୁନଃ ନିର୍ମିତ, ତାହା ନବନିର୍ମିତ ବିଶ୍ରାମାଗାର ।

ଅକ୍ଷତ ଅବସ୍ଥାରେ ରହିଥିବା ମନ୍ଦିରମାନଙ୍କ ମଧ୍ୟରେ ୧. ଭୀମ ଦେଉଳ, ୨. ଯୁଧିଷ୍ଠିର ମନ୍ଦିର ୩. ଗୋକର୍ଣ୍ଣେଶ୍ୱର ମନ୍ଦିର 'ନାମାନ୍ତର କୁନ୍ତୀ ଦେଉଳ] ୪. ବିଷ୍ଣୁ ମନ୍ଦିର [ଭଗ୍ନାବସ୍ଥା] ନୀଳମାଧବ ସମେତ, ୫. ପରଶୁରାମ ମନ୍ଦିର [ନିର୍ମାଣାଧୀନ] ୬. ସହଦେବ ମନ୍ଦିର [ଆଦିମଶୈଳୀ] ୭. ନକୁଳମନ୍ଦିର [ଭଗ୍ନାବସ୍ଥା] ସ୍ତୂପାକାର, ୮. ଅର୍ଜ୍ଜୁନଗୁମ୍ଫା [ସ୍ତୂପାକାର] ୯. ପ୍ରକୃତି ସୃଷ୍ଟି ଅସଂଖ୍ୟ ଲିଙ୍ଗ ସ୍ୱତଃ ଫୁଟି ଉଠିଥିବା ମହେନ୍ଦ୍ରେଶ୍ୱର ସମେତ ସହସ୍ରଲିଙ୍ଗ ପରିଦୃଷ୍ଟ ହୁଏ ।

ଗୁମ୍ଫାମାନଙ୍କ ମଧ୍ୟରେ ରାଜବଂଶ ବର୍ତ୍ତମାନ ଭିତ୍ତିପ୍ରସ୍ତର ସଂକେତ ରହିଛି] ଗୁମ୍ଫାମାନଙ୍କ ମଧ୍ୟରେ ୧. ହନୁମାନ ଖୋଲ ୨. ପଞ୍ଚପାଣ୍ଡବ ଖୋଲ, ୩. ଇନ୍ଦ୍ରକୁଣ୍ଡ ୪. ରାମଖୋଲ ୫. ମହେନ୍ଦ୍ରତନୟା ନଦୀଗର୍ଭରେ ମହେନ୍ଦ୍ରଗିରିର ପାଦଦେଶରେ ସ୍ଥିତ ପରଶୁରାମ କୁଣ୍ଡ (ପ୍ଲେଟ ନଂ ୨.୧୦) ରୁମ୍ବା ନିକଟରେ ପରିଦୃଷ୍ଟ ।

---

(୨) ଫଲଗୁ ୮୫—ଗ୍ରନ୍ଥପରିକ୍ରମା-ଉତ୍କଳର ପ୍ରାଚୀନ କୀର୍ତ୍ତି-ମହେନ୍ଦ୍ରଗିରି-ସମୀକ୍ଷା ଡ଼କ୍ଟର ସୂର୍ଯ୍ୟନାରାୟଣ ଦାସ ।

(୩) Broadcasted in the All India Radio, Jeypore, Orissa on 18-11-90 by Dr. Bharata Panda

ଅଙ୍କୁର ୨୦୧୧ ମହେନ୍ଦ୍ରଗିରିର ପ୍ରତ୍ନତାତ୍ତ୍ୱିକ ବିଭବ—ପ୍ରକାଶିତ । ଅଙ୍କୁର ସାହିତ୍ୟ ସଂସଦ, ପାରଲାଖେମୁଣ୍ଡି ।

ଅନ୍ୟାନ୍ୟ ସଙ୍କେତମାନଙ୍କ ମଧ୍ୟରେ [୧] ବାଙ୍ଗା ସାହିର ଶ୍ରୀ ଜଗନ୍ନାଥ, [୨] ମହେନ୍ଦ୍ରଗିରିର ପ୍ରସ୍ତର ଜଗନ୍ନାଥ [୩] ଭାଣ୍ଡକେଶ୍ୱର ମନ୍ଦିର ସଂପୂର୍ଣ୍ଣ ଧ୍ୱଂସ ଧ୍ୱସ୍ତ ବିଧ୍ୱସ୍ତ (ବିଶାଳ ବିଶାଳ ପ୍ରସ୍ତର ଦୃଷ୍ଟ) [୪] ପାଦଦେଶର ସପ୍ତମାତୃକା [୫] କୁରେଇ-ଶ୍ରୁଣି ଦୁର୍ଗା, [୬] ଲୋହିଣ୍ଡି ଦୁର୍ଗା, [୭] ଭୈରବୀ, [୮] ମାଣିକେଶ୍ୱରୀ [୯] ଗମୁ-ଗାଁର ପ୍ରମ୍ଭେଶ୍ୱରୀ ଓ ଖିଲମଣ୍ଡା ମାଁଙ୍କ ବାଉଁଶକୁଦା, [୧୦] କନକ ଦୁର୍ଗା ସମେତ ଗୁମ୍ଫାରେ ଅଦ୍ଭୁତ ଶୈଳୀର [୧୧] ଶ୍ରୀ ଜଗନ୍ନାଥ [୧୨] ବାଗଘର, ଗଙ୍ଗାବାଡ ଗ୍ରାମର କାଣ୍ଡୁଙ୍କ ଶବର ଦେବତାଙ୍କ ଗୁଳିଆ ଓ ଗ୍ରାମଦେବତାଙ୍କ ରଥ ଇତ୍ୟାଦି ଇତ୍ୟାଦି ଦୃଷ୍ଟ । ଏ ସମସ୍ତ ସ୍ଥାପତ୍ୟର ସୂଚନା ହିଁ ମହେନ୍ଦ୍ରଗିରିର ପ୍ରତ୍ନତାତ୍ତ୍ୱିକ ବିଭବର ମୂକସାକ୍ଷୀ । ମୁଖ୍ୟତଃ ଅକ୍ଷତ ମନ୍ଦିରମାନଙ୍କର ସ୍ଥାପତ୍ୟକୁ ହିଁ ବିଚାରକୁ ନିଆଯାଉଛି ।

ଭାରତୀୟ ସ୍ଥାପତ୍ୟ ସମ୍ବନ୍ଧରେ ଯେତେ ସାହିତ୍ୟ ଲେଖାଯାଇଛି ତଦନୁସାରେ ମନ୍ଦିର ନିର୍ମାଣ ପ୍ରଣାଳୀ ତିନି ଭାଗରେ ବିଭକ୍ତ (କ) ନାଗର (ଉତ୍ତର ଭାରତ ପଦ୍ଧତି) (ଖ) ଦ୍ରାବିଡ଼ (ଦକ୍ଷିଣ ଭାରତୀୟ ପଦ୍ଧତି) ଅର୍ଥାତ୍ ତାମିଲ ଢଙ୍ଗ (ଗ) ବେଶର ଅର୍ଥାତ୍ ଦକ୍ଷିଣପଶ୍ଚିମ ଭାରତରେ ପୂର୍ବେ ଚାଲୁକ୍ୟମାନଙ୍କ ସମୟରେ ଯେଉଁ ଢଙ୍ଗଥିଲା ତାର ନମୁନା (୧କ) କାଳକ୍ରମେ ଏହି ତିନି ପ୍ରକାର ପ୍ରଣାଳୀ ସମ୍ମିଶ୍ରିତ ହୋଇ କେବଳ ନାଗର ଓ ଦ୍ରାବିଡ଼ ଲୋକପ୍ରିୟ ହେଲା । କିନ୍ତୁ ଓଡ଼ିଶାର ସ୍ଥାପତ୍ୟ ଏହି ତିନିଶ୍ରେଣୀର ବାହାରେ । ବେଲଗାଁ ଜିଲ୍ଲାରେ ହୋଲଲଠାରେ ଯେଉଁ ଅମୃତେଶ୍ୱର ମନ୍ଦିର ଅଛି, ତାର ମୁଖମଣ୍ଡପରେ ଥିବା ଶିଳାଲେଖାରୁ ଜଣାଯାଏ; ଓଡ଼ିଶାରେ କଳିଙ୍ଗ ନାମକ ଏକ କଳା ବିକଶିତ ହୋଇଥିଲା । (୧ଖ) ଏହା ସମସ୍ତ ଐତିହାସିକଙ୍କ ମତ । ପାଶ୍ଚାତ୍ୟ ଐତିହାସିକଙ୍କ ମତରେ (୨) ଉପରୋକ୍ତ ମତସ୍ୱୀକୃତ କିନ୍ତୁ ଐତିହାସିକ ଫର୍ଗୁସନ୍ ଭାରତର ମନ୍ଦିର ମାଳାକୁ ତିନିଭାଗରେ ବିଭକ୍ତ କରିଛନ୍ତି । ତାହାହେଲା [୧] ଇଣ୍ଡୋଆର୍ଯ୍ୟ [୨] ଚାଲୁକ୍ୟ [୩] ଦ୍ରାବିଡ । ଐତିହାସିକ ଆର୍. ଡ଼. ବେନାର୍ଜି ଇଣ୍ଡୋଆର୍ଯ୍ୟ କଳାକୁ ନାଗର କଳା କହନ୍ତି ଓ ଓଡ଼ିଶାରେ ସପ୍ତମ ଶତାବ୍ଦୀରେ ଦେଖା ଦେଇଥିବା ମତ ଦିଅନ୍ତି । (୩) ତାହାହେଲା [୧] ନାଗର ଚୌକୋଣ [୨] ଦ୍ରାବିଡ ଅଠକୋଣ ଓ [୩] ବେଶର କୋଣବର୍ଜ୍ଜିତ ଏବଂ [୪] ଆନ୍ଧ୍ର ଛଅକୋଣ ବିଶିଷ୍ଟ (୪)

---

(୧) (କ) ଓଡ଼ିଶାର ଇତିହାସ : ଡ଼: ହରେକୃଷ୍ଣ ମହତାବ : ପୃ-୨୧୯
(୨) (ଖ) History of Orissa : Vol. II, R. D. Banerjee, P. 333
(୩) OHRJ-Vol. XIV-Page-7
(୩) Donaldson-Historical Tradition
(୪) Art Tradition Orissa—Sahitiya Academy, Orissa with of to the article of Dr.D. Patnaik, ref. Ph.D. Bhubaneswar,

କଳିଙ୍ଗର ପରିସର ଯେହେତୁ ଗଙ୍ଗାଠାରୁ ଗୋଦାବରୀ ନଦୀ ଯାଏ ପରିବ୍ୟାପ୍ତ; କୋଶଳ, ତୋଷାଳୀ, କଙ୍ଗୋଦ, ଉତ୍କଳ ଇତ୍ୟାଦି ଗୋଟିଏ ପତାକା ତଳେ ରହି ରାଜନୈତିକ ସୀମାରେଖାର ଗଣ୍ଡିରେ ସମସ୍ତ କଳାକୁ ଆଦର କରିଛି । ସହିତ ରକ୍ଷା କରିଛି । ବୈବାହିକ ସମ୍ପର୍କ ସ୍ଥାପନ କରି କଳାର ଆଦାନ ପ୍ରଦାନ କରିଛି । (୧) ଡେଣ୍ଟ ଓଡ଼ିଶାର କଳା-ଐତିହ୍ୟ ଭାରତର ପ୍ରତିରୂପ । ଏହି ପ୍ରତ୍ନତାତ୍ତ୍ୱିକ ବିଷୟବସ୍ତୁ କେବଳ ପୁରୀ, ଭୁବନେଶ୍ୱର ଓ କୋଣାର୍କରେ ଆବଦ୍ଧ ନୁହଁ । ଏହା ପୂର୍ବଘାଟ ପର୍ବତମାଳାର ଗନ୍ତାମର ଶେଷଭାଗ ଯାଏ ବିଶେଷଭାବେ ପରିଦୃଷ୍ଟ । ପୁନଶ୍ଚ ମହେନ୍ଦ୍ରକଳା ନାମରେ ଯେଉଁ ସ୍ୱତନ୍ତ୍ରକଳା, ମହେନ୍ଦ୍ରବର୍ମନଙ୍କ ଦ୍ୱାରା ପଲ୍ଲବ ରାଜାଙ୍କ ରାଜଧାନୀ କାଞ୍ଚିରେ କୋଦିତ । ସେଠାର ପଞ୍ଚପାଣ୍ଡବ ମନ୍ଦିର (୨) ଓ ଅନ୍ୟାନ୍ୟ ଗୁମ୍ଫ (ବର୍ତ୍ତମାନ ମୁସଲିମ୍ ଦର୍ଗାରେ ପରିଣତ) ଉତ୍ତର ଓ ଦକ୍ଷିଣ ଆର୍କଟରେ ପରିଦୃଷ୍ଟ । ଏପରି କଳା ଦକ୍ଷିଣର କାଞ୍ଚିଠାରୁ ଆରମ୍ଭ କରି ଖଣ୍ଡଗିରି ଓ ଉଦୟଗିରିର ଜୈନଗୁମ୍ଫା ଯାଏଁ ପୁଙ୍ଖାନୁପୁଙ୍ଖ ଭାବେ ଅନୁଧ୍ୟାନ କଲେ, ଏ ସମସ୍ତ ଅଞ୍ଚଳର କେନ୍ଦ୍ରରେ ଏହି ମହେନ୍ଦ୍ରଗିରିର କଳା ସ୍ଥାପତ୍ୟକୁ ବିଗ୍ରହକୁ ନେବା ବାଧ୍ୟଗତ ।

ଏଠାକାର ସ୍ଥାପତ୍ୟ ଦାର୍ଶନିକତତ୍ତ୍ୱ ସମ୍ବଳିତ ଓ ପୁରାଣ ସମ୍ମତ । ଏହି ଅଞ୍ଚଳର ଶିଳ୍ପ ଯେପରି ମୂଖ୍ୟ, କଳାଭାସ୍କର୍ଯ୍ୟରେ ମଧ୍ୟ ଶିଳ୍ପଶାସ୍ତ୍ର ଅନୁମୋଦିତ । ମହେନ୍ଦ୍ର-ଗିରିର ଶିଳ୍ପକଳା ଭାରତୀ କଳିଙ୍ଗର ଶିଳ୍ପକଳା ଭାସ୍କର୍ଯ୍ୟ ପ୍ରକୃଷ୍ଟ ପ୍ରମାଣ ଯୋଗାଏ । ଏହି କଳା ସହସ୍ର ବର୍ଷଧରି ଭାରତରେ ଆଲୋଡ଼ନ ସୃଷ୍ଟି କରିଛି । ଶତାଧିକ ଶୈଳୀର ନୂତନ ସୃଷ୍ଟି ମଧ୍ୟ ଏଥିଦ୍ୱାରା ସମ୍ଭବ ହୋଇଛି । ବିଭିନ୍ନ ଯୁଗରେ ବିଭିନ୍ନ ଆଚାର୍ଯ୍ୟମାନଙ୍କ ଦ୍ୱାରା ଅନୁଭୂତ ହୋଇଛି ନୂତନ ଶୈଳୀ ।

"କଠିନ ଦର୍ଶନକୁ ମୂର୍ତ୍ତି ଓ ପ୍ରାସାଦ ମଧ୍ୟଦେଇ ବ୍ୟକ୍ତ କରି ଛୁପଡିପୁର୍ଣ୍ଣ ପ୍ରତିଯୋଗିତାରେ ଆଚାର୍ଯ୍ୟମାନଙ୍କ ସହିତ ପାଣ୍ଡୁଶ୍ରୀ ମିଳାଇ ବୁଲିଛି । ଭାରତୀୟ ପ୍ରାସାଦ ନିର୍ମାଣ କଳାର ସ୍ୱର୍ଣ୍ଣଯୁଗ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀଠାରୁ ୧୭ଶ ଶତାବ୍ଦୀ । ଏହି ସହସ୍ର ବର୍ଷରେ ମାଗଧ, ନାଗର, ବେସର, ଗୁର୍ଜ୍ଜର, ଦ୍ରାବିଡ଼, କୋଶଳ, ଚାଲୁକ୍ୟ ବା ଉତ୍ତରୀ ପ୍ରଭୃତି ବହୁଶୈଳୀର କଳାତ୍ମକ ପ୍ରକାଶ କଳିଙ୍ଗରୁ ଆରମ୍ଭ ହୋଇ ଦେଶ ଦେଶାନ୍ତରେ

and Temples of India—Govt. of India—Ist Publication 1964.

(୧) Art & Traditions of Orissa, Bhubaneswar.

(୨) Temples of South India—Page 38, By K. R. Srinivasan National Book Trust India, New Delhi.

